# ଶ୍ରେଷ୍ଠ ଗଳ୍ପ

## ବାମାଚରଣ ମିତ୍ର

ସଂପାଦନା

**ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ**



timepass

ଶ୍ରେଷ୍ଠ ଗଳ୍ପ
ବାମାଚରଣ ମିତ୍ରଙ୍କ ଗଳ୍ପ ସଂକଳନ

ପ୍ରକାଶକ : ଟା ଇ ମ୍ ପା ସ୍

ପ୍ରଥମ ସଂସ୍କରଣ : ଫେବୃଆରୀ ୨୦୧୯



**srestha galpa**
selected odia short-stories by **bamacharan mitra**

published & printed by **timepass**
950 (P), nk marg, baramunda, bhubaneswar, odisha, india

cover design : **saroj bal**
first edition : 2019

**₹ 195.00**

# ମୁଖବନ୍ଧ

ବାମା ଚରଣ ମିତ୍ର ଓଡ଼ିଆ ସାହିତ୍ୟର ଜଣେ ବହୁପ୍ରସୂ ସାରସ୍ୱତ ସାଧକ । ଆତ୍ମଗତ ତଲ୍ଲୀନତା ମାଧ୍ୟମରେ ସେ ବିଶ୍ୱ ସାହିତ୍ୟର ଅନେକ ଉପାଦେୟ ଗ୍ରନ୍ଥ ଅଧ୍ୟୟନ କରିଛନ୍ତି ଏବଂ ମହିମ୍ନ ଉଚ୍ଚାରଣରେ ସମୃଦ୍ଧ କରିଛନ୍ତି ଓଡ଼ିଆ ସାହିତ୍ୟକୁ । ବ୍ୟକ୍ତିକ ଦ୍ରଷ୍ଟାର ଦୃଷ୍ଟିବଳୟ ନୈର୍ବ୍ୟକ୍ତିକ ହୋଇ ସୃଷ୍ଟି କରିଛି ଗୋଟିଏ ପରେ ଗୋଟିଏ ସୂକ୍ଷ୍ମ ନିର୍ଯ୍ୟାସଭରା କଥାକଳ୍ପ । ଅବେଗପ୍ରବଣ ସତ୍ତା ନିଜସ୍ୱ ଅଭିଜ୍ଞତାର ଉର୍ଦ୍ଧ୍ୱରେ ସଂଚରଣକ୍ଷମ ଭୂୟୋବିକାଶକୁ ଶିଳ୍ପ ପ୍ରତିଷ୍ଠା ଦେଇଛି । ଆତ୍ମଭାବନା ମୂଳକ ମୁଁତ୍ୱର ସଂଚାର ବିଶ୍ୱଭାବନାକୁ ଗର୍ଭସ୍ଥ କରି ଉପଲବ୍ଧିର ଚରମ ଉତ୍କର୍ଷତାକୁ ସ୍ପର୍ଶକରିଛି । ପ୍ରାଣମୟ ସ୍ପନ୍ଦନ ଜଗତଜୀବନକୁ ନିଜ କୁକ୍ଷୀରୁ ଆବିଷ୍କାର କରି ବିଶ୍ୱ ବିକାଶର ବ୍ୟାକୁଳତାରେ ସମାସୀନ କରିଛି । ତେଣୁ ତାଙ୍କର ସାରସ୍ୱତଚର୍ଯ୍ୟା ଯେତିକି ପ୍ରସାରଣକ୍ଷମ ସେତିକି ହୃଦ୍ୟ ଓ ଆହ୍ଲାଦମୟ । ଏମିତି ଏକ ପୃଷ୍ଠଭୂମିରେ ସେ ସୃଷ୍ଟି କରିଛନ୍ତି ଅନେକ ଗଳ୍ପ, ଏକାଙ୍କିକା, ରମ୍ୟରଚନା ଓ ପ୍ରବନ୍ଧ । ଗୋଟିଏ କବିତା ଓ ଗୋଟିଏ ଉପନ୍ୟାସ ମଧ୍ୟ ସେ ଓଡ଼ିଆ ପାଠକଙ୍କୁ ଭେଟି ଦେଇଛନ୍ତି ।

ଜଣେ ସ୍ରଷ୍ଟାଙ୍କ ସମସ୍ତ କୃତି ପଢିବା ହୁଏତ ଜଣେ ପାଠକ ପକ୍ଷରେ ସମ୍ଭବ ହୋଇ ନପାରେ ଏଣୁ ଶ୍ରେଷ୍ଠରଚନାମାନଙ୍କର ସଂକଳନର ଉଦ୍ୟମ ସର୍ବତ୍ର ଦେଖାଯାଏ । ଏହି ଶ୍ରେଷ୍ଠ ରଚନା

ସଂକଳନଦ୍ୱାରା ଲେଖକଟିର ନିର୍ବାଚିତ ରଚନା ବହୁ ପାଠକଙ୍କ ପାଖରେ ପହୁଁଚେ ଓ ଲେଖକକୁ କାଳଜୟୀ କରିଥାଏ। ଅଜସ୍ର ସୃଷ୍ଟିର କର୍ତ୍ତା ହୋଇ ମଧ୍ୟ ଚିନ୍ତାମଣି ମହାନ୍ତି, ଶଶିଭୂଷଣ ମହାନ୍ତି ପ୍ରମୁଖ ଓଡ଼ିଆ ସାହିତ୍ୟ ଜଗତରୁ ବିସ୍ମୃତ ହେବାକୁ ବସିଲେଣି। ତାଙ୍କର ଶ୍ରେଷ୍ଠ ରଚନା ଗୁଡିକ ସଂକଳିତ କରାଯାଇପାରିଲେ ଲେଖକ ବଂଚିବେ ଓ ପାଠକ ମଧ୍ୟ ଉକ୍ତ ଲେଖକଙ୍କ ସୃଷ୍ଟିର ମାଧୁର୍ଯ୍ୟ ଉପଲବ୍ଧି କରିପାରିବେ। ଏଣୁ ଶ୍ରେଷ୍ଠ ରଚନା ସଂକଳନ ତଥା ନିର୍ବାଚିତ ସଂକଳନ ପ୍ରକାଶନ ଅପରିହାର୍ଯ୍ୟ ଅଟେ। ଏହି ପ୍ରେକ୍ଷାପଟରେ ବାମାଚରଣ ମିତ୍ରଙ୍କ ଶ୍ରେଷ୍ଠ ଗଳ୍ପ ସଂକଳନର ପ୍ରକାଶ ଏକ ଐତିହାସିକ କର୍ତ୍ତବ୍ୟ।

ବାମାଚରଣ ମିତ୍ରଙ୍କ ଜନ୍ମ ଡିସେମ୍ବର ୧୭, ୧୯୧୫। ତାଙ୍କର ପିତା କୃଷ୍ଣଚନ୍ଦ୍ର ମିତ୍ର ଓ ମାତାଙ୍କ ନାମ 'ସାରଦା ମିତ୍ର' ପୈତୃକ ଗ୍ରାମ ଯାଜପୁର ଜିଲ୍ଲା ବରୁହାଁ ପୁରୁଷୋତ୍ତମପୁର। ଶୁଣାଯାଏ ୫୦୦ବର୍ଷ ପୂର୍ବେ ଶ୍ରୀ ଚୈତନ୍ୟଦେବଙ୍କ ଓଡିଶା ଅଗମନ ବେଳେ ବାମାଚରଣଙ୍କ ପୂର୍ବପୁରୁଷ ଓଡିଶା ଆସି ବରୁହାଁ ପୁରୁଷୋତ୍ତମପୁର ଠାରେ ସ୍ଥାୟୀ ବାସିନ୍ଦା ହୋଇଥିଲେ। ବାମାଚରଣଙ୍କ ମାନବନ୍ଦରଦୀମନ ଓ ପ୍ରେମସିକ୍ତ ହୃଦୟର ମୂଳ ଉତ୍ସ ତାଙ୍କର ପୂର୍ବପୁରୁଷଙ୍କ ଚୈତନ୍ୟ ଦେବଙ୍କ ସହିତ ଅମୃତମୟ ସାହଚର୍ଯ୍ୟର ଫଳପ୍ରସୂ। ସେମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଗ୍ରାମର ରାଧାକୃଷ୍ଣ ମନ୍ଦିରର ଅନନ୍ତ ପ୍ରେମୀ ଚିରସୁନ୍ଦର ଶ୍ରୀକୃଷ୍ଣଙ୍କ ଆକୁଳ ବଂଶୀଧ୍ୱନି ହିଁ ସାରାଜୀବନ ବାମାଚରଣଙ୍କୁ ଅଥୟ ଓ ପ୍ରେମାପ୍ଳୁତ କରିଛି। ବାମାଚରଣଙ୍କ ପୈତୃକ ଗ୍ରାମ ବରୁହାଁ ପୁରୁଷୋତ୍ତମପୁର ହେଲେ ମଧ୍ୟ ତାଙ୍କ ଜନ୍ମ ମାତୁଳାଳୟ ନୀଳାଚଳଧାମ ପୁରୀର ପଥୁରିଆ ସାହିରେ ହୋଇଥିଲା। ପିତାମାତାଙ୍କର ସେ ଥିଲେ ଷଷ୍ଠ ସନ୍ତାନ ଏବଂ ତାଙ୍କର ଡାକନାମ ଥିଲା ବାଉଲ।

ଏକ ବଙ୍ଗୀୟ ପରିବାରରେ ତାଙ୍କର ଜନ୍ମ ହୋଇଥିଲେ ମଧ୍ୟ ସେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେଉଥିଲେ ଏବଂ ଓଡିଶା ଓ ଓଡ଼ିଆ ସାହିତ୍ୟକୁ ହୃଦୟ ଦେଇ ଭଲ ପାଉଥିଲେ। ତାଙ୍କର ଇଷ୍ଟ ଥିଲେ ଓଡ଼ିଆଙ୍କ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥ। ବାମାଚରଣଙ୍କ ପୂର୍ବପୁରୁଷ ଓଡିଶାରେ ବିବାହ କରି ସ୍ଥାୟୀବାସିନ୍ଦା ହୋଇଯାଇଥିଲେ ଫଳତଃ ଖାଂଟି ବଙ୍ଗାଳୀମାନେ ତାଙ୍କୁ ନିମ୍ନଦୃଷ୍ଟିରେ 'କେରା' ବଙ୍ଗାଳୀ

କହୁଥିଲେ । କେରାବଙ୍ଗାଳୀ ଭାଷା ଓଡ଼ିଆ ଓ ବଙ୍ଗଳା ସମ୍ମିଶ୍ରଣରେ ଗଠିତ । ବାମାଚରଣଙ୍କର ଓଡ଼ିଆ ଓ ବଙ୍ଗଳା ଭାଷାରେ ପାରଦର୍ଶିତା ଥିଲା। ବାମାଚରଣଙ୍କ ବାପା କଟକ କଚେରୀରେ ପେସ୍କାର ବୃତ୍ତି ଆବଲମ୍ବନ କରୁଥିଲେ। କଟକର ବାଖରାବାଦସ୍ଥିତ ସନ୍‌ସାଇନ୍ ପଡିଆକୁ ଲାଗି ତାଙ୍କର ଘରଥିଲା।

ବାମାଚରଣଙ୍କ ପ୍ରାଥମିକ ଶିକ୍ଷା କଟକର ନିର୍ମାନି ସ୍କୁଲରୁ ଆରମ୍ଭ ହୋଇଥିଲା । ରେଭେନ୍ସା କଲେଜିଏଟ ସ୍କୁଲରୁ ସେ ୧୯୩୩ରେ ହାଇସ୍କୁଲ, ରେଭେନ୍ସା କଲେଜରୁ ୧୯୩୮ରେ ବି.ଏ ଓ ୧୯୪୧ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ବି.ଏଲ୍ ପରିକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ୧୯୪୪ ମସିହାରେ ନିଜ ଗ୍ରାମର ଶ୍ରୀ ଜଗତବଲ୍ଲଭ ଓ ଶ୍ରୀମତୀ କୁସୁମକୁମାରୀ ସିହ୍ନାଙ୍କ କନ୍ୟା ସୁଶ୍ରୀ ପ୍ରତିଭାମୟୀଙ୍କୁ ସେ ବିବାହ କରିଥିଲେ । ସେ ରେଭିନ୍ୟୁ କ୍ଲର୍କ ବା ଆଇନ ସହାୟକ ଭାବରେ ସଚିବାଳରେ ଆଇନ୍ ବିଭାଗରେ ନିଯୁକ୍ତି ପାଇଥିଲେ । ଏହି ସମୟରେ ମାଜିଷ୍ଟ୍ରେଟ ପଦବୀ ନିମନ୍ତେ ଜରୁରୀ କାଳୀନ ନିଯୁକ୍ତିର ଲିଖିତ ପରୀକ୍ଷାରେ ସମଗ୍ର ଓଡିଶାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ବିଚାର ବିଭାଗରେ କାର୍ଯ୍ୟ କରି ଶେଷ ସମୟକୁ ସେ ଭୁବନେଶ୍ୱର ସଚିବାଳୟ ନଗରଉନ୍ନୟନ, କୃଷି ଓ ପୂର୍ତ୍ତ ବିଭାଗର ଅଣ୍ଡର ସେକ୍ରେଟାରୀ ଭାବରେ କାର୍ଯ୍ୟକରି ୧୬.୧୨.୧୯୭୦ରେ ଅବସର ଗ୍ରହଣ କରିଥିଲେ । ଷାଠିଏ ବର୍ଷର ଜୀବନ ଭୋଗପରେ ଫେବୃଆରୀ ୨୧, ୧୯୭୫ରେ ତାଙ୍କର ତିରୋଧାନ ଘଟିଥିଲା ।

ବାମାଚରଣ ଜଣେ ବହୁମୁଖୀ ସ୍ରଷ୍ଟା । ତାଙ୍କର ପ୍ରବନ୍ଧ ଓ ଆଲୋଚନା ଏକ ଗବଂ ଓଡ଼ିଆ ପାଠକଙ୍କୁ ବର୍ଷବର୍ଷ ଧରି ଆବିଷ୍ଟ କରିଛି । ବାମାଚରଣଙ୍କ ଗଳ୍ପ ସଂପର୍କରେ ସମ୍ୟକ ସୂଚନା ଦେବା ଏହି ମୁଖବନ୍ଧର ଉଦ୍ଦେଶ୍ୟ । ବାମାଚରଣଙ୍କ ଜୀବଦ୍ଦଶାରେ ତାଙ୍କ ଗଳ୍ପଗୁଡିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ଏବଂ ସ୍ୱପ୍ନସିଦ୍ଧ (୧୯୬୦) ପାଷାଣର ପ୍ରାଣ(୧୯୬୧) ଅସୀମ (୧୯୬୧), ବଟ ମହାପୁରୁଷ (୧୯୬୩) ମହାପୁରୁଷ ବାଗ (୧୯୬୩) ସଂକଳନରେ ପତ୍ରସ୍ଥ । ଏହି ପାଂଚଟି ସଂକଳନ ବିକାଶ ପ୍ରତିଷ୍ଠାନ ଜୟପୁର ଦ୍ୱାରା ପ୍ରକାଶିତ । ବାମାଚରଣଙ୍କ ଦେହାନ୍ତ (୧୯୭୫)ପରେ ମିତ୍ରଗଳ୍ପ (୧୯୭୯) ମିତ୍ରକଳ୍ପ

(୧୯୭୯)ଓ ମିତ୍ରସ୍ୱପ୍ନ(୧୯୮୧)ଶୀର୍ଷକରେ ତିନୋଟି ସଂକଳନ ପ୍ରକାଶ ପାଏ। ଏହି ସଂକଳନ ଗୁଡିକରେ ପୂର୍ବୋକ୍ତ ସଂକଳନର ଗଳ୍ପ ସହିତ କିଛି ନୂତନ ଗଳ୍ପ ସଂଯୋଜିତ ଏତଦ୍‌ବ୍ୟତୀତ ଯତୀନ୍ଦ୍ରମୋହନ ମହାନ୍ତି ଓ ଜ୍ୟୋତିରିନ୍ଦ୍ର ମୋହନ ଜୋଆର୍ଦ୍ଦାରଙ୍କ ସଂପାଦନାରେ ସୁବର୍ଣ୍ଣରେଖା ପ୍ରକାଶନ ସଂସ୍ଥାଦ୍ୱାରା ଗଳ୍ପସମଗ୍ର-୧ ଓ ଗଳ୍ପସମଗ୍ର-୨ ପ୍ରକାଶିତ। ନ୍ୟାସନାଲ ବୁକ୍‌ଟ୍ରଷ୍ଟ ଇଂଡିଆ ଆନୁକୂଲ୍ୟରେ ଶତ୍ରୁଘ୍ନ ପାଣ୍ଡବଙ୍କ ସଂପାଦନାରେ "ବାମାଚରଣଙ୍କ ଗଳ୍ପସଂଭାର(୧୯୯୮) ପ୍ରକାଶିତ। କେନ୍ଦ୍ର ସାହିତ୍ୟ ଆକାଡେମି ଦ୍ୱାରା ପ୍ରକାଶ କୁମାର ପରିଡାଙ୍କ ସଂପାଦନାରେ ବାମାଚରଣ ଚୟନିକା (୨୦୧୮) ପ୍ରକାଶିତ ଏଥିରେ ୧୨ଟି ଗଳ୍ପ ସ୍ଥାନିତ। ଏହି ସମସ୍ତ ସଂକଳନରେ ସ୍ଥାନିତ ଗଳ୍ପ ବ୍ୟତୀତ କିଛି ନୂତନ ଗଳ୍ପ ସଂଯୋଜିତ କରି ଏହି ଲେଖକର ସଂଗ୍ରହ ଓ ସଂପାଦନାରେ ବାମାଚରଣ ମିତ୍ର ସୃଜନସଂଭାର ପ୍ରଥମ ପର୍ବ(୧୯୧୮) ପ୍ରକାଶିତ। ଏଥିରେ ତିନୋଟି ଏକାଂକିକା ଏବଂ ୮୬ଟି ଗଳ୍ପ ସ୍ଥାନିତ ଏଥିସହିତ "ଗଗନଗଡ ରାଜବଂଶର ସଂକ୍ଷିପ୍ତ ଗାଥା"(କଳିଙ୍ଗ ସମ୍ବାଦପତ୍ରରେ ପ୍ରକାଶିତ ଗଳ୍ପର ଅପ୍ରାପ୍ତି ସଂପର୍କେ ସୂଚନା ରହିଛି।) ଉପରୋକ୍ତ ୮୬ଟି ଗଳ୍ପ ଭିତରୁ ବିଭିନ୍ନ କଥାବସ୍ତୁ ସଂକଳିତ ୨୩ଟି ଗଳ୍ପ ଏହି ଶ୍ରେଷ୍ଠ ଗଳ୍ପ ସଂକଳନରେ ନିର୍ବାଚିତ କରି ସ୍ଥାନ ଦିଆଯାଇଛି।

ସମାନ ଭାବଧାରା ବିଶିଷ୍ଟ ଗଳ୍ପ ମଧ୍ୟରୁ ପ୍ରତିନିଧି ସ୍ଥାନୀୟ ଗଳ୍ପ ଚୟନ କରି ଏହି ଶ୍ରେଷ୍ଠ ଗଳ୍ପ ସଂକଳନ ପ୍ରସ୍ତୁତ କରାଯାଇଛି। ବାମାଚରଣ ଶିଶୁମନସ୍ତତ୍ତ୍ୱ, ନାରୀ ଜୀବନର ଅକୁହା ବେଦନା, ସାଂପ୍ରଦାୟିକ ଭେଦଭାବ, ଗ୍ରାମ୍ୟ ଓ ସହରୀ ଚଳଣୀର ନିର୍ଭେଜାଲ ପ୍ରକାଶନ ଦ୍ୱାରା ଓଡ଼ିଆ କଥା ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ସକଳ ହେତୁବାଦୀ ଚିନ୍ତନ ପ୍ରତି ଆସ୍ଥା ପ୍ରକଟ କରି ମହତ୍ତର ଜୀବନଭୋଗର ଯାଚଞ୍ଚା କରନ୍ତି ସେ। ଜୀବନ୍ମୟ ତାଙ୍କର ପ୍ରକାଶନ, ସ୍ୱର୍ଦ୍ଧିତ ତାଙ୍କର ଉଚ୍ଚାରଣ। ଗଳ୍ପ ଅନ୍ତରାଳରେ ମାନବୀୟ ଗୁଣରାଜିର ପ୍ରସ୍ଫୁଟନ ଓ ସମାଜଜୀବନର ସୂକ୍ଷ୍ମ ଅନୁରଣନ ପ୍ରତିଫଳିତ। ବିଜ୍ଞାନସିଦ୍ଧ ଧାର୍ମିକତା, ପାରଂପରିକ ସୃଷ୍ଟିଶୀଳତାର ପୂଜାବେଦୀରେ ଆଧୁନିକତାର ଆବାହନ ସହିତ ଉଚ୍ଚତର ଅଭିଳାଷ ଓ ସତ୍ୟଶୀଳତାକୁ ସମ୍ବନ୍ଧିତ କରେ। ତେଣୁ

ତାଙ୍କର ପ୍ରତିଟି ଗଳ୍ପ ସାଧାରଣ ଭାବପ୍ରସ୍ଥ ମଧ୍ୟରେ ଅସାଧାରଣ ପ୍ରଜ୍ଞାର ଆବାହକ ଓ ରୁଚିପୂର୍ଣ୍ଣ। ସମର୍ଥ ଓ ଦୃଢ ଶବ୍ଦବିନ୍ୟାସ ଭିତରେ କାବ୍ୟିକ ବ୍ୟଂଜନା ଭାଷାକୁ ଅପୂର୍ବ କୌଳିନ୍ୟ ପ୍ରଦାନ କରିଛି। ବ୍ୟକ୍ତିଜୀବନର ଅପାରଂପରିକ ନିରୀହତା, ସରଳ ଓ ନିଷ୍କପଟ ଜୀବନଶୈଳୀ ବାମାଚରଣଙ୍କ ଲେଖନୀରେ ଜୀବନ୍ତ ଭାବେ ଫୁଟିଉଠିଛି।

ବାମାଚରଣଙ୍କ ଗଳ୍ପସୃଷ୍ଟି ରହସ୍ୟ ଗଳ୍ପରୁ ଆରମ୍ଭ ହୁଏ। ପାରଂପରିକ ପର୍ଯ୍ୟାୟରେ ସେ କୀର୍ତ୍ତୀର୍ଯସ୍ୟ (୧୯୫୦)ରେ ଛଅଟି ଗଳ୍ପ ଓ ନରଛଂଚାଣ (୧୯୫୧)ରେ ଚାରୋଟି ରହସ୍ୟ ଗଳ୍ପ ସ୍ଥାନିତ କରନ୍ତି। ଏତଦ୍‌ବ୍ୟତୀତ ସ୍ୱପ୍ନସିଦ୍ଧ (୧୯୬୦)ସଂକଳନର ହାରହରଣ ଓ ମହାପୁରୁଷବାଦ ସଂକଳନର ଦୁଇଜଣ ତ୍ୟାଗୀଙ୍କ ଉପାଖ୍ୟାନ ଗଳ୍ପଦୁଇଟି ମଧ୍ୟ ରହସ୍ୟ ଗଳ୍ପ। ଏହି ବାଆରଟି ଗଳ୍ପକୁ 'ଗୁପ୍ତମଣିଷ' ଶୀର୍ଷକରେ ସଂକଳିତ କରିବାର ଅଭିପ୍ରାୟ ମୃତ୍ୟୁ ପୂର୍ବରୁ ପୋଷଣ କରିଥିଲେ ବାମାଚରଣ। ସେହି ଅଭିଳାଷକୁ ତାଙ୍କର ସନ୍ତାନମାନେ ସଫଳ କରିଥିଲେ ଏବଂ ୨୦୧୬ରେ ପ୍ରକାଶ ପାଇଥିଲା ଗୁପ୍ତ ମଣିଷ ପୁସ୍ତକ। ରହସ୍ୟ ଗଳ୍ପଗୁଡିକ ଆର୍ଥର କନ୍ୟାନ ଡଏଲଙ୍କ ଗଳ୍ପର ଛାୟାରେ ଗଢିଉଠିଛି । କନ୍ୟାନ ଡଏଲଙ୍କ ଡିକେକଟିଭ ଶାଲକ ହୋମସଙ୍କ ପରି ବାମାଚରଣ ସୃଷ୍ଟି କରିଛନ୍ତି ଏକ ଅନନ୍ୟ ଚରିତ୍ର ଗୋବର୍ଦ୍ଧନ ବାବୁ। ଏହି ପର୍ଯ୍ୟାୟର ଗଳ୍ପ ଗୁଡିକ ସରଳ କଳ୍ପନାବିଳାସ ସହିତ ଅଭିନବ ରହସ୍ୟ ଭେଦର କଥା କାରୀତାରେ ପ୍ରଗଳ୍ଭ। ଏଥି ମଧ୍ୟରୁ 'ନରଛଂଚାଣ' ଗଳ୍ପଟି ଅତିଉତ୍କୃଷ୍ଟ ଓ ବାମାଚରଣଙ୍କ ରହସ୍ୟଭେଦୀ ଅର୍ନ୍ତଦୃଷ୍ଟିର ପରିଜ୍ଞାପକ ଭାବେ ଶ୍ରେଷ୍ଠ ଗଳ୍ପରେ ସ୍ଥାନିତ ହେଲା।

ବାମାଚରଣଙ୍କ ଅନନ୍ୟ ଗଳ୍ପକଳାର ସର୍ବଶ୍ରେଷ୍ଠ ନିଦର୍ଶନ ଶିଶୁ ମନସ୍ତତ୍ତ୍ୱର ପ୍ରତିଫଳନ। ବୋଧହୁଏ ଓଡ଼ିଆ ଭାଷାରେ ଶିଶୁ ମନସ୍ତତ୍ତ୍ୱକୁ ନେଇ ଏପରି ଆବେଗାନୁଭୂତିପୂର୍ଣ୍ଣ ସ୍ୱରକୁ ସାର୍ବଜନୀନ ନାନ୍ଦୀପାଠରେ ରୂପାନ୍ତରିତ କରିବାର କଳା ପୂର୍ବରୁ ଦେଖାଯାଇ ନାହିଁ। ଶିଶୁମନର ପ୍ରଶ୍ନ, ପ୍ରତିବାଦ, ସଂଶୟକ୍ରମରେ ଜୀବନ ଓ ସମାଜପ୍ରତି ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ କରିବାରେ ବାମାଚରଣଙ୍କ ସ୍ୱପ୍ନସିଦ୍ଧ, ମିମିର ସାହିତ୍ୟ ଶିକ୍ଷା, ନନ୍ଦକୁଳେ, ମିମିର ସଭ୍ୟତା ଶିକ୍ଷା ପ୍ରଭୃତି ଗଳ୍ପ

ସଫଳ ହୋଇଛି । ମିମିର ସାହିତ୍ୟଶିକ୍ଷା ଗଳ୍ପଟି ଓଡ଼ିଆ ପାଠକଙ୍କ ମଜ୍ଜାଗତ । ଏହା ବିଭିନ୍ନ ସମୟରେ ବିଦ୍ୟାଳୟ ପାଠ୍ୟକ୍ରମରେ ରହି ପାଠକଙ୍କ ସଂବେଦନା ଆକର୍ଷଣ କରିବାରେ ସଫଳ ହୋଇଛି । ଏଣୁ ଏହି କାଳଜୟୀ ଗଳ୍ପଟି ବହୁ ପଠିତ ହେଲେ ମଧ୍ୟ ଶ୍ରେଷ୍ଠ ଗଳ୍ପରେ ସ୍ଥାନିତ ହେଲା । ସ୍ୱପ୍ନସିଦ୍ଧ ଗଳ୍ପଟିରେ ଶିଶୁ ମନସ୍ତତ୍ତ୍ୱ ସହିତ ପିତାମାତାଙ୍କ ଅବେଗିକ ସଂପର୍କର ପ୍ରତିଫଳନ ଏବଂ ସାମାଜିକବ୍ୟଙ୍ଗର ସମାବେଶ ବେଶ କଳାତ୍ମକ ଭାବେ ସନ୍ନିବେଶିତ । ବ୍ୟକ୍ତିଗତ ଦୃଷ୍ଟି ବିଶ୍ୱଦୃଷ୍ଟିରେ ରୂପାନ୍ତରିତ ହୋଇଛି । ସମୟ ପରିସ୍ଥିତିର ଅନୁକ୍ରମରେ ମାନସିକ ପ୍ରତିବେଦନ ବଦଳୁଛି । ମିମି ଓ ଟୁକୁନା ଭାଇ ଭଉଣୀ । ମାର ସ୍ନେହକୁ ନେଇ ଝଗଡା ଲାଗୁଛି । ଦୁହିଁଙ୍କ ଭିତରେ ହିଂସା ଏତେ ବଢିଛି କାହିଁକି ବୋଲି ପିତା ସୁଦାମ ବାବୁ ବ୍ୟତିବ୍ୟସ୍ତ ହେଉଛନ୍ତି । ଟୁକୁନା ସ୍ୱପ୍ନ ଦେଖୁଛି ବାଘ ମିମିକୁ ନେବାକୁ ଆସିଛି । ସେ ଧଡପଡ ହୋଇ ଉଠି ବାଘକୁ ମାରିବା ପାଇଁ ନିଜର ଖେଳନା ବନ୍ଧୁକ ଖୋଜୁଛି । ସୁଦାମବାବୁ ପରିବର୍ତ୍ତିତ ମାନସିକ ଅବସ୍ଥାରେ ଆଶ୍ଚର୍ଯ୍ୟଚକିତ ହୋଇ ଉଠିଛନ୍ତି । ସ୍ୱପ୍ନସିଦ୍ଧ ଗଳ୍ପର ଏହି ମହନୀୟତା ପାଇଁ ଶ୍ରେଷ୍ଠ ଗଳ୍ପରେ ସ୍ଥାନ ଦିଆଗଲା ।

ବାମାଚରଣଙ୍କ ଗଳ୍ପରେ ସାମାଜିକ ବ୍ୟଙ୍ଗ ଅତି କରୁଣାତ୍ମକ ଭାବେ ପର୍ଯ୍ୟବେଶିତ । ଏହା ପାଠକକୁ ଗଭୀର ଭାବେ ଆଚ୍ଛନ୍ନ କରେ । ମଣିଷ ବଂଚୁଥିବା ଜଟିଳ ମାନସିକତାର ବିଚାର ବିଶ୍ଳେଷଣ ଦୁଃଖ ଓ ଦୁଃଖଭୋଗର କାରଣ ସବୁକୁ ଅତି ସଫଳଭାବେ ବାମାଚରଣ ବ୍ୟବଚ୍ଛେଦ କରନ୍ତି । ସମାଜ ଜୀବନର ଗଭୀର ନିରୀକ୍ଷଣ ମାନବପ୍ରେମର ଉତ୍ତୁଙ୍ଗ ଶିଖରସ୍ପର୍ଶୀ ଦାର୍ଶନିକ ଅବବୋଧରେ ପରିବର୍ତ୍ତିତ ହୁଏ । ଏହି ପ୍ରସଙ୍ଗରେ ଲିଖିତ ଗଳ୍ପ ଗୁଡିକ ଦାର୍ଶନିକ ଭାବ ସଂବଳିତ ଗଳ୍ପ ଭାବରେ ତାଲିକାଭୁକ୍ତ କରାଯାଇପାରେ । ବାତାୟନ, ନାରୀ ଓ କବି, ଯାତ୍ରାପଥେ, ଇତିହାସ , ଧଡିଭାଇ ସହିତ ଗୋଟିଏ ରାତ୍ରୀ, ସଙ୍କଟ, କଷ୍ଟେପୁତ୍ର, ଉଦ୍‌ଭ୍ରାନ୍ତ, ବାବା ରଡହରାନନ୍ଦଙ୍କ ରୋମାଂଚକର କାହାଣୀ, ଇଚ୍ଛାପୁରାଣ, କଃ ପନ୍ଥା , ଧରିତ୍ରୀ ଓ ଧରିତ୍ରୀ, କିମାଶ୍ଚର୍ଯ୍ୟମ, ଶୃଙ୍ଖଳା ପତର, ଜ୍ଞାନ-ତା'ହୃଦୟରୁ ଉଦୟ ପ୍ରଭୃତି ଗଳ୍ପ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଏଥିରେ ଉପସ୍ଥାପନାଗତ ବୈଚିତ୍ର୍ୟ ସହିତ ବିମଳ ହାସ୍ୟରସର ଉଦ୍ରେକ ଗଳ୍ପ ଗୁଡିକୁ ରସୋତୀର୍ଣ୍ଣ କରେ । ମଣିଷ ଜୀବନର

ବିପର୍ଯ୍ୟାସ୍ତ ଓ ଅସହାୟ ଜୀବନଚର୍ଯ୍ୟା ସହିତ କାରୁଣ୍ୟ ଓ ଆମୋଦର ପରିପ୍ରକାଶ ଗଳ୍ପଗୁଡ଼ିକୁ ଅଧିକ ସ୍ପର୍ଶକ୍ଷମ ଓ ପ୍ରାଣବନ୍ତ କରିଛି। ଗଳ୍ପର ଉପସ୍ଥାପନା ଏକମୁଖୀ ଓ ବୈକ୍ତିକ ହେବାସ୍ଥଳେ ପ୍ରଭାବ ନୈର୍ବ୍ୟକ୍ତିକ ଓ ବହୁମୁଖୀ। ତତ୍ତ୍ୱକୁ ଲୀଳାରେ ରୂପାନ୍ତର କରିବାରେ ବାମା ଚରଣ ସିଦ୍ଧହସ୍ତ। ତେଣୁ ସାଧାରଣ ଶିଳ୍ପ କାରିଗରୀ ଭିତରେ ଗଳ୍ପର ଆବେଦନ ବହୁ ପ୍ରସ୍ଥଯୁକ୍ତ ଓ ବୌଦ୍ଧିକ। ଭାଷାରେ ସେ ପ୍ରଗଳ୍ଭ। ତତ୍‌ସମ ତଦଭବ ଶବ୍ଦ ସହିତ ଲୋକ ପ୍ରଚଳିତ ଗ୍ରାମ୍ୟ ଭାଷା ରୁଚି, ଢ଼ଙ୍ଗ ପ୍ରଭୃତିର ପ୍ରୟୋଗ ବ୍ୟତିରେକେ ପୁରାଣ, ଇତିହାସର ଆଖ୍ୟାନର ସନ୍ନିବେଶ ଗଳ୍ପକୁ ଚମତ୍କାରିତା ପ୍ରଦାନ କରେ। ଦୁର୍ବୋଧ ପରୀକ୍ଷାନିରୀକ୍ଷାକୁ ଆପଣେଇ ଗଳ୍ପକୁ ଭାରାକ୍ରାନ୍ତ କରିନାହାଁନ୍ତି ବରଂ ମାନବର ଅନ୍ତରଙ୍ଗ ବିଦଗ୍ଧ ବାଣୀରେ ରସାଳ ଓ ଆକର୍ଷଣୀୟ କରି ଗଢ଼ିଛନ୍ତି। ଏହି ପର୍ଯ୍ୟାୟରେ ବାମାଚରଣଙ୍କ ବାକ୍‌ବୈଦଗ୍ଧ୍ୟ, ତଥ୍ୟନିଷ୍ଠତା ଓ ସାବଲୀଳ ବ୍ୟଙ୍ଗାତ୍ମକ ପରିପ୍ରକାଶ ଅତି କଳାତ୍ମକଭାବେ ଫୁଟିଉଠିଥିବାରୁ ଧଡିଭାଇ ସହିତ ଗୋଟିଏ ରାତ୍ରୀ, କଷ୍ଟେପୁତ୍ର, ଓ ବାବା ଡହରା ନନ୍ଦଙ୍କ ରୋମାଂଚକର କାହାଣୀକୁ ନିର୍ବାଚିତ କରାଗଲା। ଏହି ଗଳ୍ପ ଗୁଡିକରେ ଜାଗତିକ ସଂସାର ସହିତ ଏକ ଅନଶ୍ୱର ବୃହତ୍ତର ସତ୍ତାର ନିମଜ୍ଜମାନତା ଅତି ନିଗୂଢ଼ ଭାବରେ ପ୍ରଦର୍ଶିତ। ସାଧାରଣ ହସଖୁସି ଆନନ୍ଦ ନିରାନନ୍ଦର ପ୍ରେକ୍ଷାରେ ଏକ ମହାଭାବ ପ୍ରତି ଉନ୍ମୁଖତା ଏବଂ ସେହି ମହତ୍ତର ସତ୍ତାର ଉପଲବ୍ଧି ଅନ୍ତରାଳରେ ସୃଷ୍ଟି ଜିଜ୍ଞାସାବୋଧ ଅତି ତୀବ୍ରଭାବରେ ଗଳ୍ପଗୁଡିକରେ ଅନୁଭୂତ ହୁଏ। ସମକାଳୀନ କାହାଣୀର ଆଧାରରେ ସମୟାନ୍ତରର ସ୍ୱପ୍ନ ଦେଖିବା ଓ ସମୟାତୀତ ଆବେଦନ ପ୍ରକାଶ କରିବାରେ ବାମା ଚରଣଙ୍କ ଗଳ୍ପଗୁଡିକ ସମର୍ଥ।

ମଧ୍ୟବତ୍ତ ଜୀବନଚର୍ଯ୍ୟାକୁ ନେଇ କଥାପ୍ରସ୍ଥ ପ୍ରସ୍ତୁତ କଲାବେଳେ ବାମାଚରଣଙ୍କ ଲେଖନୀ ଯେତିକି ବାଙ୍ମୟ ସେତିକି ପଲ୍ଲବିତ। ନିଜର ଚେତନ ସ୍ତରରୁ ମହାଚେତନା ଆଡକୁ ଉନ୍ମୁଖ ଜୀବନ ଦୃଷ୍ଟି ପ୍ରକାଶ କରିବା ଏହି ଗଳ୍ପଗୁଡିକର ଆଦର୍ଶ। ମଧ୍ୟବିତ୍ତ ଜୀବନର ଦୁଃଖ ଦୁର୍ବିପାକ ଅଭାବ ଅନଟନ ଭିତରେ ଗଳ୍ପ ପୁରୁଷଟିଏ କିପରି ସନ୍ତୁଳିତ ହୁଏ ଅଥଚ ନିଜର ଆଦର୍ଶକୁ ପାଥେୟ କରି

ଆଗେଇଚାଲେ ତାର ସୁବିନ୍ୟସ୍ତ ଇତିକଥା ଲଡଡୁ, ପରୀକ୍ଷା, ନିମନ୍ତ୍ରଣ, ଲେଖା ଓ ଲେଖକ, ମାଦଳାପାଞ୍ଜି, ମଦର ସଂଚୟିତା, କାହାଣୀ, ଝରାଫୁଲ, ଗୋଟିଏ ଇନ୍‌କୁଆରୀ, ନିର୍ବାଚନ ପ୍ରଭୃତି ଗଳ୍ପରେ ପରିସ୍ଫୁଟ। ଲଡ୍‌ଡୁ ଗଳ୍ପରେ ସାମାନ୍ୟ ଦିଲ ମୋହିନୀ ଲଡ୍‌ଡୁକୁ ନେଇ ଗଳ୍ପ ନାୟକର ଦୁରାବସ୍ଥା ବେଶ୍ ବ୍ୟଙ୍ଗାତ୍ମକ ଶୈଳୀରେ ଚିତ୍ରିତ। ମଧ୍ୟବିତ୍ତ ପରିବାରର ଦାରିଦ୍ର୍ୟ କିପରି ବିଳାସୀ ମନର କଣ୍ଠରୋଧ କରେ ତାହାର ଉଜ୍ଜଳ ଦୃଷ୍ଟାନ୍ତ ଲଡ୍‌ଡୁ। ଏହି ଗଳ୍ପର ଭାବ ଅବେଦନ ଏତେ ତୀବ୍ର ଯେ ଏହା ଇଂରାଜୀ ସମେତ ଅନେକ ପ୍ରାଦେଶିକ ଭାଷାରେ ଅନୁବାଦିତ ଓ ପ୍ରଶଂସିତ। ଏହି ପର୍ଯ୍ୟାୟର ଗଳ୍ପଗୁଡ଼ିକରେ ମଧ୍ୟବିତ୍ତ ଜୀବନର ସୂକ୍ଷ୍ମଚିତ୍ର ଅତି ସୁନ୍ଦର ଓ କଳାତ୍ମକଭାବେ ପ୍ରଦର୍ଶିତ। ତାଲିକାସ୍ଥ ଗଳ୍ପ ମଧ୍ୟରୁ ଲଡ୍‌ଡୁ ଗଳ୍ପଟିକୁ ଶ୍ରେଷ୍ଠ ଗଳ୍ପରେ ଅନ୍ତର୍ଭୁକ୍ତ କରାଯାଇଛି।

ସକଳହେତୁବାଦୀ ଚିନ୍ତନପ୍ରତି ଆସ୍ଥା ପ୍ରକଟ କରି ମହତ୍ତର ଜୀବନଭୋଗର ଯାଚଞ୍ଜା କରନ୍ତି ବାମାଚରଣ। ପ୍ରତିଟି ଗଳ୍ପ ମାନବୀୟ ଗୁଣର ନିର୍ମୋହ ପ୍ରକାଶ ସହିତ ସମାଜ ଜୀବନର ମହତ୍ୱା କାଂକ୍ଷାକୁ ରୂପ ପ୍ରଦାନ କରେ। ବିଜ୍ଞାନସିଦ୍ଧ ଧାର୍ମିକତା, ପାରମ୍ପରିକ ଦାୟବଦ୍ଧତାକୁ ଉପଜୀବ୍ୟ କରିଥିଲେ ମଧ୍ୟ ବାମାଚରଣଙ୍କ ଗଳ୍ପ ଉଚ୍ଚତର ଅଭିଳାଷ ଓ ସତ୍ୟଶୀଳତାକୁ ଆଧୁନିକ ଚେତନା ସହିତ ସମନ୍ୱିତ କରେ। ମାନବବାଦୀ ଚିନ୍ତାଧାରାର ଅମଳିନ ପ୍ରକାଶ ଗୋଟି ଗଳ୍ପକୁ ଅପରୂପ କୌଳିନ ଓ ସୃଷ୍ଟିଶୀଳ ପ୍ରଜ୍ଞା ପ୍ରଦାନ କରେ। ମାନବବାଦୀ ଦୃଷ୍ଟିକୋଣରୁ ରଚିତ ତାଙ୍କର ଗଳ୍ପଗୁଡିକ ହେଲା କୃପାନିଧିବାବୁ, ଜୀବନ ଓ ଜୀବିକା, ପାଷଣର ପ୍ରାଣ, ଜଳସ୍ତମ୍ଭର, ଅମୃତସ୍ୟ ପୁତ୍ରାଃ, ପିତା ଓ ପୁତ୍ର ସ୍ମୃତି ରତ୍ନାକର, ସମୁଦାୟ, ଦନେଇ ତୁଉଣ, ଅପରାଧୀ, ଜୀବନ ଓ ଜୀବିକା, ମହାପୁରୁଷ ବାଗ, ସାଗର ଓଁ ବିନ୍ଦୁ, ବାବା ଡହାରା ନନ୍ଦଙ୍କର ବିବାହ ବୃତ୍ତାନ୍ତ, ମାନବ ଓ ଦାନବ, ପାକ ପ୍ରଣାଳୀ ଓ ଶାନ୍ତି ପ୍ରଭୃତି ଗଳ୍ପ। ଏହି ଗଳ୍ପ ମଧ୍ୟରୁ ଉତ୍କର୍ଷ ମାନସିକ ଅବେଦନରେ ଉର୍ଜସ୍ୱଳ କୃପାନିଧି ବାବୁ ଜୀବନ ଓ ଜୀବିକା, ପାଷାଣର ପ୍ରାଣ, ଅମୃତସ୍ୟ ପୁତ୍ରାଃ, ଦନେଇ ତୁଉଣ ଓ ମହାପୁରୁଷ ବାଗ ଗଳ୍ପକୁ ଶ୍ରେଷ୍ଠ ଗଳ୍ପ ସଂକଳନସ୍ଥ କରାଗଲା। କୃପାନିଧିବାବୁ ଚରିତ୍ର ବାମା ଚରଣଙ୍କ ଏକ ଅପୂର୍ବ ସୃଷ୍ଟି ଏତେ ବଳିଷ୍ଠ ଓ ଅଭିନବ ଚରିତ୍ର ଓଡ଼ିଆ ଗଳ୍ପରେ ବିରଳ। ଜୀବନ ଓ

ଜୀବିକା ଗଳ୍ପରେ ଧପଡ ସିଂହର ଚନାଚୂର ବିକ୍ରୟ ଅଭାବି ଜୀବନର ଦୃଶ୍ୟକୁ ଯେତିକି ପ୍ରତିଫଳିତ କରିଛି ମଣିଷର ଆର୍ଦ୍ର ସଂବେଦନକୁ ସେତିକି କରୁଣ ଭାବେ ଆକର୍ଷିତ କରିଛି। ପାଷାଣର ପ୍ରାଣ ଗଳ୍ପର ନାୟକ ଯାଦବ ବାବୁ ଅଭାବ ଅନାଟନ ମଧ୍ୟରେ ନିଷ୍ପେସିତ ହୋଇ ମଧ୍ୟ ନିଜ ଆଦର୍ଶରୁ ବିଚ୍ୟୁତ ହୋଇ ନାହାଁନ୍ତି। ନିଷ୍ପାପ ଚେତନାର ମହୋମୁଗ୍ଧ ପରିବେଶରେ ମନ୍ଦିରର ପାଷାଣ ମୂର୍ତ୍ତୀ ଜୀବନ୍ତ ହୋଇ ଉଠନ୍ତି ଏବଂ ଯାଦବ ବାବୁ ମହାମାନବିକତାର ପୂଜା ବେଦୀରେ ମୂର୍ତ୍ତୀକୁ ଚାହିଁ ଆତୁରଭାବରେ ଉଚ୍ଚାରଣ କରନ୍ତି ହେ ଭଗବାନ ମତେ ଧନମାନ ନ ଦିଅ ପଛେ ଅସାଧୁ କର ନାହିଁ। ବ୍ୟକ୍ତି ଜୀବନର ଅପାରମ୍ପରିକ ନିରୀହତା, ସରଳ ନିଷ୍କପଟ ଜୀବନଚର୍ଯ୍ୟା, ବାମା ଚରଣଙ୍କ ଲେଖନୀରେ ଜୀବନ୍ତ ଭାବେ ଫୁଟି ଉଠିଛି। ମହାପୁରୁଷ ବାଗ ଗଳ୍ପରେ ସଙ୍ଗୀତପ୍ରିୟ ରାମା ରାୟ ଓ ଭାରତର ନିରୀହ ଜନ ସାଧାରଣଙ୍କ ପ୍ରତିନିଧିତ୍ୱ କରିଛି। ନେତାମାନଙ୍କ ମିଥ୍ୟା ପ୍ରତିଶ୍ରୁତି ଓ ଛଳନାର ଶିକାର ହୋଇଛି ରାମା ରାୟ। ନେତାଙ୍କ ମିଥ୍ୟା ଭାଷଣରେ ପ୍ରଲୁବ୍ଧ ରାମା ରାଓ ବଡ ବଡିଆଙ୍କ ପାଇଁ ଉଦ୍ଦିଷ୍ଟ ବିଳାସପୂର୍ଣ୍ଣ ମହାପୁରୁଷବାଗରେ ପ୍ରବେଶ କରି ନିର୍ଯ୍ୟାତନା ଭୋଗ କରିଛି। ଉଗ୍ର ଆଧୁନିକତାର ଯୂପକାଷ୍ଠର କାମନା, ଶଠତା ଓ ଛଳନାରେ ବନ୍ଦୀ ପଡିଛନ୍ତି ରାମା ରାଓ ଓ ତା'ର ରୀହା ପତ୍ନୀ।

ଅମୃତସ୍ୟ ପୁତ୍ରାଃ ଗଳ୍ପରେ ମେଟେରନଟି ୱାର୍ଡର ଦୃଶ୍ୟକୁ ମାନବ ବାଦୀ ବିଚାରଶୀଳତା ନେଇ ବାମା ଚରଣ ଚିତ୍ରଣ କରିଛନ୍ତି। ସଂସାରର ସୃଜନ ବିନ୍ଦୁ କିପରି ଆହ୍ଲାଦମୟ ତାହାହିଁ ଏଠାରେ ପ୍ରକାଶିତ। ଯାବତୀୟ ଦୁଃଖ ଯନ୍ତ୍ରଣା ମଧ୍ୟରେ ମାତୃତ୍ୱର ଆସ୍ୱାଦ କିପରି ଅମୃତମୟ ଅମୃତସ୍ୟ ପୁତ୍ରାଃ ଗଳ୍ପର ତାହା ମୁଖ୍ୟ ସ୍ୱର ସନ୍ନ୍ୟାସୀଠାରୁ ସାଧାରଣ ଗୃହସ୍ଥ ଯାଏ ସନ୍ତାନ ପ୍ରାପ୍ତିରେ ସମସ୍ତେ ଉଲ୍ଲସିତ।

ଦନେଇ ତୁଉଣ ଫକୀର ମୋହନଙ୍କ ରାଣ୍ଡି ପୁଅ ଅନନ୍ତା ଗଳ୍ପକୁ ସ୍ମରଣ କରାଇ ଦିଏ। ଦନେଇ ଚାରି ଦଉଡିକଟା, କିନ୍ତୁ ପରୋପକାରୀ ବ୍ୟକ୍ତି। ଆଗପଛକୁ ବିଚାର ନାହିଁ, ନିଜ ଜୀବନକୁ ନିଜ ବାଗରେ ବଂଚେ। ନିଜର ବେପରୁଆ ଜୀବନ ପାଇଁ ଅନ୍ୟର ସ୍ମୃତି ହୋଇ ରହିଥାଏ। ସାମ୍ପ୍ରତିକ ସଂଘର୍ଷ ଭାରତ ବର୍ଷର ଅସ୍ମିତାଜାଗତ।

ସ୍ୱାଧୀନତା ପ୍ରାପ୍ତି ଠାରୁ ହିନ୍ଦୁ ମୁସଲମାନଙ୍କ କଳହ ଦେଶରେ ଲାଗି ରହିଛି । ଜାତି, ଧର୍ମ ଏବଂ ସଂପ୍ରଦାୟକୁ ନେଇ ସଂଘର୍ଷ କେବଳ ଭାରତରେ ନୁହେଁ ବିଶ୍ୱରେ ଲାଗି ରହିଛି । ହିନ୍ଦୁ ଓ ମୁସଲମାନ ସଂପ୍ରଦାୟ ଭାତୃଭାବ ଓ ଘନିଷ୍ଟତାକୁ ନେଇ ବାମା ଚରଣଙ୍କ 'ହୋଲି' ଓ 'ଧର୍ମକ୍ଷେତ୍ର' ଗଳ୍ପ ଦୁଇଟିର ସୃଷ୍ଟି । କୁଶଭଦ୍ରା ନଦୀର ଏପାରି କୁଶୁପୁରର ରାଧାବଲ୍ଲଭଙ୍କ ଉପାସକ ରାମ ପ୍ରଧାନ ଓ ସେପାରି ଅହମ୍ମଦପୁର ଗାଁର ରହିମ ଖାଁଙ୍କ ମଧ୍ୟରେ ଯୁଗଯୁଗର ଘନିଷ୍ଠତା ଓ ଆତ୍ମୀୟତା । ଉଭୟଙ୍କ ପୁଅ ନବ ଓ ଅବଦୁଲ୍ଲା ପରସ୍ପର ହାତରେ ମୃତ୍ୟୁବରଣ କଲେ ମଧ୍ୟ ଆତ୍ମୀୟତାର ବଂଧନ ଓ ସହାବସ୍ଥାନ ଅତୁଟ ରହିଥାଏ । ରାମ ପ୍ରଧାନଙ୍କ ନାତି ଶ୍ୟାମଘନ ଓ ରହିମଙ୍କ ନାତୁଣୀ ହସ୍‌ନୁଙ୍କ ମଧ୍ୟରେ ପ୍ରେମ ସଂମ୍ପର୍କ ଗଢ଼ିଉଠେ ଏବଂ ଏହାକୁ ସ୍ୱୀକୃତି ଦିଅନ୍ତି ଦୁଇ ବୁଢ଼ା । ଏପରି ଏକ ସାମ୍ପ୍ରଦାୟିକ ପ୍ରେମ ଓ ମୈତ୍ରୀ ବନ୍ଧନକୁ ନେଇ ହୋଲି ଓ ଧର୍ମକ୍ଷେତ୍ରେ ଗଳ୍ପ ଦ୍ୱୟର ସୃଷ୍ଟି । ପାରଂପରିକ ବିଶ୍ୱାସକୁ ନେଇ ବଟ ମହାପୁରୁଷ ଗଳ୍ପ ଚରିତ । ଫଂପାଅଭିଜାତ୍ୟ ରାଜନୀତିର କୁଟିଳତା ଓ ଆଧୁନିକତାର ଚାକଚକ୍ୟ ଗଳ୍ପଟିରେ ମାର୍ମିକ ରୂପ ଗ୍ରହଣ କରିଛି ।

ନାରୀ ମନସ୍ତତ୍ତ୍ୱକୁ ନେଇ ଶାନ୍ତି ଦେବୀଙ୍କ ଶାନ୍ତି ଓ ଅଶାନ୍ତି, ଜାଲ ରୂପେଣ, ବହୁମୂଖୀ, ଛାଡପତ୍ର, ଚଳଚ୍ଚିତ୍ର, ସ୍ୱର୍ଗାଦପି ଗରିୟସୀ, ପକ୍ଷାଘାତ ପ୍ରଭୃତି ଗଳ୍ପ ଏମଧ୍ୟରୁ ରାଣୀ ଦୁରୁଗା ଓ ସ୍ୱର୍ଗାଦପି ଗରିୟସୀ ଗଳ୍ପକୁ ଶ୍ରେଷ୍ଠ ଗଳ୍ପରେ ସଂକଳନଭୁକ୍ତ କରାଗଲା । ରାଣୀ ଦୁରୁଗାରେ ଗ୍ରାମ୍ୟ ମହିଳା ଦୁରୁଗା ଓ ନାରୀ ନେତ୍ରୀ ଦୁର୍ଗା ଦେବୀଙ୍କ ମାନସିକତାର ବୈଚିତ୍ର୍ୟ ଗଳ୍ପଟିରେ ପ୍ରଦର୍ଶିତ । ଛାଡପତ୍ର ଆଇନ ଓ ସମାଜ ଜୀବନର ବ୍ୟର୍ଥତା ଉପରେ ଗ୍ରାମ୍ୟ ନାରୀ ଓ ସହରୀ ମହିଳାଙ୍କ ଭାବନାର ପାର୍ଥକ୍ୟ ଗଳ୍ପଟିରେ ବ୍ୟଞ୍ଜନାତ୍ମକ ରୂପ ଗ୍ରହଣ କରିଛି, ସ୍ୱର୍ଗାଦପୀ ଗରିୟସୀ ଗଳ୍ପରେ ଗ୍ରାମ୍ୟନାରୀଙ୍କ ମନସ୍ତତ୍ତ୍ୱ ସହିତ ଗ୍ରାମ୍ୟଚଳଣୀ ଓ ସଂସ୍କୃତିର ଅପଲକ ଝଲକ ଅପୂର୍ବ ରୂପଶ୍ରୀ ଗହଣ କରିଛି ।

ମାନବେତର ଚରିତ୍ରକୁ ନେଇ କାଳଜୟୀ ଗଳ୍ପ ସୃଷ୍ଟି କରିବାରେ ବାମା ଚରଣ ସିଦ୍ଧ ହସ୍ତ । ଜୀବେଦୟା ତାଙ୍କ ଜୀବନର ଆଭିମୁଖ୍ୟ ଥିଲା । ବିଭିନ୍ନ ଗଳ୍ପରେ ପ୍ରସଙ୍ଗକ୍ରମେ ଜୀବଜନ୍ତୁ ପକ୍ଷୀ ପ୍ରଭୃତି ମାନବେତର ଜୀବଙ୍କ ଉଦାହରଣ ତାଙ୍କ ଗଳ୍ପରେ ନିହିତ । ମଣିଷର

ବିଭିନ୍ନ ଇନ୍ଦ୍ରୀୟ ଲାଳସାକୁ ଜୀବ ପ୍ରତୀକରେ ସେ ପ୍ରକାଶ କରିଛନ୍ତି। ଜୀବଙ୍କ ସହିତ ମାନବର ସହାବସ୍ଥାନ, କରୁଣାତ୍ମକ ସାହଚର୍ଯ୍ୟ, ହାସ୍ୟକର ପରିସ୍ଥିତିକୁ ବାମା ଚରଣ ଶବଦ୍ ରୂପ ଦେଇଛନ୍ତି। ଶିଶୁ ମନସ୍ତତ୍ତ୍ୱର ପ୍ରତିଫ୍ଳଳନ ପ୍ରସଙ୍ଗରେ ବିଲେଇ, ବାଘ, ମାଙ୍କଡ, ମୂଷା ପ୍ରଭୃତି ଜୀବଙ୍କ ବ୍ୟବହାର କଳାତ୍ମକ ଓ ହୃଦୟସ୍ପର୍ଶୀ ହୋଇଛି। ମଣିଷ ଜୀବନର ଦ୍ୱୈତ ବିଭକ୍ତ ପରିଶୀଳନ, ଜଟିଳ ମାନସିକ ସ୍ଥିତି ମାନବେତର ଜୀବଙ୍କ ଉପସ୍ଥିତିରେ ବେଶ୍ ହୃଦ୍ୟ ଓ ସ୍ପର୍ଶକାତର ହୋଇଛି। ଏହି ପର୍ଯ୍ୟାୟରେ ତ୍ରିନେତ୍ର, କୁକୁଡା ଚାଷ, ଆଗନ୍ତୁକ ଲୀଳାବିଧୃତ କଳେବର ଓ ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା ଗଳ୍ପକୁ ଗ୍ରହଣ କରାଯାଇପାରେ। ଏହି ସମସ୍ତ ଗଳ୍ପ ମଧ୍ୟରୁ କୁକୁଡାଚାଷ ଲୀଳାବିଧୃତକଳେବର ଓ ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା ଗଳ୍ପକୁ ଶ୍ରେଷ୍ଠ ସଂକଳନରେ ସ୍ଥାନିତ କରାଯାଇଛି। କୁକୁଡାଚାଷ, ଗଳ୍ପରେ ମାଇ କୁକୁଡା ଜରିଆରେ ଜୀବନର ଅଲଂଘ୍ୟ ପ୍ରକୃତି ଓ ତାର ସ୍ୱାଭାବିକ ଇନ୍ଦ୍ରୀୟ କ୍ରୀୟାର ପ୍ରତିଫଳନ ଘଟିଛି। ପରିବାରର ଆର୍ଥିକ ଦୈନ୍ୟ ଗୋବିନ୍ଦ ବାବୁଙ୍କୁ ବାଧ କରେ ପାଂଚ ବର୍ଷର ପୁଅକୁ ଛବି ବହି ବଦଳରେ କୁକୁଡା ଚାଷ ସଂପର୍କରେ ସରକାରୀ ପ୍ରଚାର ବହି ଧରେଇ ଦେବାକୁ କୁକୁଡାର ବଂଶ ବିସ୍ତାର ସହିତ ନିମ୍ନ ମଧ୍ୟବିତ୍ତ ପରିବାରର ବିପର୍ଯ୍ୟସ୍ତ ଜୀବନଚିତ୍ର ବେଶ୍ ବ୍ୟଙ୍ଗାତ୍ମକ ଶୈଳୀରେ ଚିତ୍ରିତ। ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା ଗଳ୍ପରେ ବାମା ଚରଣ ମୂଷାକୁ କେନ୍ଦ୍ର କରି ଇତିହାସ, ମାନବ ଚିତ୍ର, ବିପ୍ଳବ ଓ ଧର୍ମ ସଂସ୍ଥାପନର ଦାର୍ଶନିକ କଥନିକା ମଂଚାୟନ ହୋଇଛି। ମାନବ ଚରିତ୍ରର ଆଦର୍ଶ, ଜୀବଜନ୍ତୁ ପ୍ରେମ ଓ ଜୀବେ ଦୟାର ଉତ୍କୃଷ୍ଟ ଉଦାହରଣ ଏହି ଗଳ୍ପ। ପ୍ରକୃତି ପୁରୁଷର ଶାଶ୍ୱତ ଲୀଳା ଏଠାରେ ପ୍ରଦର୍ଶିତ। ଲୀଳା ବିଧୃତ କଳେବର ବାମା ଚରଣଙ୍କ ଏକ ଶ୍ରେଷ୍ଠ କୃତି। ଗଳ୍ପଟିରେ ସାମାନ୍ୟ ଦୁଇଟି ପୋକଙ୍କ ରତି କ୍ରୀଡାର ପ୍ରସଙ୍ଗ ଉପରେ ସାମାଜିକ, ମାନସିକ ଓ ସାଂସ୍କୃତିକ ସଂଘାତ ଓ ତାର ବୈଚିତ୍ର୍ୟମୟ ସମାଧାନର ସୂତ୍ର ନିହିତ। କାର୍ଯ୍ୟ କାରଣ ନଥାଇ ଘଟଣା ଘଟି ଚାଲିଛି। ଜନ ସାଧାରଣ ଅଶାନ୍ତ ଅତୃପ୍ତ ସବୁ କିଛି ଭାଙ୍ଗି ଗୁଜି ନୂଆ ଗଢ଼ିବାକୁ ବଦ୍ଧପରିକର। ବିଶୃଙ୍ଖଳିତ ଜନତାର ଆଭିମୁଖ୍ୟ ଗତାନୁଗତିକ ଧାରାକୁ ଭାଙ୍ଗିବା। ବିପର୍ଯ୍ୟସ୍ତ

ମନୋବୈଜ୍ଞାନିକ ସ୍ଥିତିରେ ରତିବିଳାସ କିପରି ଆଲୌକିକ ଶାନ୍ତି ପ୍ରଦାନ କରେ ତାର ଅନନ୍ୟ ଚିତ୍ର ଲୀଳାବିଧୃତ କଳେବର।

ମଧ୍ୟବିତ୍ତ ମାନସିକତାକୁ ବହୁଦିଗରୁ ବ୍ୟବଚ୍ଛେଦ କରି ଏକ ଆଦର୍ଶମୟ ସିଦ୍ଧାନ୍ତରେ ପ୍ରତିଷ୍ଠା ଦେବା ବାମା ଚରଣଙ୍କ ଗଳ୍ପର ମୁଖ୍ୟସ୍ୱର ଓଡ଼ିଆ ସାହିତ୍ୟରେ ସେ ଜଣେ ଅଙ୍ଗୀକାରବଦ୍ଧ ଜୀବନବାଦୀସ୍ଥପତି। ତାଙ୍କର ସାହିତ୍ୟ ଚିନ୍ତା ସହିତ ରାଜନୈତିକ ଦର୍ଶନ ଓ ସମାଜ ସଂସ୍କାରାଚ୍ଛନ୍ନ ଦୃଷ୍ଟିଭଙ୍ଗୀର ଅପୂର୍ବ ସଂଶ୍ଳେଷକୁ ଜଣେ କୃତବିଦ୍ୟ କଥାଶିଳ୍ପୀର ମାନ୍ୟତା ଦେଇଛି। ବିଜ୍ଞାନଠାରୁ ଉପନିଷଦ, ଲୋକ ସାହିତ୍ୟରୁ ବିଦଗ୍ଧ ସାହିତ୍ୟ, ଡିଟେକ୍ଟିଭଠାରୁ ଭାରତୀୟଦର୍ଶନ, ମାର୍କ୍ସବାଦଠାରୁ ଚାର୍ଲି ଚାପଲିନଙ୍କ ହାସ୍ୟମୁଖର କରୁଣତା ପର୍ଯ୍ୟନ୍ତ ତାଙ୍କର ଗଳ୍ପ ସୁବିନ୍ୟସ୍ତ। ମଣିଷ ମନର ସୂକ୍ଷ୍ମ ଅବଚେତନର ବିଶ୍ଳେଷଣକୁ ସମାଜମୁଖୀ ପ୍ରତିବଦ୍ଧତାରେ ସମାହିତ କରିବା ତାଙ୍କ ଗଳ୍ପ କଳାର ଅନନ୍ୟ ବୈଶିଷ୍ଟ୍ୟ। ମାନବବାଦୀ ଚିନ୍ତନରେ ବାମାଚରଣଙ୍କ ଦୃଷ୍ଟିଭଙ୍ଗୀ ଦେଶ କାଳପାତ୍ରର ସୀମା ଅତିକ୍ରମ କରି ଭୂମାରେ ଅଭିଷିକ୍ତ ହୁଏ। ବିଭିନ୍ନ ବାଦଊର୍ଦ୍ଧ୍ୱରେ ଉର୍ଜ୍ଜସ୍ୱଳ ଜୀବନର ସଂଗୀତ ତାଙ୍କର ପ୍ରତିଟି ଗଳ୍ପରେ ଅନୁରଣିତ ହୁଏ। ମହତ୍ତମ ଜୀବନବୋଧର ଦୀପଶିଖା ମହିମାନ୍ୱିତ ସମୟକୁ ଉନ୍ନୀତ ହୋଇ ଜୀବନ ଓ ଜୀବିକାକୁ ଅଧିଷ୍ଠିତ କରେ। ସଂକଳିତ ଗଳ୍ପଗୁଡିକ ବାମା ଚରଣଙ୍କ ପ୍ରତିଭାକୁ ସାମଗ୍ରିକଭାବେ ପ୍ରତିଫଳିତ କରିବ ଏଥିରେ ମୁଁ ସ୍ଥିର ନିଶ୍ଚିତ।

ଏହି ଶ୍ରେଷ୍ଠ ଗଳ୍ପ ସଂକଳନକୁ ସ୍ୱତଃପ୍ରବୃତ୍ତ ଭାବେ ପ୍ରକାଶ କରିବା ପାଇଁ ଓଡିଶାର ସଂଭ୍ରାନ୍ତ ପ୍ରକାଶନ ସଂସ୍ଥା 'ଟାଇମପାସ'ର ନିର୍ଦ୍ଦେଶକ ବିଶିଷ୍ଟ କବି ସ୍ନେହାସ୍ପଦ ସରୋଜ ବଳ ଆଗ୍ରହ ପ୍ରକାଶ କରିଥିବାରୁ ମୁଁ ସାଧୁବାଦ ଜଣାଉଛି। ଏହି ସଂକଳନ ବାମାଚରଣଙ୍କୁ ପୁଣିଥରେ ଆବିଷ୍କାର କରିବାର ସୁଯୋଗ ପ୍ରଦାନ କରୁ ।

**ଫଣୀନ୍ଦ୍ର ଭୂଷଣ ନନ୍ଦ**
'ସ୍ମୃତିଚିତ୍ର', ୬୭, ସରସ୍ୱତୀକୁଞ୍ଜ, ଜାଗମରା,
ଖଣ୍ଡଗିରି, ଭୁବନେଶ୍ୱର-୩୦

## ଶ୍ରେଷ୍ଠ ଗଳ୍ପ

# ନରଛଞ୍ଚାଣ

ମୋର ମନେହୁଏ, ଦୁର୍ବଳତା ହିଁ ଆମକୁ ଶକ୍ତି ଦିଏ ଏବଂ ଯାହାକୁ ଆମେ ଶକ୍ତି ବୋଲି ଗର୍ବ କରୁ ତାହା ହିଁ ଆମର ଦୁର୍ବଳତାର କାରଣ ହୁଏ । ମଧ୍ୟଯୁଗରେ ଧର୍ମ ନାମରେ ଯେତେ ଯୁଦ୍ଧ ବା ଅତ୍ୟାଚାର ହୋଇଥିଲା ଏ ଯୁଗରେ ରାଜନୀତି ନାମରେ ତାଠୁଁ ବେଶୀ ଯୁଦ୍ଧ ଓ ଅତ୍ୟାଚାର ଚିଲିଛି । 'ଧର୍ମ'ର ସ୍ଥାନ ନେଇଛି ରାଜନୀତି । ଜନସାଧାରଣଙ୍କ ଅବସ୍ଥା ଟିକିଏ ବି ବଦଳି ନାହିଁ ।

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା ପରି । ହିଟଲର ଜର୍ମାନୀ ଜାତିକୁ ପ୍ରବଳ ଉଚ୍ଚକଣ୍ଠରେ କହୁଥାଆନ୍ତି ''ଜର୍ମାନୀ ଜାତି ପୃଥିବୀରେ ଏକମାତ୍ର ଆର୍ଯ୍ୟ ଜାତି, ସେମାନେ ଚିରନ୍ତନ ଏବଂ ଅଜେୟ୍ ।'' ନିଜ ପ୍ରତି ତାଙ୍କର ମୋହ ଏହି ରୂପେ ପ୍ରକାଶ କରି ସେ ସମସ୍ତ ଜର୍ମାନୀ ସୃଷ୍ଟି କରି ଗୋଟିଏ ପରେ ଗୋଟିଏ ରାଜ୍ୟ ଜୟ କରୁ ଥାଆନ୍ତି । ସମଗ୍ର ପୃଥିବୀ ଜର୍ମାନୀର ଶକ୍ତି ଦେଖି ସ୍ତମ୍ଭିତ ହୋଇଗଲା । ଅଳ୍ପଦିନ ପରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭର ଘୋଷଣା ହୋଇଗଲା । ସମଗ୍ର ପୃଥିବୀର ପୁଞ୍ଜିପତିମାନେ ମୁହୂର୍ତ୍ତକେ ଦେଶପ୍ରେମୀ ହୋଇଗଲେ । ଭାରତର ସ୍ୱାଧୀନତା ସଂଗ୍ରାମ ସେତେବେଳେ ତୀବ୍ର ଆକାର ଧାରଣ କରିଥାଏ । ମୋର ମନେ ଅଛି ଗୋବର୍ଦ୍ଧନ ବାବୁଙ୍କୁ ଦିନେ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟରେ ପଚାରିବାରୁ ସେ କହିଲେ, ''ବୁଝିଲ ଡାକ୍ତର, ଅନ୍ୟ ଲୋକଙ୍କୁ ଶାସନ କରିବା ଖୁବ୍ ସହଜ, କିନ୍ତୁ ନିଜକୁ ଶାସନ କରିବା ଖୁବ୍ କଷ୍ଟ । ଇଂରେଜ ଯଦି ଆମକୁ ଟିକିଏ ମାନବିକତା ସହିତ ଶାସନ କରନ୍ତେ ତା'ହେଲେ କେବେ ହେଁ ମୁଁ ଦେଶର ସ୍ୱାଧୀନତା ପାଇଁ କଷ୍ଟ ସ୍ୱୀକାର କରନ୍ତି ନାହିଁ । କିନ୍ତୁ ସେମାନଙ୍କ ଶାସନ ଯେଉଁ ରୂପ ଧାରଣ କରିଛି ସେଥିରେ ସ୍ୱାଧୀନତା ଲାଭ ଭିନ୍ନ ଆଉ ଉପାୟ ନାହିଁ । ଲୋକର ମନ ଯଦି ସ୍ୱାଧୀନ ଥାଏ ଏବଂ ଶାସନ ଯଦି ମାନବିକତା ଦୃଷ୍ଟିରୁ ହେଉଥାଏ ତେବେ ଏ ଦେଶକୁ ଯିଏ ଶାସନ କରୁ ମୋର ସେଥିରେ ଆପତ୍ତି ନାହିଁ । ଶାସନ ଗୋଟାଏ ଏପରି ଜିନିଷ ଯାହା ଶାସକକୁ କ୍ରମେ କ୍ରମେ ଦୁର୍ବଳ କରି ପକାଏ ଏବଂ ପତନ ଆଡ଼କୁ

ଟାଣିନିଏ ।'' ଗୋବର୍ଦ୍ଧନ ବାବୁଙ୍କ ମତ ମୋତେ ଭଲ ଲାଗି ନଥିଲା । କିନ୍ତୁ ସେ ଯାହାହେଉ, ମହାଯୁଦ୍ଧର ପ୍ରତିକ୍ରିୟା ଭାରତରେ ଯେଉଁ ବିକୃତି ସୃଷ୍ଟି କଲା ତାହା ହେଉଛି 'କଳାବଜାର' । ପୃଥିବୀର ଅନ୍ୟତମ ମନୀଷୀ ଚାର୍ଲି ଚାପଲିନ୍ କହିଅଛନ୍ତି ''ହତ୍ୟା ବ୍ୟବସାୟ ନୀତିର ହିଁ ସଂପ୍ରସାରଣ ।'' ଇଉରୋପରେ ଯେଉଁ ହତ୍ୟାଲୀଳା ଆରମ୍ଭ ହେଲା ତାହା ବିକୃତ ରୂପରେ ଆରମ୍ଭ ହେଲା ଭାରତରେ 'କଳାବଜାର' ରୂପରେ ।

ଏହିପରି ପରିସ୍ଥିତିରେ ମୋର ମନ ସର୍ବଦା ଚଞ୍ଚଳ ଥାଏ । ଅନେକ ସମୟରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା କଥା ଭାବିଛି । କିନ୍ତୁ ମୁଁ ଭାରି ଭୀରୁ । ତେଣୁ ଅନ୍ୟ ଅନେକ ଉପାୟରେ ସ୍ୱାଧୀନତା ସଂଗ୍ରାମକୁ ସାହାଯ୍ୟ କଲେ ହେଁ ପ୍ରକାଶ୍ୟରେ କେବେ ହେଁ ତାହା କରିପାରିଲି ନାହିଁ । ସେତେବେଳେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ପ୍ରକାଶ୍ୟ ଭାବେ ଯୋଗ ଦେଇଥିଲେ ସ୍ୱାଧୀନତା ପରେ ବର୍ତ୍ତମାନ ସେମାନେ ବାହାଦୁରି କରି କହନ୍ତି 'ଆମେ ଭାରତର ସ୍ୱାଧୀନତା ଆଣିଛୁ ।'' ମୁଁ ଭାବେ ମୋ ପରି ଲୋକେ କ'ଣ ସ୍ୱାଧୀନତା ପାଇଁ ଚିନ୍ତା କରି ନାହାନ୍ତି ! ସ୍ୱାଧୀନତା ଯେତେ ସୁଖଦାୟକ ସେତେ ବିପଜ୍ଜନକ ମଧ୍ୟ । ଥୋକେ ଲୋକଙ୍କ ମନରେ ସ୍ୱାଧୀନତା ଆଣିଦିଏ ବିଜୟୋନ୍ମାଦ ଏବଂ ଥୋକେ ଲୋକଙ୍କ ମନରେ ଆଣିଦିଏ ହତାଶା । ଗୋବର୍ଦ୍ଧନ ବାବୁ ଏ ବିଷୟରେ ମୋତେ ଖଣ୍ଡେ ବହି ପଢ଼ିବାକୁ ଦେଇଥିଲେ । ବିଖ୍ୟାତ ମନସ୍ତତ୍ତ୍ୱବିତ୍ ଏରିକ୍ ଫ୍ରମଙ୍କ ଲେଖା 'ଫିୟର ଅଭ୍ ଫ୍ରିଡମ୍' ଅର୍ଥାତ୍ ସ୍ୱାଧୀନତାର ଭୀତି । ଏ ବହିଟି ସମସ୍ତଙ୍କର ପଢ଼ିବା ଉଚିତ୍ ।

ଗୋବର୍ଦ୍ଧନ ବାବୁଙ୍କ ମନ ହିମାଳୟ ପରି ସ୍ଥିର ଏବଂ ତାଙ୍କର ଭାବନା ହିମାଳୟର ଅଗଣିତ ଝରଣା ପରି ଦ୍ରୁତ । ମୁଁ ଡାକ୍ତରୀ ପାସ କରି ହାଉସ୍ ସର୍ଜନ ଥାଏ । ଗୋବର୍ଦ୍ଧନ ବାବୁ ତାଙ୍କର ରାସାୟନିକ ଗବେଷଣା ଓ ବିଶ୍ରାମ ବେଳେ ବେହେଲା ବାଦନରେ ବ୍ୟସ୍ତ ଥାଆନ୍ତି । ଦିନେ ଶୀତଦିନରେ ଗୋଟିଏ ରମଣୀୟ ସକାଳେ ଚାହାର ଧୂମାୟିତ ମୋହମାୟା ଉପଭୋଗ କରିବା ସମୟରେ ମୂର୍ତ୍ତିମାନ ବିଘ୍ନ କରି ପୁଲିସ ଇନ୍ସପେକ୍ଟର ପ୍ରାଣବଲ୍ଲଭ ବାବୁଙ୍କ ଠାରୁ ଗୋଟିଏ କ୍ଷୁଦ୍ର ଚିଠି ଆସିଲା । ଚିଠିଟି ପଢ଼ିସାରି ଗୋବର୍ଦ୍ଧନ ବାବୁ ମୋତେ ପଢ଼ିବାକୁ ଦେଲେ । ପ୍ରାଣବଲ୍ଲଭ ବାବୁ ଲେଖିଛନ୍ତି –

କଟକ

୨୯.୧୧.୪୧

ପ୍ରିୟ ଗୋବର୍ଦ୍ଧନ ବାବୁ,

ଗୋଟିଏ ଅତି ଚାଞ୍ଚଲ୍ୟକର ଘଟଣା ଘଟିଛି । ବିଖ୍ୟାତ କୋଟିପତି ବ୍ୟବସାୟୀ ଶ୍ରୀହର୍ଷଲାଲ ଧରମଦାସ ହଠାତ୍ ଅନ୍ତର୍ଦ୍ଧାନ ହୋଇଅଛନ୍ତି । ସକାଳେ ଖବର ପାଇ ମୁଁ

ଶ୍ରୀହର୍ଷ ବାବୁଙ୍କ ଘରକୁ ଆସିଛି । ଅନୁଗ୍ରହ କରି ଆପଣ ଶୀଘ୍ର ଆସିଲେ ଭଲ ହୁଅନ୍ତା । ଆପଣଙ୍କର ଅନୁସନ୍ଧାନରେ ଯେପରି ବାଧା ନ ଜନ୍ମେ ଏଥିପାଇଁ ଶ୍ରୀହର୍ଷ ବାବୁଙ୍କ ଶୋଇବା ଘରେ ଥିବା କୌଣସି ଜିନିଷରେ ମୁଁ ହାତ ଦେଇ ନାହିଁ ।

ଚିଠିଟି ପଢ଼ିସାରି ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇଲି । ସେ ଟିକିଏ ହସି କହିଲେ ନୂଆ ଗବେଷଣା ଗୋଟିଏ ଆରମ୍ଭ କରିଛି । କିନ୍ତୁ ଏ ଘଟଣାଟିରେ ଯଥେଷ୍ଟ ରହସ୍ୟ ଥିଲା ପରି ଜଣା ଯାଉଛି । ବୁଦ୍ଧି ଦ୍ୱାରା ରହସ୍ୟ ଭେଦ କରିବାରେ ବୋଧହୁଏ ମୋର ଯୌନ ପ୍ରବୃତ୍ତି କେତେକଟା ଚରିତାର୍ଥ ହୁଏ । 'ମାନସିକ କ୍ରିୟା' ବିଷୟରେ ମୁଁ ଗୋଟିଏ ପ୍ରବନ୍ଧ ଲେଖୁଛି । ସେଥିରେ ଏ ବିଷୟରେ ମୁଁ ଗୋଟିଏ ନୂଆ ତଥ୍ୟ ଦେଇଛି । ସେ ଯାହାହେଉ, ରହସ୍ୟ ସୁନ୍ଦରୀର ସନ୍ଧାନ ପାଇଲେ ମୋର ବୁଦ୍ଧି ଉତ୍ତେଜିତ ହୁଏ-ମୁଁ ସ୍ଥିର ହୋଇ ରହିପାରେନା । ଚାଲ ଯିବା । ତମେ ନ ଗଲେ ଚଳିବ ନାହିଁ, ଜଣେ ଗୁଣମୁଗ୍ଧ ପାଖରେ ଥିଲେ ବୁଦ୍ଧି ଭଲ ଖୋଲେ । ଗୋବର୍ଦ୍ଧନ ବାବୁଙ୍କ ତୀକ୍ଷ୍ଣ ବୁଦ୍ଧିର ପ୍ରତ୍ୟେକ କାର୍ଯ୍ୟ ଦେଖିବାରେ ମୁଁ ମଧ ଗୋଟାଏ ଆନନ୍ଦ ପାଏ । ସେ ହୁଏତ କହିପାରନ୍ତି ବୁଦ୍ଧି ନଥିବା ଲୋକର ଏ ବି ଗୋଟାଏ ବିକୃତି ।

ଦୁଇ ଖଣ୍ଡ ସାଇକେଲ ଧରି ଆମେ ବାହାରି ପଡ଼ିଲୁ ଏବଂ ଅଳ୍ପ ସମୟ ପରେ ଶ୍ରୀହର୍ଷ ବାବୁଙ୍କ ଘରେ ପହଞ୍ଚିଲୁ । ପ୍ରାଣବଲ୍ଲଭ ବାବୁ ଆମ ପାଇଁ ବାହାରେ ଅପେକ୍ଷା କରୁଥିଲେ । ଗୋବର୍ଦ୍ଧନ ବାବୁଙ୍କୁ ଦେଖି ସେ କହିଲେ, ''ଆପଣ ଆସିଲେ, ଭଲ ହେଲା । ମୁଁ ଏହାର କୌଣସି ପତ୍ତା ପାଉ ନାହିଁ । ଦୋମହଲାରେ ଶ୍ରୀହର୍ଷବାବୁଙ୍କ ଶୋଇବା ଘରକୁ ଚାଲନ୍ତୁ । ତେବେ ଗୋଟାଏ କଥା ମୁଁ କହି ରଖୁଛି ଯେ ସମସ୍ତ ଘଟଣାଟି ଶୁଣି ମୋର ସନ୍ଦେହ ହୁଏ ଏହା ଶ୍ରୀହର୍ଷ ବାବୁଙ୍କ ପୁଅର କର୍ମ । ଘରର ସମସ୍ତେ କହୁଛନ୍ତି ଯେ କାଲି ରାତିରେ ଦୁଇଜଣଙ୍କ ଭିତରେ ଭୀଷଣ କଳହ ହୋଇଥିଲା । ମୁଁ ତାକୁ ନଜରବନ୍ଦିରେ ରଖିଛି ।'' ଗୋବର୍ଦ୍ଧନ ବାବୁ କୌଣସି ମନ୍ତବ୍ୟ ନ କରି ସିଧା ଶୋଇବା ଘରକୁ ଗଲେ । ମୁଁ ମଧ ପଛେ ପଛେ ଗଲି । ଶୋଇବା ଘରଟି ଖୋଲା ଥିଲା । ଦୁଆର ମୁହଁ ସାମନାରେ ଥିବା ଖଟକୁ ଚାହିଁ ମୁଁ ଚମକି ପଡ଼ିଲି । ମୋର ଚମକିବାର କାରଣ ବୁଝିପାରି ଗୋବର୍ଦ୍ଧନ ବାବୁ କହିଲେ, ''ନା ଡାକ୍ତର, କେହି ଶୋଇ ନାହିଁ । ଦୁଇଟି ତକିଆକୁ ଚାଦର ଘୋଡ଼ାଇ ଏପରି କରା ହୋଇଛି ।''

ଗୋବର୍ଦ୍ଧନ ବାବୁ ତାଙ୍କର କାଚ ସାହାଯ୍ୟରେ ଘରର ଦୁଆର ମୁହଁ ଠାରୁ ପରୀକ୍ଷା ଆରମ୍ଭ କଲେ । ପରୀକ୍ଷା କରୁ କରୁ ସେ କହିବାକୁ ଲାଗିଲେ ''ଆପଣମାନେ କେହି ଏହା ଭିତରକୁ ନ ଆସି ଭଲ କରିଛନ୍ତି..... ଏ ଖଟରେ ସେ କାଲି ରାତିରେ ଅଳ୍ପକ୍ଷଣ ପାଇଁ ଶୋଇଥିଲେ..... ଶ୍ରୀହର୍ଷ ବାବୁଙ୍କ ବାଁ ଗୋଡ଼ ଟିକିଏ ଛୋଟା..... ଶୋଇବା

ପୂର୍ବରୁ ସେ ପାଇଖାନା ଯାଇଥିଲେ.... ହଁ, ଏଇ ଝରକା ପାଖରେ ସେ କିଛିକ୍ଷଣ ଛିଡ଼ା ହୋଇଥିଲେ..... ବୋଧହୁଏ ପାଇଖାନାରୁ ଆସିବା ପରେ..... ଏହି ଶୃଙ୍ଖଳା କାଦୁଅ ନିଶ୍ଚୟ ପାଇଖାନା ପାଖର.... ଆଃ-ହା, ସେ ଝରକା ପାଖେ ଛିଡ଼ା ହୋଇ ଗୋଡ଼ ଟେକି ରାସ୍ତା ଆଡ଼କୁ କାହିଁକି ଅନାଇଲେ ? ....ତା'ପରେ... ତା'ପରେ ହଁ, ତା'ପରେ ସେ ଲୁଗା ପିନ୍ଧିବାକୁ ଏହି ଅଲଗୁଣି ପାଖକୁ ଆସି ଲୁଗାପିନ୍ଧି.... ଲୁଗାପିନ୍ଧି.... ହଁ ଖଟ ପାଖକୁ ଗଲେ... ଖଟରେ ଅଳ୍ପକ୍ଷଣ ପାଇଁ ଶୋଇ ସେ ପ୍ରାୟ ଚମକି ଉଠିଲେ ଏବଂ... ଏବଂ... ଏବଂ ? ହଁ, ଏବଂ ଆସ୍ତେ ଆସ୍ତେ ପୁଣି ଝରକା ପାଖକୁ ଗଲେ..... ବାସ୍, ଏଠି ଆଉ କିଛି ଜାଣିବାର ନାହିଁ.... ଆପାତତଃ ।'' କେତେବେଳେ ତକିଆରେ ବା ସାମାନ୍ୟ ଟିକିଏ ଧୂଳି ପରୀକ୍ଷା କରି ଆଉ କେତେବେଳେ ତକିଆ ଶୁଂଘି ସେ ଉପରୋକ୍ତ କଥାଗୁଡ଼ିକ କହିଗଲେ । ଅଧିକାଂଶ ସମୟରେ ସେ ନଇଁପଡ଼ି କାଚ ସାହାଯ୍ୟରେ ଚଟାଣଟି ପରୀକ୍ଷା କରୁଥିଲେ ଏବଂ ମଝିରେ ମଝିରେ ପକେଟରୁ ଫିତା କାଢ଼ି ଚଟାଣରେ ବୋଧହୁଏ ପାଦଚିହ୍ନ ମାପୁଥିଲେ । ପରୀକ୍ଷା ଶେଷ କରି ସେ ସିଧା ହୋଇ ଛିଡ଼ା ହେଲେ ଏବଂ କିଛିକ୍ଷଣ ଭାବି ବାରନ୍ଦାକୁ ଗଲେ । ସେଠି ମଧ୍ୟ ସେ ଅନେକକ୍ଷଣ ଯାଏ ପରୀକ୍ଷା ଚଳାଇଲେ । ତାଙ୍କର ଅନେକ ଅନୁସନ୍ଧାନ ଦେଖି ମୋର ଅନେକ ଜ୍ଞାନ ହୋଇଛି । ଗୋଟିଏ ପଦଚିହ୍ନରୁ ଅନ୍ୟ ପଦଚିହ୍ନର ଦୂରତ୍ୱରୁ ଜଣାଯାଏ ଲୋକ କେତେବେଳେ ଧୀରେ ଧୀରେ ଆଉ କେତେବେଳେ ବା ଦ୍ରୁତ ଗତିରେ ଗମନ କରିଛି । ପାଦଚିହ୍ନର ସ୍ୱଷ୍ଟତା ଓ ବିଭିନ୍ନ ସ୍ଥାନରେ ଚାପରୁ ଏହା ଜଣାଯାଏ । ତକିଆରେ ମୁଣ୍ଡର ଚିହ୍ନରୁ ବୋଧହୁଏ ସେ ଜାଣିପାରିଲେ ଶ୍ରୀହର୍ଷ ବାବୁ ଅଳ୍ପ ସମୟ ପାଇଁ ତକିଆରେ ମୁଣ୍ଡ ରଖିଥିଲେ ।

ବାରନ୍ଦା ପରୀକ୍ଷା ଶେଷ କରି ସେ କହିଲେ, ''ବାରନ୍ଦାରେ କାହା ସହିତ ଅନେକ କ୍ଷଣ ପର୍ଯ୍ୟନ୍ତ କଳହ ହୋଇଥିଲା । ଏହା ଘର ଭିତରକୁ ଆସିବା ଆଗରୁ କି ପରେ ମୁଁ କହିପାରୁ ନାହିଁ । ବାରନ୍ଦାର ଦୁଇଜଣ ଲୋକର ପଦଚିହ୍ନ ବହୁତ ଥର ଏପାଖ ସେପାଖ ଯାଆସ କରିଛି.... ଏବଂ ମଝିରେ ମଝିରେ ଦ୍ରୁତ ଗତିରେ ମଧ୍ୟ । ଗୋଟିଏ ପଦଚିହ୍ନ ଶ୍ରୀହର୍ଷ ବାବୁଙ୍କର, ଅନ୍ୟଟି ବୋଧହୁଏ ତାଙ୍କର ପୁଅର । ଏଠି ଆଉ ବିଶେଷ କିଛି ଜାଣିବାର ନାହିଁ । ଘର ଭିତରର ଅନ୍ୟାନ୍ୟ ଜିନିଷ ପରୀକ୍ଷା କଲେ ନୂତନ ତଥ୍ୟ କିନ୍ତୁ ମିଳିପାରେ ।''

ଏତେକ୍ଷଣ ଆମେ ସମସ୍ତେ ଦୂରରେ ଛିଡ଼ା ହୋଇଥିଲୁ । ବର୍ତ୍ତମାନ ସେ ଘର ଭିତରକୁ ଯିବାକୁ ଅନୁମତି ଦେଲେ । ଘରର ଗୋଟିଏ କଣରେ ଗୋଟିଏ ସାନ ଟେବୁଲ ପଡ଼ିଛି । ଟେବୁଲ ଉପରେ ଅନେକ କାଗଜ ପତ୍ର ଓ ଗୋଟିଏ ଘଡ଼ି ଅଛି । ଘଡ଼ିଟି ଉଠାଇ ନେଇ ଗୋବର୍ଦ୍ଧନ ବାବୁ ପରୀକ୍ଷା କଲେ । ଗୋଟିଏ ସାଧାରଣ 'ଏଲାର୍ମ' ଘଡ଼ି ।

'ଏଲାର୍ମ' କଣ୍ଟା ବାରଟା ଉପରେ ଥିଲା । ଗୋବର୍ଦ୍ଧନ ବାବୁ ଘଡ଼ିର ଘଣ୍ଟା କଣ୍ଟାଟି ବୁଲାଇ ପୁଣି ବାରଟା ଉପରେ ରଖିଦେଲେ । ଏଲାର୍ମ ବାଜି ଉଠିଲା - ପ୍ରାୟ ମିନିଟେ ପର୍ଯ୍ୟନ୍ତ ବାଜିଲା ପରେ ଗୋବର୍ଦ୍ଧନ ବାବୁଙ୍କ ଶରୀର ଆସ୍ତେ ଆସ୍ତେ ସଙ୍କୁଚିତ ହୋଇ ଆସିଲା । ସେ ମୋ ଆଡ଼କୁ ଅନାଇ କହିଲେ, ''ଶ୍ରୀହର୍ଷ ବାବୁ କାଲି ରାତି ବାରଟାରେ ଏ ଘର ଛାଡ଼ିଛନ୍ତି । ସେ ଘଡ଼ିରେ ଏଲାର୍ମ ଦେଇ ରଖିଥିଲେ ଏବଂ ବାରଟା ଏଲାର୍ମ ବାଜିବା ସାଙ୍ଗେ ସାଙ୍ଗେ ସେ ଖଟ ଉପରୁ ଆସି ଏହା ବନ୍ଦ କରିଛନ୍ତି । ଏହି ଟିପ ଚିହ୍ନଟି ନିଶ୍ଚୟ ତାଙ୍କର (ମେଗ୍ନିଫାଇଙ୍ଗ କାଚ ସାହାଯ୍ୟରେ ମୁଁ ଟିପଚିହ୍ନ ସ୍ପଷ୍ଟ ଦେଖି ପାରିଲି) ଏହାପରେ ସେ ଝରକା ପାଖକୁ ନିଶ୍ଚୟ ଯାଇଥିଲେ । ଏଥିରୁ ଜଣାଯାଏ..... ।'' ସେ ନୀରବ ରହିଲେ ଏବଂ ଟେବୁଲ ଉପରେ ଥିବା କାଗଜ ଆଦି ଅନେକ ବେଳଯାଏ ପରୀକ୍ଷା କରିବାକୁ ଲାଗିଲେ । ପ୍ରତ୍ୟେକଟି କାଗଜ ପଢ଼ି ଏବଂ ଆହୁରି ଅନେକକ୍ଷଣ ତାଙ୍କ କାଚତଳେ ରଖି ପରୀକ୍ଷା କଲେ । ପରୀକ୍ଷା ପରେ ସେ ଗମ୍ଭୀର ଭାବରେ ଚିଠିଟି ମୋ ଆଡ଼କୁ ବଢ଼ାଇ ଦେଲେ ଏବଂ ପ୍ରାଣବଲ୍ଲଭ ବାବୁଙ୍କୁ କହିଲେ, ''ଆପଣ ଶ୍ରୀହର୍ଷ ବାବୁଙ୍କ ପୁଅଙ୍କୁ ଛାଡ଼ି ଦିଅନ୍ତୁ, ମୋର ଦୃଢ଼ ବିଶ୍ୱାସ ସେ ନିର୍ଦ୍ଦୋଷ । ହିନ୍ଦୀରେ ଲେଖା ଏ ଚିଠିଟି ପଢ଼ିଲେ ବୁଝିପାରିବେ ।'' ଗୋବର୍ଦ୍ଧନ ବାବୁ ହିନ୍ଦୀ ବୋଲି କହିଲେ ମଧ୍ୟ ଚିଠିଟି ଓଡ଼ିଆରେ ଲେଖା । ଚିଠିଟିର ଅବିକଳ ନକଲ ଦେଲି ।

ଶ୍ରୀହର୍ଷଲାଲଜି,

ମୋର ଶରୀର ଭଲ ଅଛି । ଅନ୍ୟାନ୍ୟ ଭଲ ଅଛନ୍ତି ମଧ୍ୟ । ଆପଣଙ୍କ କୌଣସି ଖବର ପାଇ ନାହିଁ । ଲୁହା ପାଇଁ ବରଜ୍ ଲାଲ୍ କଲିକତା ଗଲା । ଲୁହା ଆସିଲେ ପଠାଇବି । କାଲି ରାତିରେ ସେମାନେ ଗଲେ । କେବେ ଫେରିବେ ଜାଣେ ନାହିଁ । ମୁଁ ଭରତପୁର ବୋଧହୁଏ ଯିବି । ସେଠାକାର କାମ ଭଲ ଚାଲିଛି । ଛିମନ୍ ଲାଲ୍ ମୋ ସହିତ ଯିବ । ସେଠି ଧର୍ମଶାଳା କରୁଛି । ପଥର ଦିନ ଯାଇପାରେ । ଆପଣ ଏଠାକୁ ନିଶ୍ଚେ ଆସନ୍ତୁ । କେବେ ଆସିବେ ଲେଖିଲେ ଏଠାରେ ସବୁ ବନ୍ଦୋବସ୍ତ କରିବି । ଆସିବା ସମୟରେ ପୁରୁଣା ହିସାବ ଖାତାପତ୍ର ସବୁ ନେଇ ଆସିବେ । ଏଠି ସବୁ ହିସାବ ଭଲରୂପେ କରାଯାଇଥାଏ ? ଆପଣଙ୍କ ପୁଅ କିପରି ଅଛି ? ବ୍ୟବସାୟ ବୁଝୁଛି କି ? ମୋର ପୁଅ ସମସ୍ତ ବରବାଦ କରିଦେବ । ଜିଦ୍‌କରି ମୋଟର କିଣିଛି । ପନ୍ଦର ହଜାରରୁ ବେଶୀ ଦାମ୍ ଦେଇ ମୋଟର କିଣିଛି । ମୋ ଟଙ୍କା ନଷ୍ଟ କରିବାର କଅଣ ଦରକାର ? ଲାଲାଜି ଏହିପରି କରି ସମସ୍ତ ବ୍ୟବସାୟ ନଷ୍ଟ କଲା । ଏକଥା ଆସିଲେ ତାହାକୁ ବୁଝାଇ କହିବେ । ମୁଁ କହିଲେ ରାଗାନ୍ୱିତ ହେଉଅଛି । ଧର୍ମ ନ କରି ମଉଜ ଆଦି କରିବା ଏକ ପାପ । ଆପଣ ଆସି ନିଶ୍ଚୟ ତାହାକୁ ସବୁ ବୁଝାଇ କହିବେ । ଯଦି ସେ ନିତାନ୍ତ ନ ବୁଝେ ତାହା

ହେଲେ ମୁଁ ସବୁ ବେୱାରିସ୍ କରି ଦେଇଯିବି । ତାହାଛଡ଼ା ମୁଁ କଅଣ କରିବି । ଗନ୍‌ପତ୍ ଲାଲାର ପୁଅର ବାହାଘର କେବେ ହେଉଛି ? ଗନ୍‌ପତ୍‌ର ପୁଅ କାରବାର ଭଲ ଚଳାଉଛି । ବୋଧହୁଏ ମାହେଶ୍ୱରୀ ଲାଲ୍ ଝିଅ ସହିତ ବିବାହ ଠିକ୍ ହେଲା । ପଣ ଲକ୍ଷେ ଟଙ୍କା ବୋଧହୁଏ । ଆଉ କଅଣ ଲେଖିବି ।

ଇତି

ବଂଶୀଲାଲ

ଏହାକୁ ହିନ୍ଦୀରେ ଲେଖା ଚିଠି କହିବାର ଅର୍ଥ ମୁଁ କିଛି ବୁଝି ପାରିଲି ନାହିଁ । ପ୍ରାଣବଲ୍ଲଭ ବାବୁ ଓ ଶ୍ରୀହର୍ଷ ବାବୁଙ୍କ ପୁଅ ମଧ ଚିଠିଟି ପଢ଼ିଲେ । ସେମାନଙ୍କ ଚାହାଁଣିରୁ ବୁଝିଲି ସେମାନେ ମଧ କିଛି ବୁଝିପାରି ନାହାନ୍ତି । ଚିଠିଟିର ଗୁରୁତ୍ୱ ବିଷୟରେ ସନ୍ଦିହାନ ହେଲେ ମଧ ଗୋବର୍ଦ୍ଧନ ବାବୁଙ୍କ ଆଦେଶ ମତେ ଚିଠିଟି ସାବଧାନତା ସହିତ ପକେଟରେ ରଖିଲି । ବଂଶୀଲାଲ ବିଷୟରେ ଗୋବର୍ଦ୍ଧନ ବାବୁ ଶ୍ରୀହର୍ଷ ବାବୁଙ୍କ ପୁଅ ଠାରୁ ସମସ୍ତ ବିଷୟ ବୁଝିଲେ । ବଂଶୀଲାଲ ଢେଙ୍କାନାଳର ଜଣେ ପ୍ରସିଦ୍ଧ ମାରୱାଡ଼ି ବ୍ୟବସାୟୀ । ଶ୍ରୀହର୍ଷ ବାବୁଙ୍କ ସହିତ ତାଙ୍କର ସମ୍ବନ୍ଧ ପନ୍ଦର ବର୍ଷ ପୂର୍ବରୁ ଅଛି । ସମସ୍ତ ଖବର ଦେବା ପରେ ସେ ପ୍ରାଣବଲ୍ଲଭ ବାବୁଙ୍କୁ କହିଲେ, ''ମୋର ଏଠି ଆଉ କିଛି କହିବାର ନାହିଁ । ଆପଣ ବର୍ତ୍ତମାନ କ'ଣ କରିବେ ବୋଲି ଠିକ୍ କରିଛନ୍ତି ?''

ପ୍ରାଣବଲ୍ଲଭ ବାବୁ ବିଶେଷ ଚିନ୍ତିତ ଭାବରେ କହିଲେ, ''ମୁଁ କିପରି କେଉଁଠି ଅନୁସନ୍ଧାନ କରିବି କିଛି ବୁଝିପାରୁ ନାହିଁ । ତେବେ ଆପାତତଃ ଅନ୍ୟ କୌଣସି ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଶ୍ରୀହର୍ଷ ବାବୁଙ୍କ ପୁଅଙ୍କୁ ଗିରଫ୍ କରି ରଖିବି ।''

ଗୋବର୍ଦ୍ଧନ ବାବୁ ହସି କହିଲେ, ''କିଛି ନ ମିଳିଲେ କଣାକୁ ଧର ନୀତିରେ ?''

ପ୍ରାଣବଲ୍ଲଭ ବାବୁ ଟିକିଏ କ୍ଷୁର୍ଣ୍ଣ ହେଲେ । ସେ ଗମ୍ଭୀର ହୋଇ କହିଲେ, ''ଇତି ମଧ୍ୟରେ ମୁଁ ଶ୍ରୀହର୍ଷ ବାବୁଙ୍କ ପ୍ରତ୍ୟେକ ଆତ୍ମୀୟଙ୍କୁ ତାର କରି ସାରିଛି । ଶ୍ରୀହର୍ଷ ବାବୁଙ୍କ ଚେହେରାର ବର୍ଣ୍ଣନା ଦେଇ ପ୍ରତ୍ୟେକ ରେଳ ଷ୍ଟେସନକୁ ମଧ ତାର କରିଛି । କଟକରେ ମଧ ବିଭିନ୍ନ ସ୍ଥାନରେ ତଲାସ ହୋଇଛି । ମୋର ଅନୁମାନ, ହଠାତ୍ କାର୍ଯ୍ୟ ଉପଲକ୍ଷେ ଶ୍ରୀହର୍ଷ ବାବୁ ବାହାରକୁ କେଉଁଠି ଯାଇଅଛନ୍ତି । ସବୁ ସ୍ଥାନରୁ ଖବର ନ ଆସିବା ପର୍ଯ୍ୟନ୍ତ ମୁଁ କ'ଣ କରିପାରେ ? ଆପଣ ଯେ ବିଶେଷ କିଛି କରି ପାରିବେ ମୋର ଆଶା ହେଉ ନାହିଁ- କାରଣ ଆପଣଙ୍କୁ ନିଶ୍ଚୟ ଏ ସବୁ ଖବର ଉପରେ ନିର୍ଭର କରିବାକୁ ହେବ ।''

''ଆପଣଙ୍କ ଅନୁସନ୍ଧାନର ସୁବିଧା ସକାଶେ ଏହି ଚିଠିଟି ରଖି ପାରନ୍ତି । ଏ ଚିଠିଟି ହିନ୍ଦୀରେ ଲେଖା ଜାଣି ପାରିଲେ ସବୁ ପରିଷ୍କାର ହୋଇଯିବ ।''

''ଏ ଚିଠିରେ କଅଣ ଅଛି ଏ ତ ଅତି ସାଧାରଣ ଚିଠି । ସବୁଥିରେ ବିସ୍ମୟ ନିହିତ ଅଛି ବୋଲି ଆପଣଙ୍କର ଗୋଟାଏ ଧାରଣା । ଆପଣ ସେ ଚିଠି ରଖନ୍ତୁ । ମୁଁ ମୋ ବୁଦ୍ଧି ଅନୁସାରେ ଅଗ୍ରସର ହେବି ।

''ଉତ୍ତମ ! କିନ୍ତୁ, ଅନ୍ଧାଧନ୍ଦିଆ ଭାବରେ ଅଗ୍ରସର ହୋଇ ଲାଭ ନାହିଁ, ଏହି ଚିଠିଟି ଆପଣଙ୍କୁ ବାଟ ଦେଖାଇ ଦେଇ ପାରନ୍ତା । ମୁଁ ଆଶା କରେ ଦୁଇଦିନ ଭିତରେ ରହସ୍ୟଟି ଭେଦ କରିପାରିବି । ଆପଣ - ଆଚ୍ଛା ଥାଉ ।'' କ'ଣ କହିବାକୁ ଯାଇ ଗୋବର୍ଦ୍ଧନ ବାବୁ ନୀରବ ରହିଲେ ଏବଂ ମୋତେ ସଙ୍କେତ କରି ସେଠାରୁ କ୍ଷିପ୍ର ଗତିରେ ବାହାରି ଗଲେ । ବାହାରକୁ ଆସି ସେ କହିଲେ, ''ଡାକ୍ତର, ତୁମେ ଦୁଇଦିନ ଡାକ୍ତରଖାନା ନ ଗଲେ ବୋଧହୁଏ ଚଳିବ ? ବେଶ୍, ତେବେ ଶୀଘ୍ର ଆସ । ତାଳଚେର ଗାଡ଼ି ଯିବାକୁ ଆଉ ୨୫ ମିନିଟ୍ ସମୟ ଅଛି ।'' ସାଇକେଲ ଦିଓଟି ସେହିଠାରେ ରଖି ଆମେ ଟାଉନ୍ ବସ୍‌କୁ ଅଟକାଇ ଉଠି ପଡ଼ିଲୁ ।

କଟକ ଷ୍ଟେସନରେ ପହଞ୍ଚିବା ସମୟରେ ତାଳଚେର ପାସେଞ୍ଜର ଛାଡ଼ିବାକୁ ଆଉ ପାଞ୍ଚ ମିନିଟ୍ ଥାଏ । ଗୋବର୍ଦ୍ଧନ ବାବୁ ଢେଙ୍କାନାଳକୁ ଦୁଇଟି ତୃତୀୟ ଶ୍ରେଣୀ ଟିକେଟ କିଣି ଆଣିବାକୁ ପଇସା ଦେଲେ । ଭିଡ଼ ଠେଲି ବହୁତ କଷ୍ଟରେ ଟିକେଟ କିଣି ଆଣିବା ବେଳକୁ ଗାଡ଼ି ଛାଡ଼ିବା ଉପରେ । କୌଣସି ମତେ ଭିଡ଼ ଠେଲି ଗୋଟିଏ ଡବାରେ ଆମେ ଉଠିଲୁ । ସବୁ ତୃତୀୟ ଶ୍ରେଣୀ ପାଖରେ ଭୀଷଣ ଭିଡ଼ । ଅନେକ ଥର ଦେଖିଛି ଟ୍ରେନରେ ଗଲାବେଳେ ଗୋବର୍ଦ୍ଧନ ବାବୁ ତୃତୀୟ ଶ୍ରେଣୀ ହିଁ ପସନ୍ଦ କରନ୍ତି । ନାନା ଦେଶର ନାନା ପ୍ରକାର ଲୋକମାନଙ୍କର ଚାଲିଚଳଣ କଥାବାର୍ତ୍ତା ଲକ୍ଷ କରିବାରେ ସେ ଏକ ଦାର୍ଶନିକ ଆନନ୍ଦ ଅନୁଭବ କରନ୍ତି । କାହା ସହିତ ଟିକିଏ ପରିହାସ, କାହା ସହିତ ଅବା ଟିକିଏ ବୃଥା କଳହ କରି ତାଙ୍କର ସମୟଟି ବେଶ କଟିଗଲା । ମୋତେ କିନ୍ତୁ ବିରକ୍ତ ଲାଗୁଥାଏ ।

ଢେଙ୍କାନାଳରେ ପହଞ୍ଚି ଗୋବର୍ଦ୍ଧନ ବାବୁ ପ୍ରଥମେ ବଂଶୀଲାଲର ସନ୍ଧାନ ନେଲେ । ଜଣକୁ ପଚାରିବାରେ ସେ କହିଲା, ''ବଂଶୀଲାଲ ବାବୁ କାଲି ରାତିରେ ଜଙ୍ଗଲରେ ତାଙ୍କ କାଠ ଗୋଲାକୁ ଯାଇଥିଲେ । ତାଙ୍କୁ ବାଘ ମାରି ପକାଇଛି । ଶବଟି ବର୍ତ୍ତମାନ ତାଙ୍କ ଘରେ ଅଛି ।'' ଆମେ ଶୀଘ୍ର ବଂଶୀଲାଲ ଘରକୁ ଗଲୁ । ସ୍ଥାନୀୟ ଦାରୋଗା ସେଠି ଉପସ୍ଥିତ ଥିଲେ । ଗୋବର୍ଦ୍ଧନ ବାବୁ ତାଙ୍କୁ ନିଜର ପରିଚୟ ଦେଇ ଶବଟି ଦେଖିବାକୁ ଚାହିଁଲେ । ଶବଟିକୁ କିଛିକ୍ଷଣ ତାଙ୍କର ବୋକାଙ୍କ ଭଳି ଚାହାଣିରେ ଚାହିଁ ରହି ସେ ହଠାତ୍ ବଂଶୀଲାଲ ପିନ୍ଧିଥିବା ରବର ଜୋତା ଦୁଇଟି ଟେକି ଦେଖିଲେ ଏବଂ ଅଙ୍ଗୁଳିରେ ଜୋତା ତଳରୁ କଅଣ ପୋଛି ଆଣି ନିଜେ ଶୁଙ୍ଘିଲେ ଓ ମୋତେ ଶୁଘାଂଇ ପଚାରିଲେ, ''ଡାକ୍ତର, ଏ କ'ଣ ଜଣା ପଡୁଛି ?''

ତାଙ୍କ ଆଙ୍ଗୁଳିରେ ତେଲ ଚିକିଟା ପରି କ'ଣ ଲାଗିଥାଏ -ଗନ୍ଧରୁ ମଧ୍ୟ ମୋର ସେହିପରି ଅନୁମାନ ହେଲା । କିନ୍ତୁ ଠିକ୍ ବୁଝିପାରିଲି ନାହିଁ । ମୋତେ ଘୃଣା ମାଡୁଥାଏ, ନୀରବ ରହିଲି । ଶବଟି ଉତ୍ତମ ରୂପେ ପରୀକ୍ଷା କରି ସାରି ବଂଶୀଲାଲ ପୁଅକୁ ଡାକି ପଚାରିଲେ, ''ବଂଶୀବାବୁ କ'ଣ ପ୍ରାୟ ରାତିରେ ଜଙ୍ଗଲକୁ ଯାଆନ୍ତି ?''

''ନା । ତେବେ ଜଙ୍ଗଲରେ ଆମର ଗୋଟିଏ କାଠ-ଗୋଲା ଅଛି । କେତେଦିନ ହେବ ଚୋରି ହେଉଥିବାରୁ ସେ ରାତିରେ ଉଠି ମଝିରେ ମଝିରେ ଦେଖିବାକୁ ଯାଆନ୍ତି ।''

''ସାଙ୍ଗରେ ବନ୍ଧୁକ କିମ୍ବା ଅନ୍ୟ କିଛି ନିଅନ୍ତି ?''

''ହଁ, ଗୋଟିଏ ରିଭଲଭର ନିଅନ୍ତି ।''

''ଏକା ଯାଆନ୍ତି କାହିଁକି ?''

''ଏଠୁଁ ଗୋଲାଟି ବେଶୀ ଦୂର ନୁହଁ । ତେଣୁ -''

''କାଲି ରାତିରେ ସେ ରିଭଲଭର ନେଇଥିଲେ ?''

''ହଁ ।''

ରିଭଲଭରଟି ମାରି ସେ ପରୀକ୍ଷା କଲେ । ରିଭଲଭରର ଛଅଟି କୋଠରୀରେ ଛଅଟି ଯାକ ଗୁଳି ଥିଲା । ଗୋବର୍ଦ୍ଧନ ବାବୁ ପଚାରିଲେ, ''ଏହାକୁ ବୋଧହୁଏ ଆପଣ ଶବର ପକେଟରୁ କାଢ଼ି ନେଇଥିଲେ ?''

''ହଁ ।''

ଗୋବର୍ଦ୍ଧନ ବାବୁ ମନେ ମନେ କହିଲେ, ''ତା ମାନେ ବ୍ୟବହାର କରିବାର ସୁବିଧା ମଧ୍ୟ ପାଇ ନଥିଲେ - ଏଡ଼େ ଆକସ୍ମିକ ଭାବରେ ବାଘ ଆକ୍ରମଣ କରିଥିଲା ।'' ସେଠାରୁ ଆସି ଗୋବର୍ଦ୍ଧନ ବାବୁ ବଂଶୀଲାଲ ବାବୁଙ୍କ ମୋଟର ରହିବା ସ୍ଥାନକୁ ଗଲେ । ଗୋଟିଏ ପ୍ରକାଣ୍ଡ ନାଲି ରଙ୍ଗର ମୋଟର । ଅଳ୍ପଦିନ ହେବ କିଣା ହୋଇଥିବା ସ୍ପଷ୍ଟ ଜଣାପଡ଼େ ।

''ଅଳ୍ପଦିନ ହେଲା ଆପଣ ଏ ମଟର କିଣିଛନ୍ତି ?''

''ହଁ ।''

''ଆପଣ ଆଉ ଗୋଟିଏ ମୋଟର କିଣିବାକୁ ଚାହାନ୍ତି ?''

''ହଁ - କିନ୍ତୁ -''

''ଏଥିପାଇଁ ବାପାଙ୍କ ସହିତ ଆପଣଙ୍କ ମନୋମାଳିନ୍ୟ ହୁଏ ?''

''ନାହିଁତ - କିନ୍ତୁ -''

''ବଂଶୀ ବାବୁ ଆପଣଙ୍କୁ ଏଥି ସକାଶେ ତ୍ୟଜ୍ୟପୁତ୍ର କରିବାକୁ ଚାହୁଁଥିଲେ ?''

''ନାହିଁ ତ ! ତାଙ୍କର ଅନୁମତି ନେଇ ମୁଁ କିଣିଛି । ସେ ତ ନିଜେ କହିଥିଲେ

ଆଉ ଗୋଟିଏ ମୋଟର ନିତାନ୍ତ ଦରକାର – କିନ୍ତୁ ଆପଣ ?''

''ଏ ଚିଠି କିଏ ଲେଖିଛି ?''

ବଂଶୀ ବାବୁଙ୍କ ପୁଅ ଚିଠିଟି ପଢ଼ିଲେ । ଓଡ଼ିଆ ସେ ଭଲ ପଢ଼ି ପାରନ୍ତି ନାହିଁ। କହିବାରୁ ଚିଠିଟି ମୁଁ ପଢ଼ିଦେଲି । ଚିଠିଟି ଶୁଣି ସେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ଗୋବର୍ଦ୍ଧନ ବାବୁ ପୁଣି ପଚାରିବାରୁ ସେ କହିଲେ, ''ବାପା ନିଜେ ଲେଖିଛନ୍ତି, କିନ୍ତୁ ଏହାର ଅର୍ଥ ମୁଁ ବୁଝିପାରୁ ନାହିଁ !''

''ମୁଁ ଠିକ୍ ଅନୁମାନ କରିଥିଲି । ଏ ଚିଠିରେ ଲେଖାଥିବା ଅନ୍ୟ ସମସ୍ତ କଥା ସତ୍ୟ ?''

''ଆଜ୍ଞା ହଁ – କେବଳ – କାହିଁକି ? – ମୁଁ କିଛି ବୁଝିପାରୁ ନାହିଁ ।''

''କାହିଁକି, ଆପଣ ପଚାରୁଛନ୍ତି । ଡାକ୍ତର ବୋଧହୁଏ ତାହାହିଁ ପଚାରୁଛ । ବୁଝି ପାରୁନା, ଗୋଟିଏ 'ଓ୍ୱା' ଦରକାର ।''

''ମାନେ !!''

''ଓ୍ୱାଗନ'ର 'ଓ୍ୱା'' – ଗୋବର୍ଦ୍ଧନ ବାବୁ ରହସ୍ୟମୟ ଭାବରେ ହସି କହିଲେ । ଘଟଣାଟି ଅଧିକ ରହସ୍ୟମୟ ମନେ ହେଲା । ବଂଶୀବାବୁଙ୍କ ପୁଅ ଓ ମୁଁ ଦୁହେଁ ଦୁହିଁଙ୍କୁ ବିସ୍ମିତ ଆଖିରେ ଚାହିଁ ରହିଲୁ । ଗୋବର୍ଦ୍ଧନ ବାବୁ ସେଥିପ୍ରତି ଭ୍ରୂକ୍ଷେପ ନ କରି ମୋଟରଟି ପରୀକ୍ଷା କରିବାକୁ ଲାଗିଲେ । ଖୁବ୍ ମନୋଯୋଗ ସହ ସେ ମଟରରେ ଲାଗିଥିବା ଧୂଳି ପରୀକ୍ଷା କରିବାକୁ ଲାଗିଲେ । ଅନେକକ୍ଷଣ ପରେ ସେ କହିଲେ, ''ଡାକ୍ତର, ମୋଟରରେ ଯେଉଁ ଧୂଳି ଜମିଛି ନିରୀକ୍ଷଣ କଲେ ଦେଖି ପାରିବ ଯେ ବିଭିନ୍ନ ପ୍ରକାରର ଧୂଳି ମୋଟର ଉପରେ ଜମିଛି । ଏଥିରୁ ସ୍ୱଷ୍ଟ ପ୍ରମାଣିତ ହୁଏ ମୋଟରଟି ବହୁତ ଦୂରକୁ ଯାଇଥିଲା । ମୋର ମନେହୁଏ ଆଜି ସକାଳୁ ଏ ମୋଟରଟି ବାହାରକୁ ବାହାରି ନାହିଁ । କାଲି ରାତିରେ ମୋଟର କୁଆଡ଼େ ଯାଇଥିଲା ?'' ବଂଶୀ ବାବୁଙ୍କ ପୁଅ ଉତ୍ତର ଦେଲା । ''ହଁ, ହଠାତ୍ କ'ଣ କାମ ପଡ଼ିବାରୁ ବାପା ମୋଟର ନେଇ ରାତି ଦଶଟା ବେଳେ କୁଆଡ଼େ ଯାଇଥିଲେ । କିନ୍ତୁ – ''

''ଫେରିଲେ କେତେବେଳେ ?''

''ରାତି ପ୍ରାୟ ଦୁଇଟା ବେଳକୁ ।''

''ଫେରିଲାବେଳେ ତାଙ୍କ ସହିତ ଆଉ କିଏ ଥିଲେ ?''

''ଫେରିଲାବେଳେ ମୁଁ ଶୋଇ ପଡ଼ିଥିଲି । ଦେଖି ନାହିଁ ।''

''ଅନ୍ୟ କେହି ଦେଖି ନାହାନ୍ତି ?''

''ନା ।''

''ଦୟାକରି ଜଙ୍ଗଲରେ ଆପଣଙ୍କ ବାପାଙ୍କ ମୃତଦେହ ଯେଉଁଠି ପଡ଼ିଥିଲା ସେ ସ୍ଥାନଟି ଦେଖାଇବେ କି ?''

ଯେଉଁ ଲୋକଟି ଶବ ଦେଖିଥିଲା ସ୍ଥାନୀୟ ଦାରୋଗା ତାହାକୁ ଅଟକାଇ ରଖିଲେ । ତାକୁ ସାଙ୍ଗରେ ନେଇ ଆମେ ଜଙ୍ଗଲ ଭିତରକୁ ଗଲୁ । ଢେଙ୍କାନାଳ ଷ୍ଟେସନରୁ ଲାଇନ୍ କଡ଼େ କଡ଼େ ପ୍ରାୟ ତିନି ମାଇଲ ଯିବା ପରେ ଗୋଟିଏ ଜଙ୍ଗଲ ଭିତରକୁ ଯାଇ ଲୋକଟି ବଂଶୀଲାଲଙ୍କ ମୃତଦେହ ପଡ଼ିଥିବା ସ୍ଥାନ ଦେଖାଇ ଦେଲା । ସ୍ଥାନଟିକୁ କିଛିକ୍ଷଣ ଶୂନ୍ୟ ଦୃଷ୍ଟିରେ ଚାହିଁ ଚାହିଁ ଗୋବର୍ଦ୍ଧନ ବାବୁ ନିକଟସ୍ଥ ଗୋଟିଏ ଗଛତଳେ ଚିନ୍ତା କରିବାକୁ ଧ୍ୟାନସ୍ଥ ହୋଇ ବସିଗଲେ । ଏ ଧ୍ୟାନ କେତେବେଳେ ଯେ ଭାଙ୍ଗିବ ! ପିଠିରେ ଶୀତଦିନର ଟାଣୁଆ ଖରା ଓ ପେଟରେ ସର୍ବଭୁକ୍ ସେତେବେଳକୁ ମୋତେ ଅସ୍ଥିର କରି ପକାଇଲାଣି । ମୁହୂର୍ତ୍ତକେ ଘଟଣାଟି ପ୍ରତି ସମସ୍ତ କୌତୂହଳ ଚାଲିଯାଇ ବିରକ୍ତିରେ ମନ ଭରି ଉଠିଲା । ଭାଗ୍ୟକୁ ଗୋବର୍ଦ୍ଧନ ବାବୁଙ୍କ ଧ୍ୟାନ ଖୁବ୍ ଶୀଘ୍ର ଭାଙ୍ଗିଲା । ସେ ତାଙ୍କ ଆସ୍ଥାନରୁ ହଠାତ୍ ଉଠି ରେଳ ଲାଇନ୍ ଆଡ଼କୁ ଅଗ୍ରସର ହେଲେ । 'ସଙ୍କୋଚନ'ର ପ୍ରତ୍ୟେକ ଲକ୍ଷଣ ସେତେବେଳେ ପରିସ୍ଫୁଟ ହୋଇ ଉଠିଲା । ବଡ଼ ବଡ଼ ଆଖି ଦିଓଟି ଯେପରି ଦୁଇଟି ଜ୍ୱଳନ୍ତ ବିନ୍ଦୁ, କାନ୍ଧ ନଇଁ ପଡ଼ିଛି, କପାଳରେ ଅନେକ କୁଟିଳ ରେଖା, ବାରମ୍ବାର ହସ୍ତଚାଳନ ଦ୍ୱାରା ମୁଣ୍ଡର ବଡ଼ ବଡ଼ ବାଳଗୁଡ଼ିକ ଅବିନ୍ୟସ୍ତ । ରେଳଲାଇନ୍ ନିକଟକୁ ଆସି ନଇଁ ପଡ଼ି ସେ ସ୍ଥାନଟି ସେ ଅନେକକ୍ଷଣ ପରୀକ୍ଷା କଲେ । ବିଷାଦର ଚିହ୍ନ ତାଙ୍କ ମୁହଁରେ ପରିସ୍ଫୁଟ ହୋଇ ଉଠିଲା ।

ରେଳଲାଇନ କଡ଼େ କଡ଼େ ଆଗକୁ ପଛକୁ କିଛି ବାଟ ଅନେକ ଥର ଯିବା ଆସିବା କରିବା ପରେ, ପୁଣି ଥରେ ଆଗକୁ କିଛି ଦୂର ଯାଇ ନଇଁ ପଡ଼ି ଗୋଟିଏ ପଥର ଉଠାଇ ନେଇ ମୋତେ ଦେଖାଇ କହିଲେ, ''ଡାକ୍ତର, ଦେଖ ରକ୍ତର ଚିହ୍ନ !'' ପରିଷ୍କାର ଦେଖିଲି ରକ୍ତର ଚିହ୍ନ – ତାଜା ରକ୍ତ ଜମି ଯାଇଛି ପଥରଟି ଉପରେ । ସଫଳତା ଜନିତ ଆନନ୍ଦର ଯେଉଁ ଉଜ୍ଜ୍ୱଳ ଆଭା ମୁଁ ତାଙ୍କ ମୁହଁରେ ଅନେକ ଥର ଦେଖିଛି ସେହି ଆଭା ଦେଖି ମୁଁ ବୁଝିପାରିଲି ରହସ୍ୟ ଉଦ୍‌ଘାଟନର ଆଉ ବିଶେଷ ବିଳମ୍ବ ନାହିଁ । ଯେଉଁଠାରେ ପଥରଟି ପଡ଼ିଥିଲା ସେ ସ୍ଥାନଟି ତାଙ୍କ କାଚ ଓ ଫିତା ସାହାଯ୍ୟରେ ପୁଣି ଅନେକ କ୍ଷଣଯାଏ ପରୀକ୍ଷା କଲେ । ପରୀକ୍ଷା ଶେଷ କରି ସେ ମନେ ମନେ କହିଲେ, ''ଏଠାରେ ପାଞ୍ଚଜଣଙ୍କର ଗୋଡ଼ର ଚିହ୍ନ ଦେଖିପାରୁଛି । ଏ ଲୋକଗୁଡ଼ିକ ଅନେକ ଥର ଜଙ୍ଗଲ ଆଡୁ ଏଠାକୁ ଏବଂ ଏଠାରୁ ଜଙ୍ଗଲ ଆଡ଼କୁ ଯାଇଛନ୍ତି । ଜଙ୍ଗଲ ଆଡୁ ରେଳ ଲାଇନ୍‌କୁ ଆସିବା ବେଳେ ଖୁବ୍ ଶୀଘ୍ର ଆସିଛନ୍ତି ଏବଂ ଏଠାକୁ ଜଙ୍ଗଲ ଆଡ଼କୁ ଗଲାବେଳେ ସେମାନଙ୍କର ବେଗ କମି ଯାଇଛି । ଗୋଟିଏ ପଦଚିହ୍ନରୁ ଅନ୍ୟ ପଦଚିହ୍ନ ମାପି ଦେଖିଲେ

ଏହା ସ୍ପଷ୍ଟ ଜଣା ପଡ଼େ । ସିଦ୍ଧାନ୍ତ: ରେଳ ଲାଇନରୁ ଜଙ୍ଗଲ ଆଡ଼କୁ ଗଲାବେଳେ ନିଶ୍ଚୟ କୌଣସି ଭାରି ଜିନିଷ ବୋହି ନେଇ ଯାଇଛନ୍ତି ।''

ନଇଁ ପଡ଼ି ମୁଁ ମଧ ଗୋଡ଼ର ଚିହ୍ନ ଦେଖିପାରିଲି । ଗୋଡ଼ର ଚିହ୍ନ ଅନୁସରଣ କରି ସେ ଜଙ୍ଗଲ ଭିତରକୁ ଅନେକ ଦୂର ଗଲେ । କିଛିଦୂର ପରେ ପଥୁରିଆ ଜମି ପଡ଼ିଲା । ଗୋଡ଼ର ଚିହ୍ନ ସେହିଠାରୁ ଅଦୃଶ୍ୟ ହୋଇଛି । ବାଧ ହୋଇ ସେଠାରୁ ପୁଣି ଫେରି ପୁଣି ସେ ଲାଇନ୍ ପାଖକୁ ଆସିଲେ ଏବଂ ଦୁଇ ଲାଇନ୍ ମଝିରେ ପଡ଼ିଥିବା ପଥର ଗୁଡ଼ିକ ନିରୀକ୍ଷଣ କରି କରି ସେ ଅଗ୍ରସର ହେଲେ । ମୁଁ ମଧ ଦେଖିବାକୁ ପାଇଲି ବିନ୍ଦୁ ବିନ୍ଦୁ ରକ୍ତ ଅନେକ ପଥର ଉପରେ ପଡ଼ିଛି । ଅନେକ ଦୂରଯିବା ପରେ ଦେଖିଲି ଗୋଟିଏ ସ୍ଥାନରେ ଅନେକ ରକ୍ତ ପଡ଼ି ଜମିଯାଇଛି । ଏହାପରେ ମଧ ଆମେ କିଛିଦୂର ଅଗ୍ରସର ହେଲୁ କିନ୍ତୁ ଆଉ ରକ୍ତ ଦେଖିବାକୁ ମିଳିଲା ନାହିଁ । ମୁଁ ଡାକ୍ତର, ରକ୍ତ ଦେଖି ମୋର କୌଣସି ବିକାର ହୁଏନାହିଁ । କିନ୍ତୁ ଗୋଟାଏ ନିଛାଟିଆ ଜାଗାରେ ଏତେ ରକ୍ତ ଦେଖି ମୋର ଦେହ ଥରି ଉଠିଲା, ମନରେ ଗୋଟାଏ ଆତଙ୍କ ଜାତ ହେଲା । ମାତ୍ର ଗୋବର୍ଦ୍ଧନ ବାବୁଙ୍କ ମୁହଁଟି ଆନନ୍ଦରେ ଅଧିକ ଉଜ୍ଜ୍ୱଳ ହୋଇ ଉଠିଲା । ଡାକ୍ତର ଯେପରି ତୀକ୍ଷ୍ଣ ଛୁରିକା ଦ୍ୱାରା ଧୀରେ ଧୀରେ ଅସ୍ତ୍ରୋପଚାର କରେ ଏବଂ ଅସ୍ତ୍ରୋପଚାର ଖୁବ୍ ସଫଳ ହେଉଛି ବୁଝିପାରି ଆନନ୍ଦ ପାଇଲେ ମଧ ଅସୀମ ଧୈର୍ଯ୍ୟ ସହ ଧୀରେ ଧୀରେ ଛୁରିକା ଚାଲାଏ, ଗୋବର୍ଦ୍ଧନ ବାବୁ ସେହିପରି ତାଙ୍କର ତୀକ୍ଷ୍ଣ ବୁଦ୍ଧି ଦ୍ୱାରା ରହସ୍ୟଟି ଧୀରେ ଧୀରେ ଭେଦ କରିବାକୁ ଲାଗିଲେ ଏବଂ ସଫଳତାର ଆନନ୍ଦ ପ୍ରକାଶ ପାଇଲେ ମଧ ତାହା ତାଙ୍କର ବୁଦ୍ଧି ଭ୍ରମ ନ କରାଇ ଅସୀମ ଧୈର୍ଯ୍ୟ ଆଣିଦେଲା । ରକ୍ତ ପଡ଼ିଥିବା ସ୍ଥାନଟି ଏବଂ ରେଳ ଲାଇନ୍ କଡ଼ରେ ଥିବା ନିକଟସ୍ଥ ସ୍ଥାନକୁ ସେ ତାଙ୍କର କାଚ ସାହାଯ୍ୟରେ ପରୀକ୍ଷା କଲେ ।

''ଡାକ୍ତର – ଉହୁଁ, ଡାକ୍ତର ସାହେବ ବିଚଳିତ ହୁଅ ନାହିଁ – ଦେଖ, ଏ ସ୍ଥାନକୁ ଏ ଆଡୁ ଦୁଇଜଣ ଏବଂ ସେଆଡୁ ଜଣେ ଆସିଛନ୍ତି ଏବଂ ପୁଣି ସମସ୍ତେ ଯେଉଁ ଆଡୁ ଦୁଇଜଣ ଆସିଥିଲେ ସେହିଆଡ଼େ ଯାଇଅଛନ୍ତି । ଏମାନେ ମଧ ଫେରିଲା ବେଳେ ହୁଏତ ଗୋଟିଏ ଜିନିଷ ବୋହି ଆଣୁଥିଲେ । ଲକ୍ଷ କରିବାର ବିଷୟ ସମସ୍ତଙ୍କ ଗୋଡ଼ରେ ଜୋତା ଅଛି ।''

ରକ୍ତ ଜମିଥିବା ସ୍ଥାନରୁ କିଛି ଦୂର ଆଗକୁ ଯାଇ ସେ ଛିଡ଼ା ହୋଇଗଲେ, ବୋଧହୁଏ ତା' ଆଗକୁ ଆଉ କୌଣସି ଚିହ୍ନ ପାଇଲେ ନାହିଁ । ସେହି ସ୍ଥାନଟି ସେ ପୁଣି ଉତ୍ତମ ରୂପେ ପରୀକ୍ଷା କରି କହିଲେ, ''ଡାକ୍ତର, ଏଠାରେ ଗୋଟିଏ ଇଞ୍ଜିନ୍ ଛିଡ଼ା ହୋଇଥିଲା – ଅନ୍ତତଃ ଅଧଘଣ୍ଟା ପାଇଁ ।'' ମୋର ମଧ ବୁଝିବାକୁ କଷ୍ଟ ହେଲା ନାହିଁ ଯେ

ସେଠାରେ ଗୋଟିଏ ଇଞ୍ଜିନ୍ ଛିଡ଼ା ହୋଇଥିଲା । ପୋଡ଼ା କୋଇଲା, ତେଲ ଆଦି ସେଠି ପଡ଼ିଥିବାର ଦେଖିଲି ।

ସେହିଠାରେ ସେ ନୀରବରେ କିଛିକ୍ଷଣ ଛିଡ଼ା ହୋଇ ଚିନ୍ତା କରିବାକୁ ଲାଗିଲେ । ମୁଣ୍ଡର ଠିକ୍ ଉପରେ ଥିବା ସୂର୍ଯ୍ୟଦେବ ତାଙ୍କର ତେଜ ଦ୍ୱାରା ଗୋବର୍ଦ୍ଧନ ବାବୁଙ୍କର କୌଣସି ବିକାର ଆଣିପାରିଲେ ନାହିଁ । ଅନାଇ ଦେଖିଲି ସଙ୍କୋଚନର ଲକ୍ଷଣ ଗୁଡ଼ିକ ଧୀରେ ଧୀରେ ଚାଲି ଯାଇ 'ପ୍ରସାରଣ'ର ଲକ୍ଷଣ ପ୍ରକାଶ ପାଇବାକୁ ଆରମ୍ଭ କଲାଣି । ଅଭିଜ୍ଞତାରୁ ଜାଣିଲି ରହସ୍ୟ ଆଉ ତାଙ୍କ ନିକଟରେ ରହସ୍ୟ ହୋଇ ନାହିଁ । ଅଭିଜ୍ଞତାରୁ ଏହା ମଧ୍ୟ ଜାଣେ ଯେ କୌଣସି ପ୍ରଶ୍ନ ପଚାରିବାର ତାହା ଉପଯୁକ୍ତ ସମୟ ନୁହଁ ।

ଗୋବର୍ଦ୍ଧନ ବାବୁ ମୋ ଆଡ଼କୁ ବିଜୟୀ ଭଳି ଅନାଇଲେ । ରହସ୍ୟ ସୁନ୍ଦରୀକୁ ସେ ସମ୍ପୂର୍ଣ୍ଣ ରୂପେ ଜୟ କରି ପାରିଛନ୍ତି । ଗୋଟାଏ ଅପୂର୍ବ ଆଭା ତାଙ୍କ ମୁହଁରେ ପ୍ରତିଫଳିତ ହେବାକୁ ଲାଗିଲା । ମୋ ଆଡ଼କୁ ଅନାଇ ସେ କହିଲେ, ''ଡାକ୍ତର, 'ଭିନି ଭିଡି ଭିସି' – ମୁଁ ଆସିଲି ମୁଁ ଦେଖିଲି ମୁଁ ଜୟ କଲି । ଏଠି ଆଉ କିଛି କରିବାର ନାହିଁ । ଚାଲ ଢେଙ୍କାନାଳ ଥାନାକୁ ।''

''ଚାଲନ୍ତୁ । ମୁଁ ଆସିଲି, ମୁଁ କିଛି ନ ଦେଖିଲି, ମୁଁ କ୍ଷୁଧାର୍ତ୍ତ ହେଲି – '' ଏତେବେଳେକେ ଆରାମର ଗୋଟାଏ ନିଃଶ୍ୱାସ ପକାଇ ମୁଁ କହିଲି ।

ଥାନାର ଦାରୋଗାଙ୍କୁ ଗୋବର୍ଦ୍ଧନ ବାବୁ ପାଞ୍ଚଜଣ ପୁଲିସ୍ ସହିତ ତାଙ୍କ ସହିତ ଯିବାକୁ ଅନୁରୋଧ କଲେ । ଦାରୋଗା ବାବୁ ବଡ଼ କାର୍ଯ୍ୟବ୍ୟସ୍ତ ଥିଲେ । ବଂଶୀ ବାବୁଙ୍କ ଅସ୍ୱାଭାବିକ ମୃତ୍ୟୁ ବିଷୟରେ ସେ ଶେଷ ରିପୋର୍ଟ ଲେଖିଥିଲେ । ଗୋବର୍ଦ୍ଧନ ବାବୁ ପ୍ରସ୍ତାବରେ ସେ ଟିକିଏ ବିରକ୍ତ ହୋଇ କହିଲେ, ''ଦରକାର କ'ଣ ? ବାଘକୁ ଫାଶି ଦେବାକୁ ହେବ ?''

''ନା, ବାଘ ଯାହା କରିଛି ତାହା ପାଇଁ ସେ ପୁରସ୍କାର ପାଇବା ଯୋଗ୍ୟ । ମୁଁ ବୁଝି ପାରୁଛି ଆପଣ ବର୍ଷେ ହେବ ଚାକିରି କରୁଛନ୍ତି । ମୋ କହିବା ଅନୁସାରେ ଆପଣ ଯଦି କାର୍ଯ୍ୟ କରନ୍ତି, ତା'ହେଲେ ଶୀଘ୍ର ପଦୋନ୍ନତି ସୁନିଶ୍ଚିତ ।''

'ପଦୋନ୍ନତି' କଥାଟା ବିଜୁଳି ଭଳି କାମ କଲା । ଚାକିରି ଯେ କରେ ସେ ସବୁ କରେ ପଦୋନ୍ନତି ପାଇ– ମାନବିକତା ଦୃଷ୍ଟିରୁ ନୁହଁ । ଏ ଭାବ କେବେ ଯେ ଆମ ମନରୁ ଲୋପ ପାଇବ ! ଦାରୋଗା ବାବୁ ଦ୍ୱିରୁକ୍ତି ନ କରି ପାଞ୍ଚ ଜଣ ପୁଲିସ୍ ନେଇ ଆମ ସହିତ ବାହାରିଲେ । ପ୍ରଥମେ ଆମେ ଗଲୁ ବଂଶୀଲାଲ ଘରକୁ । ବଂଶୀଲାଲଙ୍କ ପୁଅକୁ ଗୋବର୍ଦ୍ଧନ ବାବୁ ତାଙ୍କ କାଠଗୋଲା ଦେଖାଇବାକୁ ଅନୁରୋଧ କରିବାରୁ ସେ ଆମକୁ ସାଙ୍ଗରେ ନେଇ ଜଙ୍ଗଲ ଭିତରକୁ ଗଲେ । ଗଭୀର ଜଙ୍ଗଲ ଭିତରେ ବଂଶୀଲାଲର

କାଠଗୋଲା । ସେଠାରେ ପହଞ୍ଚି ଗୋବର୍ଦ୍ଧନ ବାବୁ ଦାରୋଗାଙ୍କୁ କହିଲେ, ''ଏହି ଗୋଲାଟି ସିଲ୍ କରି ତଲାସ କରନ୍ତୁ । ମୋର ଦୃଢ଼ ବିଶ୍ୱାସ ଏଠାରେ ଆପଣ ଅନେକ ଗୁଡ଼ିକ ସୋରିଷ ତେଲ ଟିଣ ପାଇବେ ।''

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ଗୋଟିଏ ପ୍ରକାଣ୍ଡ ବଡ଼ ଗୋଲା ତଳୁ ମିଳିଲା ଶହେ ଟିଣ ସୋରିଷ ତେଲ । ଦାରୋଗା ବାବୁ ହଠାତ୍ ଅତ୍ୟଧିକ ତତ୍ପର ହୋଇ ଉଠିଲେ । ତାଙ୍କ ଭାବଭଙ୍ଗିରୁ ମନେହେଲା ଯେମିତି ସେ ଏ ଆବିଷ୍କାର କରିଅଛନ୍ତି । ସେଠାକାର ସମସ୍ତଙ୍କୁ ସେ ଗିରଫ୍ କଲେ । ନାନା ଉପାୟ ପ୍ରୟୋଗ କରି ଦାରୋଗା ବାବୁ ଯାହା ଜାଣିଲେ ତାହା ଶୁଣି ଘୃଣାରେ ମୋ ମନ ଭରି ଉଠିଲା । ସେହି ଲୋକମାନେ ହିଁ କହିଲେ ଯେ ଗତ ରାତିରେ ଏହି ସ୍ଥାନରୁ ଶହେଟି ଟିଣରେ ଖାଲି ପାଣି ବନ୍ଦ ହୋଇ ଲାଇନ୍ ପାଖକୁ ବୁହା ହୋଇଥିଲା ଏବଂ ସେଠାରେ ଛିଡ଼ା ହୋଇଥିବା ମାଲଗାଡ଼ିରୁ ଶହେ ଟିଣ ସୋରିଷ ତେଲ ବୁହା ହୋଇ ଏଠାକୁ ଆସିଥିଲା । ଗିରଫ୍ ପର୍ବ ଶେଷ ହେଲା । ସମସ୍ତେ ଥାନାକୁ ଗଲେ । ଦାରୋଗା ବାବୁ ବିଜୟୀ ସେନାପତି ଭଳି ଆଗେ ଆଗେ ଚାଲିଲେ ।

ଦାରୋଗା ବାବୁ ପଚାରିଲେ, ''କିନ୍ତୁ ଆସାମୀ ?''

ଗୋବର୍ଦ୍ଧନ ବାବୁ ହସି କହିଲେ, ''ମାଲ ଆପଣ ପାଇଲେ ସତ, କିନ୍ତୁ ଆସାମୀ ଦୁଇଜଣଙ୍କୁ ଆଉ ଗିରଫ କରି ପାରିବେ ନାହିଁ ।''

''କାହିଁକି ?'' ଦାରୋଗା ବାବୁଙ୍କ ସ୍ୱରରେ ଦୁନିଆର ସବୁ ହତାଶା ଫୁଟି ଉଠିଲା ।

''କାରଣ, ସେମାନଙ୍କୁ ଯମ ଆଗରୁ ଗିରଫ୍ କରି ନେଇଯାଇଛନ୍ତି । ଜଣେ ବାଘ ପେଟରେ ଅନ୍ୟ ଜଣେ ଇଞ୍ଜିନ୍ ପେଟରେ ।

ଘଟଣାଟି ବର୍ତ୍ତମାନ କିଛି କିଛି ବୋଧଗମ୍ୟ ହେଲେ ହେଁ ସମ୍ପୂର୍ଣ୍ଣ ବୁଝିପାରିଲି ନାହିଁ - ସିଦ୍ଧାନ୍ତଟି ବୁଝିପାରିଲେ ମଧ୍ୟ ରହସ୍ୟଟି ପୂର୍ବପରି ରହିଲା । ସେହିଦିନ ଆମେ କଟକ ଫେରି ଆସିଲୁ । ପ୍ରାଣବଲ୍ଲଭ ବାବୁଙ୍କୁ ଦେଖାକରି ଗୋବର୍ଦ୍ଧନ ବାବୁ କହିଲେ, ''ମୁଁ ସବୁ ଅନୁସନ୍ଧାନ କରି ଆସିଲି । ଘଟଣାଟି ହେଉଛି କଳାବଜାର । କେଉଁଠୁ କେଉଁଠାକୁ ସୋରିଷ ତେଲ ଯାଉଥିଲା ତାହା ଆପଣ ଜାଣିବାକୁ କଷ୍ଟ ହେବ ନାହିଁ । କିନ୍ତୁ ଏତିକି ସୁନିଶ୍ଚିତ ଯେ ଢେଙ୍କାନାଳର ବଂଶୀଲାଲ କଟକର ଶ୍ରୀହର୍ଷଲାଲଙ୍କୁ କାଲି ଚିଠି ଲେଖନ୍ତି ଯେ ରାତି ବାରଟା ବେଳେ ଲୁଚିକରି ତାଙ୍କ ମୋଟରରେ ଢେଙ୍କାନାଳ ଯିବାକୁ ଏବଂ ସେଇଠି ଏକ ଓ୍ୱାଗନ୍ ତେଲ ଖଳାସ କରି ରାତା ରାତି କଟକ ଫେରି ଯିବାକୁ । ମୋର ଦୃଢ଼ ଧାରଣା ସେହି ମାଲ ଗାଡ଼ିର ଗାର୍ଡ଼ ଓ ଚାଳକ ଆଦି ସହିତ ଆଗରୁ ସବୁ ଠିକ୍

ହୋଇଥିଲା । ବର୍ତ୍ତମାନ ଏ ସବୁର ପ୍ରମାଣ ସ୍ୱରୂପ ଉପଯୁକ୍ତ କାଗଜ ପତ୍ର ଆପଣ ଯୋଗାଡ଼ କରନ୍ତୁ ।''

ପ୍ରାଣବଲ୍ଲଭ ବାବୁ ଉତ୍କଣ୍ଠାର ସହ ପଚାରିଲେ, ''କାହିଁ ? ସେ ଚିଠି କାହିଁ ?''

ଗୋବର୍ଦ୍ଧନ ବାବୁ ପୂର୍ବବତ୍ ନିର୍ବିକାର ଭାବରେ କହିଲେ, ''ଡାକ୍ତର, ଚିଠିଟି ବର୍ତ୍ତମାନ ଦେଇଦିଅ ।''

ମୁଁ ଅବାକ୍ ହୋଇ କହିଲି, ''ସେ ଚିଠିତ ମୋତେ ଆପଣ ଦେଇ ନାହାନ୍ତି !''

''ଯେଉଁ ଚିଠି ଦେଇଛି ସେଇ ଚିଠିରେ ସବୁ ଅଛି ।''

ପକେଟରୁ ଅଗତ୍ୟା ଚିଠିଖଣ୍ଡ ସନ୍ଦିହାନ ଭାବରେ ବାହାର କରି ପ୍ରାଣବଲ୍ଲଭ ବାବୁଙ୍କୁ ଦେଲି । ଚିଠି ଖଣ୍ଡ ଉପରେ ଆଖି ବୁଲାଇ ନେଇ ପ୍ରାଣବଲ୍ଲଭ ବାବୁ ଅତିଶୟ ବିରକ୍ତି ସହକାରେ ତାକୁ ତଳକୁ ଫୋପାଡ଼ି ଦେଇ କହିଲେ, ''ଗୋବର୍ଦ୍ଧନ ବାବୁ ବୃଥା ରହସ୍ୟ ଭଲ ଲାଗେନା । ମୁଁ ଶ୍ରୀହର୍ଷ ବାବୁଙ୍କ ଅନ୍ତର୍ଦ୍ଧାନ ବ୍ୟାପରରେ ଭାରି ଚିନ୍ତିତ । ଆପଣ ଏ ସମୟରେ – ''

''ନା, ଆପଣଙ୍କୁ ମୁଁ କହୁଛି, ଚିଠିଟି ହିନ୍ଦିରେ ଲେଖା । ବୃଥା ଚିନ୍ତାରେ ସମୟ ନଷ୍ଟ ନ କରି ବା ଶକ୍ତିକ୍ଷୟ ନକରି ଆପଣ ଯଦି କେବଳ ଏହାହିଁ ସପ୍ରମାଣ କରିବାକୁ ଚେଷ୍ଟା କରନ୍ତେ, ତା'ହେଲେ ଆପଣଙ୍କୁ ସମସ୍ତ ପରିଷ୍କାର ହୋଇଥାଆନ୍ତା । ଆଚ୍ଛା, ହଉ ରହସ୍ୟ ନକରି ମୁଁ ସବୁ କହୁଛି । ଆପଣ ନୋଟ କରି ନିଅନ୍ତୁ । ମୋର ଅନୁରୋଧ ଆପଣ ଚିଠିଟି ଭଲ କରି ଥରେ ପଢ଼ନ୍ତୁ..... ହିଁ ପଢ଼ନ୍ତୁ ନା ।''

ବାଧ ହୋଇ ପ୍ରାଣବଲ୍ଲଭ ବାବୁ ପଢ଼ିଲେ ଏବଂ ପଢ଼ା ଶେଷକରି ଗୋଟିଏ ଅବଜ୍ଞା ମିଶ୍ରିତ ପ୍ରଶ୍ନବାଚକ ଦୃଷ୍ଟି ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ନିକ୍ଷେପ କଲେ ।

''କିଛି ବୁଝିଲି ନାହିଁ – ଆପଣ – ''

''ଆଚ୍ଛା ମୁଁ ବୁଝାଇ ଦେଉଛି । 'ଯଦି ସେ ନିତାନ୍ତ ନ ବୁଝେ ତାହା ହେଲେ ମୁଁ ସବୁ ବେଓ୍ୱାରିସ୍ କରି ଦେଇଯିବି, ଏହି ବାକ୍ୟଟି ପ୍ରଥମେ ପରୀକ୍ଷା କରାଯାଉ । ସମସ୍ତ ଚିଠିରେ ଏହି ବାକ୍ୟଟି ମୋତେ ଅଡୁଆ ଲାଗିଲା । ବଂଶୀଲାଲ ବ୍ୟବସାୟୀ – ସେ ନିଜେ ବ୍ୟବସାୟ ଚଳାଏ । ତା'ର ପୁଅକୁ ମଧ ସେ ବ୍ୟବସାୟରେ ଲଗାଇଛି । ଜଣେ ମାରୁଓ୍ୱାଡ଼ି ବ୍ୟବସାୟୀ କିପରି ଆପଣ ଜାଣନ୍ତି । ପୁଅର ଜିଦ୍ ରଖିବାକୁ ଯାଇ ସେ ପନ୍ଦର ହଜାର ଟଙ୍କା ନଷ୍ଟ କରିବା ଅସମ୍ଭବ ନୁହଁ କି ? ମୋର ପ୍ରଥମେ ତେଣୁ ସନ୍ଦେହ ହେଲା ଏ କଥାଟି ମିଥ୍ୟା ଯଦି ବା ସତ ହୁଏ ତା'ହେଲେ ସେ ଶ୍ରୀହର୍ଷଙ୍କୁ ସେ ବିଷୟରେ ଲେଖିବ କାହିଁକି ? ଶ୍ରୀହର୍ଷ ତା'ର ଆତ୍ମୀୟ ନୁହଁ – ତାହା ସହିତ ତା'ର ସମ୍ବନ୍ଧ କେବଳ ବ୍ୟବସାୟ ସୂତ୍ରରେ । ଯଦିବା ଲେଖିବା ସ୍ୱାଭାବିକ ବୋଲି ଧରାଯାଏ ତା'ହେଲେ ପୁଅକୁ

ତ୍ୟାଜ୍ୟ ପୁତ୍ର କରିବା କଥା ଶ୍ରୀହର୍ଷଙ୍କୁ ଜଣାଇ ଲାଭ କ'ଣ - ନିଜର ପୁଅକୁ ଭୟ ଦେଖାଇଲେ ହୁଅନ୍ତା । ଯଦିବା ଏହା ମଧ୍ୟ ସ୍ୱାଭାବିକ ବୋଲି ଧରାଯାଏ ତା'ହେଲେ ସେ ଲେଖିବା ସ୍ୱାଭାବିକ ଯେ 'ମୁଁ ପୁଅକୁ ତ୍ୟାଜ୍ୟ ପୁତ୍ର କରିବି,' 'ସମ୍ପତ୍ତି ବେଓ୍ୱାରିସ୍ କରି ଦେଇଯିବି' ଲେଖିବାର କୌଣସି ଅର୍ଥ ହୁଏ ନାହିଁ । କାରଣ, ସେ ଅନ୍ତେ ତା'ର ପୁଅ ସବୁ ସମ୍ପତ୍ତିର ଅଧିକାରୀ ହେବ - ଯଦି ସେ ତା' କହିବା ଅନୁସାରେ, ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ଦେଇ ନଯାଏ । ଏହିପରି ନାନା କରଣରୁ 'ବେଓ୍ୱାରିସ୍' କଥାଟି ମୋତେ ପ୍ରଥମେ ଅଡୁଆ ଲାଗିଲା । ମୋର ତେଣୁ ସନ୍ଦେହ ହେଲା - ଏହା ସ୍ୱାଭାବିକ - ଯେ ଚିଠିଟିରେ ବୋଧହୁଏ କିଛି ଗୁପ୍ତ ସଙ୍କେତ ଅଛି ଏବଂ 'ବେଓ୍ୱାରିସ୍' ଶବ୍ଦଟିର ଗୋଟିଏ ଅକ୍ଷର ନିଶ୍ଚୟ ଏହି ଗୁପ୍ତ ସଙ୍କେତର ଗୋଟିଏ ଅକ୍ଷର । ବର୍ତ୍ତମାନ ପ୍ରଶ୍ନ ହେଉଛି ସେ ଅକ୍ଷରଟି କେଉଁଠି । ଚିଠିଟି ଓଡ଼ିଆରେ ଲେଖା । ଓଡ଼ିଆ ଶବ୍ଦରେ 'ବେ' 'ରି' ଏବଂ 'ସ' ଯଥେଷ୍ଟ ମିଳିବ କିନ୍ତୁ 'ଓ୍ୱା' ମିଳିବ କ୍ୱଚିତ୍ । ଏହି 'ଓ୍ୱା' ପାଇଁ 'ବେଓ୍ୱାରିସ୍' ଶବ୍ଦଟି ବ୍ୟବହୃତ ହୋଇଛି ନିଶ୍ଚୟ । ଏହିଠାରୁ ମୋର ଅନୁସନ୍ଧାନ ଆରମ୍ଭ କଲି । 'ଓ୍ୱା ଲାଗିଥିବା କେତୋଟି ଶବ୍ଦ ମନେ ପକାଇଲି । ଜଣେ ବ୍ୟବସାୟୀ ଆଉ ଜଣେ ବ୍ୟବସାୟୀକୁ ଗୁପ୍ତ ସଙ୍କେତ ଦେଉଥିବାରୁ ଶବ୍ଦଟି 'ଓ୍ୱାଗନ୍' ହେବା ଖୁବ୍ ସମ୍ଭବ । ଏହି ସନ୍ଦେହ ଠିକ୍ କି ନା ପରୀକ୍ଷା କଲି । 'ଓ୍ୱାଗନ୍'ର 'ଗ' କେଉଁଠି ଖୋଜିଲି । ଚିଠିଟି ପୁଣି ଦେଖନ୍ତୁ । 'ଓ୍ୱା' ପରେ ୧୯ଟି ଅକ୍ଷର ଛାଡ଼ି ଠିକ୍ ୨୦ - ସଂଖ୍ୟକ ଅକ୍ଷରରେ ଆସିଛି 'ଗ' । ପୁଣି 'ଗ' ପରେ ସେହିପରି ୨୦ ସଂଖ୍ୟକ ଅକ୍ଷର ହେଉଛି 'ନ୍' । ଅତଏବ ବର୍ତ୍ତମାନ ବୁଝିଲି ପ୍ରତ୍ୟେକ ୨୦ ସଂଖ୍ୟକ ଅକ୍ଷର ଗୁପ୍ତ ସଙ୍କେତର ଗୋଟିଏ ଗୋଟିଏ ଅକ୍ଷର । ବର୍ତ୍ତମାନ କେବଳ ସମ୍ବୋଧନ 'ଶ୍ରୀହର୍ଷଲାଲଜି' କୁ ବାଦ ଦେଇ ଆପଣ ଏହିପରି ୨୦ - ସଂଖ୍ୟକ ଅକ୍ଷରଗୁଡ଼ିକ ବାହାର କରି ଦେଖିଲେ ଏହି ଚିଠିରୁ ବାହାରିବ ।

''ଆଜ ରାତ ଛିପକେ ଆଇଏ । ମୋଟର ଲାଏଗା । ଏକ ଓ୍ୱାଗନ୍ ମାଲ ।'' ପ୍ରତ୍ୟେକ ଅକ୍ଷରକୁ ୧୯ଟି ଅକ୍ଷର ଦରକାର, ତେଣୁ ଚିଠିଟିରେ ଆପଣ ଅନେକ ବାଜେ କଥା ପାଇବେ ଯାହାକି ଜଣେ ବ୍ୟବସାୟୀ ଆଉ ଜଣେ ବ୍ୟବସାୟୀକୁ ଲେଖିବା ମୋ ମତରେ ସ୍ୱାଭାବିକ ନୁହଁ ।''

ପ୍ରାଣବଲ୍ଲଭ ବାବୁ ଓ ମୁଁ ନଇଁ ପଡ଼ି ଉତ୍କଣ୍ଠାର ସହିତ ଅକ୍ଷର ଗଣି ଗଣି ଗୋଟିଏ ଗୋଟିଏ ଅକ୍ଷର କାଗଜରେ ଲେଖିବାକୁ ଲାଗିଲୁ ଏବଂ ସବୁ ଲେଖିସାରି କେବଳ ଅବାକ୍ ହୋଇ ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇ ରହିଲୁ । ଗୋବର୍ଦ୍ଧନ ବାବୁ କହି ଚାଲିଲେ, ''ଶ୍ରୀହର୍ଷ ବାବୁ ଏହି ମୋଟର ପାଇଁ ତାଙ୍କ ଶୋଇବା ଘରେ ଅସ୍ଥିର ଭାବରେ ଅପେକ୍ଷା କରୁଥିଲେ । କାଳେ ନିଦରେ ଶୋଇ ପଡ଼ିବେ ଏଥିଲାଗି ଘଡ଼ିରେ ଏଲାର୍ମ

ଦେଇ ରଖିଥିଲେ ଠିକ୍ ବାରଟା ବେଳକୁ ମୋଟର ଆସିଲା । ଠିକ୍ ଏଲାର୍ମ ଏହି ସମୟରେ ବାଜି ଉଠିଲା । ଶ୍ରୀହର୍ଷ ବାବୁ ବ୍ୟସ୍ତ ହୋଇ ଏଲାର୍ମ ବନ୍ଦ କରି ଦେଲେ- କାଳେ ଆଉ କେହି ଶୁଣିବେ ଏଇ ଭୟରେ । ମୋଟରରେ ଢେଙ୍କାନାଳ ଆସି ଜଙ୍ଗଲ ଭିତର ଦେଇ ଷ୍ଟେସନରୁ ଦୁଇ ମାଇଲ ଦୂରରେ ଗୋଟିଏ ଜଙ୍ଗଲ ଜାଗାରେ ମାଲଗାଡ଼ି ପାଇଁ ଅପେକ୍ଷା କରି ରହିଲେ । ଏହିଠାରେ ଚାଳକ ମାଲଗାଡ଼ି ଅଟକାଇବ । କଥା ନିଶ୍ଚୟ ଆଗରୁ ସ୍ଥିର ହୋଇଥିଲା । ପୂର୍ବ ନିର୍ଦ୍ଦେଶ ମତେ ମାଲଗାଡ଼ି ଯଥା ସ୍ଥାନରେ ଛିଡ଼ା ହେଲା । ଗୋଟିଏ ଡବାରୁ ତେଲ ଟିଣ ବୁହା ହେବାକୁ ଲାଗିଲା । ବଂଶୀଲାଲ ଜୋତାତଳେ ତେଲ ଚିକିଟା ଲାଗିଥିବାରୁ ମୁଁ ଅନୁମାନ କରୁଛି ଯେ ସେ ଡବା ଭିତରକୁ ଯାଇ ସବୁ ତଦାରଖ କରୁଥିଲା । ତେଲ ଟିଣ ବୁହା ହୋଇ ଯିବା ସାଙ୍ଗେ ସାଙ୍ଗେ ପାଣି ଟିଣ ଆଣି ରଖାହେଲା । କିନ୍ତୁ ହଠାତ୍ କ'ଣ ହେଲା ମୁଁ ଜାଣି ପାରୁ ନାଇଁ । ହଠାତ୍ କାହିଁକି ଶ୍ରୀହର୍ଷଲାଲ ଡବାତଳେ ଲୁଚିଗଲେ ମୁଁ ଜାଣିପାରି ନାହିଁ । ବଂଶୀଲାଲ ମଧ ଜଙ୍ଗଲ ଭିତରକୁ ଦୌଡ଼ିଗଲେ । ଗାଡ଼ି ଚାଲିବାକୁ ଲାଗିଲା ହଠାତ୍ ଏହି ସମୟରେ । କୌଣସି ପୁଲିସ ବା କେତେକ ଜଙ୍ଗଲି ଲୋକଙ୍କୁ ଦେଖି ବୋଧହୁଏ ସବୁ ଗୋଳମାଳ ହୋଇଗଲା । ଯାହାହେଉ ଏ କଥା ସୁନିଶ୍ଚିତ ଯେ ଶ୍ରୀହର୍ଷବାବୁ ଡବାତଳେ ଲୁଚିଥିବା ସମୟରେ ଗାଡ଼ି ଚାଲିବାକୁ ଆରମ୍ଭ କଲା । ଅନେକ ଦୂର ଯାଏ ବିନ୍ଦୁ ବିନ୍ଦୁ ରକ୍ତ ଦୁଇ ଲାଇନ୍ ମଝିରେ ପଡ଼ିଥିବା ଏହାର ସ୍ପଷ୍ଟ ପ୍ରମାଣ ଦିଏ । ଶ୍ରୀହର୍ଷ ବାବୁ ବୋଧହୁଏ ଚିତ୍କାର କରିବାକୁ ଆରମ୍ଭ କଲେ । ଅଥବା ଚାଳକ ସନ୍ଦେହ କରି ଗାଡ଼ି ଅଟକାଇଲା । ଗାର୍ଡ଼ ମଧ ଆସିଲା । ଚାଳକ ସହିତ ଫାୟାର - ମେନ୍ ମଧ ଆସିଲା । ଏମାନଙ୍କର ପଦଚିହ୍ନ ମୁଁ ଦେଖିଛି । ସମସ୍ତେ ଶ୍ରୀହର୍ଷ ବାବୁଙ୍କୁ ଉଦ୍ଧାର କଲେ - କିନ୍ତୁ ସେତେବେଳକୁ ସେ ବୋଧହୁଏ ମୃତ, ଅଥବା ଅର୍ଦ୍ଧମୃତ । ଅନ୍ୟ ଉପାୟ ନ ଦେଖି ସମସ୍ତେ ତାକୁ ଇଞ୍ଜିନର ସର୍ବଭୁକ୍ ଜଠରରେ ନିକ୍ଷେପ କଲେ । ତେଣେ ବଂଶୀଲାଲଙ୍କୁ ଅତର୍କିତ ଭାବରେ ବାଘ ଆକ୍ରମଣ କଲା - ସେ ମଧ ମଲେ । ଢେଙ୍କାନାଳରେ ସବୁ ସେ କଥା ପ୍ରମାଣ କରିଛନ୍ତି । ସେମାନେ ବର୍ତ୍ତମାନ ଗିରଫ୍ ହୋଇଛନ୍ତି । ଡାକ୍ତର ଭାରି କ୍ଷୁଧାର୍ତ୍ତ । ମୁଁ ଆଉ ଡେରି କରିପାରିବି ନାହିଁ । ଏହି ଘଟଣା ବିଷୟରେ ଯଦି ସମସ୍ତ ପ୍ରମାଣ ପୁଙ୍ଖାନୁପୁଙ୍ଖ ରୂପେ ଆପଣ ଜାଣିବାକୁ ଚାହାନ୍ତି ତା'ହେଲେ ଦୟାକରି ମୋ ବସାକୁ ଯିବେ । ନମସ୍କାର ।''

ବସାକୁ ଫେରିଲୁ । ମୁଁ ଏତେଦୂର ଅଭିଭୂତ ହୋଇ ଯାଇଥିଲି ଯେକୌଣସି ପ୍ରଶ୍ନ ପଚାରିବାର ଉପଯୁକ୍ତ ମାନସିକ ଅବସ୍ଥା ମୋର ନଥିଲା । ଚାହା ପାନ କରୁ କରୁ ଗୋବର୍ଦ୍ଧନ ବାବୁ ପଚାରିଲେ, ''ଡାକ୍ତର, କ'ଣ ଭାବୁଛ ।''

''ଭାବୁଛି - ।''

ଭାବୁଥିଲି ଏ 'କଳାବଜାର' ରୂପକ ନୂଆ ବିକୃତିର କାରଣ କ'ଣ । କିନ୍ତୁ ମୋର ଚିନ୍ତା ମୁଁ ଠିକ୍ ସଜାଇ କହିବାକୁ ଅକ୍ଷମ ହେଲି ।

''ଭାବୁଛ ଯା' ମୁଁ ବୁଝିପାରୁଛି । କାରଣ ଆଉ କିଛି ନୁହଁ, ମନୁଷ୍ୟ ଆଜି ସବୁ କ୍ଷେତ୍ରରେ ବିରୋଧ କରୁଛି । ତିନୋଟି ବିଷୟ ସହିତ ମନୁଷ୍ୟର ମୁଖ୍ୟ ସମ୍ପର୍କ । ପ୍ରକୃତି - ସୃଷ୍ଟିର ନିୟମ, ନିଜେ - ନିଜର ଅନ୍ତରର ସ୍ୱାଭାବିକ ସତ୍‌ଭାବ ଏବଂ ଅପର ଲୋକେ । ଏହି ତିନୋଟିଯାକ ସହିତ ଖାପ ଖୁଆଇ ନ ଚାଲି ଆମେ ଏହି ତିନୋଟି ସାମ୍ମୁଖ୍ୟରେ ଯୁଦ୍ଧ କରୁଛୁ । ଶକ୍ତି ଆମକୁ ଦେଉଛି ଦର୍ଶନ - ଓ ଆବେଗ - ବିହୀନ ବିଜ୍ଞାନ, ନିଜର ଲାଳସା ପ୍ରତି ପ୍ରଶ୍ରୟ, ଏବଂ ଧନର ଗର୍ବ । ପଚାରି ପାର ଏପରି କାହିଁକି ହେଲା । ଗୋଟିଏ କଥାରେ କହିଲେ କହିବି ଏ ସବୁର କାରଣ ଯୁଦ୍ଧ । ଜାତାୟତାର ନୀଚ ଆଦର୍ଶ ଯାଇ ଯେଉଁଦିନ ସମସ୍ତ ପୃଥିବୀ ସାଧୁ ଦାର୍ଶନିକମାନଙ୍କ ଚିନ୍ତାଦ୍ୱାରା ପରିଚାଳିତ ହେବ ସେଦିନ ମନୁଷ୍ୟ ଶାନ୍ତି ପାଇବ । କିନ୍ତୁ ବର୍ତ୍ତମାନ ପ୍ରତ୍ୟେକ ଜାତି ବା ଦେଶ ଆପ୍ରାଣ ଚେଷ୍ଟା କରୁଛି ଅନ୍ୟ ଜାତିକୁ ବା ଦେଶକୁ ସବୁଥିରେ ପରାସ୍ତ କରିବାକୁ, ତେଣୁ ବିଜ୍ଞାନର ତାଣ୍ଡବ ଲୀଳା ଚାଲିଛି ।" ଗୋବର୍ଦ୍ଧନ ବାବୁ ନୀରବ ହୋଇ ତଳକୁ ମୁହଁ ପୋତି ବସିଲେ । କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ତାଙ୍କର ବିଛଣା ଚାଦରକୁ ଟିକିଏ ଦୋହଲାଇ ଦେଇ ମିଳାଇ ଗଲା ।

କହିବା ବାହୁଲ୍ୟ ପ୍ରାଣବଲ୍ଲଭ ବାବୁ ଆସି ସବୁ ବିଷୟ ବୁଝି ନେଲେ । ସବୁ ଖବରକାଗଜ ଏହି ଲୋମହର୍ଷଣକାରୀ ଘଟଣା ଏବଂ ରହସ୍ୟ ଭେଦର ଅଦ୍ଭୁତ ବ୍ୟାପାର ପ୍ରକାଶ କଲେ । ପ୍ରାଣବଲ୍ଲଭ ବାବୁ ଏହାପରେ ସରକାରଙ୍କ ଠାରୁ ସମ୍ମାନ ଏବଂ ଜନସାଧାରଣଙ୍କ ଠାରୁ ବହୁ ପ୍ରଶଂସା ପାଇଲେ । ଗୋବର୍ଦ୍ଧନ ବାବୁଙ୍କୁ ସେ ସମ୍ବାଦ ଗୁଡ଼ିକ ପଢ଼ି ଶୁଣାଇ ମୁଁ କ୍ଷୁବ୍ଧ ଭାବରେ ଚାହିଁଲି । ସେ ହସି କହିଲେ, "ନା, ଡାକ୍ତର, ନା । ମୁଁ ତ କହିଛି ବ୍ୟାପକ ଖ୍ୟାତି ମୁଁ ଚାହେଁ ନା । ତା'ଛଡ଼ା -

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ ।

ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନନ୍ୟୋଽଭିଚାକଶୀତି ।।

ସର୍ବଦା ସମ୍ମିଳିତ ଓ ସମାନ ନାମଧାରୀ ଦୁଇଟି ପକ୍ଷୀ ଗୋଟିଏ ଗଛରେ ଅଛନ୍ତି । ଗୋଟିଏ ସୁସ୍ୱାଦୁ ଫଳ ଖାଉଛି, ଅନ୍ୟଟି କେବଳ ଏହା ଦେଖୁଛି ।"

# ସ୍ୱପ୍ନସିଦ୍ଧ

ନଲ୍‌ଠଣଟି ମିଞ୍ଜି ମିଞ୍ଜି ହୋଇ ଟେବୁଲ୍ ଉପରେ ଜଳୁଛି । ଚାରିଆଡ଼ ନିସ୍ତବ୍ଧ । କେବଳ ପଡ଼ିଶା ଘରର ଅଝଟ ପିଲାର ତୁହାଇ ତୁହାଇ କାନ୍ଦଣା ଭାସିଆସୁଛି । ମିମି ଓ ଟୁକୁନା ଶୋଇପଡ଼ିଲେଣି । ମାତ୍ର କିଛିକ୍ଷଣ ଆଗେ ସେମାନଙ୍କର କଳି, ପିଟାପିଟି ବନ୍ଦ ହୋଇଚି । ବୋଉ କାହା ଆଡ଼କୁ ମୁହଁ କରି ଶୋଇବ ଏଥିପାଇଁ ସେମାନଙ୍କ ଭିତରେ ପ୍ରବଳ କଳି ଚାଲିଥିଲା । ପ୍ରୀତି ମଧ୍ୟ ନିଘୋଡ଼ ନିଦରେ ଶୋଇପଡ଼ିଚି । କିନ୍ତୁ ତା'ର ପଙ୍ଖା ବୁଲାଇବା ବନ୍ଦ ହୋଇ ନାହିଁକି ଗୀତଟି ମଧ୍ୟ ବନ୍ଦ ହୋଇନାହିଁ । ସେ ନିଦ୍ରାଜଡ଼ିତ କଣ୍ଠରେ ଗାଇ ଚାଲିଚି, ମିମି ମୋର ସୁନା ଝୁଅ...। କେଉଁ ସପନ ରାଇଜରୁ ଗୋଟିଏ ଅପୂର୍ବ ସୁର ଯେମିତି ଭାସିଆସୁଚି । ଆଉ ତା ସହିତ ମିଶିଚି ପଙ୍ଖାର ଅବିରାମ ଘୋଷା...କେଁ... କେଁ। ପ୍ରୀତିର ସେ ଗୀତିରେ କି ମୋହିନୀ ଶକ୍ତି ଅଛି କେଜାଣି, ଶୁଣିବା ମାତ୍ରେ ମିମି ଟୁକୁନା ପରି ଦୋର୍ଦ୍ଦଣ୍ଡ ପ୍ରତାପୀମାନେ ମଧ୍ୟ ଶୋଇପଡ଼ିଲେ ।

ସୁଦାମ ବାବୁ ଧୀରେ ବିଛଣାରୁ ଉଠି ଶାନ୍ତିର ନିଶ୍ୱାସ ମାରି ଦାଣ୍ଡଘରକୁ ଗଲେ ଲେଖିବାକୁ । ଅତ୍ୟାଧୁନିକ ଲେଖକମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ଅତି ଉଗ୍ର । ଯେତେ ଅଦ୍ଭୁତ ଶବ୍ଦ ସେ ସୃଷ୍ଟି କରୁଚନ୍ତି, ତାଙ୍କର ଭାଷା, ଭାବ ଓ ଉପମା ଯେତେ ଦୁର୍ବୋଧ୍ୟ ହେଉଚି ତାଙ୍କର ସ୍ଥାନ ସେତେ ଦୃଢ଼ ହେଉଚି । କିଛିଦିନ ହେବ ଗୋଟିଏ ଅତି ଜଟିଳ ଓ ବିଜ୍ଞାନସମ୍ମତ ପ୍ରେମମୂଳକ ଗଳ୍ପ ତାଙ୍କର ମନକୁ ଆସୁଚି । ଫ୍ରଏଡ୍, ଆଡ୍‌ଲର୍ ଓ ୟୁଙ୍ଗ୍‌ଙ୍କ ମନସମୀକ୍ଷା, ଡାର୍‌ଉଇନ୍, ବର୍ଗସନ୍ ଓ ମାର୍କସଙ୍କ ବିବର୍ତ୍ତନବାଦ, ପଦାର୍ଥ ବିଜ୍ଞାନର ପରମାଣୁ ତତ୍ତ୍ୱ ଓ ଆଇନ୍‌ଷ୍ଟାଇନଙ୍କ ଆପେକ୍ଷିକବାଦ ସହିତ ଜ୍ୟାମିତିର ତୃତୀୟ ଉପପାଦ୍ୟ ଓ ହିନ୍ଦୁ ଧର୍ମର ଜନ୍ମାନ୍ତରବାଦ ମିଶାଇ ସେ ଗୋଟିଏ ଅପୂର୍ବ ଓ ଅଦ୍ଭୁତ ଉପନ୍ୟାସ ଲେଖିବାର କଳ୍ପନା କରିଚନ୍ତି । କିନ୍ତୁ ଘରେ ଯେଉଁ ଗୋଳମାଳ, ଟୁକୁନା ଓ ମିମି ମଧ୍ୟରେ ଯେଉଁ ଖଣ୍ଡଯୁଦ୍ଧ ଚାଲିଚି ସେଥିରେ ଲେଖିବା ତ ଦୂରର କଥା, ଭାବନା ମଧ୍ୟ ମିଳେଇ ଯାଇଚି । ନଲ୍‌ଠଣଟି ଧୀରେ

ଟେବୁଲ ଉପରେ ଥୋଇ ଟିକିଏ ଡେଜି ଦେଇ କାଗଜ ବାହାର କରି କଲମ ଧରିଛନ୍ତି କି ନା, ମିମି ଧଡ଼ପଡ଼ କରି ଉଠି ବସି ଚିତ୍‌କାର କରି କାନ୍ଦି ଉଠି କହିଲା...ବୋଉ, ଦେଏଖେ ଭାଇକୁ...

କଲମ କାଗଜ ଥୋଇଦେଇ ଥକ୍‌କା ହୋଇ ବସିପଡ଼ି ସୁଦାମ ବାବୁ କୁଳ ଦେବତାଙ୍କ ନାମ ଉଚ୍ଚୈସ୍ୱରେ ଜପିବାକୁ ଲାଗିଲେ, ରଘୁନାଥ, ରଘୁନାଥ ହେ !

ମିମିର ଚିତ୍‌କାର କ୍ରମେ ତୀବ୍ର ହେବାକୁ ଲାଗିଲା । କାଗଜଟା ଟିକିଟିକି କରି ଚିରିଦେଇ, କଲମ ମୁନଟାକୁ ଟେବୁଲ ଉପରେ ଗୋବା ମାରି ଦନ୍ତୁଡା କରିଦେଇ, ନଲ୍‌ଠଣଟାକୁ କଚାଡ଼ି ଚୂର୍ଣ୍ଣବିଚୂର୍ଣ୍ଣ କରି ଘରୁ ସନ୍ନ୍ୟାସୀ ହୋଇ ବାହାରି ଯିବାର ଅଦମ୍ୟ ଉତ୍ତେଜନା ଜାତ ହେଲା । କିନ୍ତୁ ସେ ସବୁ କିଛି ନକରି ହତାଶ ଭାବରେ କୁଳଦେବତାଙ୍କ ନାମ ଉଚ୍ଚାରଣ କରି ସେ ମୁଣ୍ଡରେ ହାତ ଦେଇ ବସି ରହିଲେ ଓ ବାରମ୍ବାର ପ୍ରୀତି ଆଡ଼େ ତରାଟି ଚାହିଁବାକୁ ଲାଗିଲେ ।

ପ୍ରୀତି କିନ୍ତୁ ନିର୍ବିକାର ଭାବରେ ଶୋଇଚି ଓ ଗାଇ ଚାଲିଛି...ମିମି ମୋର ସୁନା ଝିଅ...

ସୁଦାମ ବାବୁ ନିର୍ମମ ଶାନ୍ତ ଭାବରେ ପଚାରିଲେ, ହଇ ହୋ, ମିମି ଗଳା ସାଧୁଛି କି ?

ପ୍ରୀତି ଧଡ଼ପଡ଼ ହୋଇ ଉଠି ବସି ସୁଦାମ ବାବୁଙ୍କ ଆଡ଼େ ଚାହିଁ ଫିକ୍‌କିନା ହସିଦେଇ ମିମିର ମୁହଁ ଚାପି ଧରି କହିଲା, ଚୁପ୍, ଚୁପ୍ ପୋଡ଼ାମୁହିଁ । କିନ୍ତୁ କାହାର ଶକ୍ତି ଅଛି ଯେ ରୋଦନ ରୋଧ କରିବ ।

ଖଟ ଉପରେ ଦୁମ୍‌ଦୁମ୍ ଶବ୍ଦ ହେବାକୁ ଲାଗିଲା । ଟୁକୁନା ମିମିର ଅଭିଯୋଗରେ ଉତ୍ତେଜିତ ହୋଇ ଉଠି ବସି ବାଲିଶ୍ ଉପରେ ବିଧା ମାରୁଛି । ଏଇଟା ତାହାର ପ୍ରାକ୍‌ଯୁଦ୍ଧ ଆସ୍ଫାଳନ । ସୁଦାମ ବୁଝିଲେ ଆଉ ଅଳ୍ପ ସମୟ ପରେ ପ୍ରତ୍ୟକ୍ଷ ଯୁଦ୍ଧ ଆରମ୍ଭ ହୋଇଯିବ । ହେଲା ମଧ୍ୟ ତାହା । ବାଲିଶ୍ ସବୁ ଏଣେତେଣେ ଉଡ଼ିବାକୁ ଲାଗିଲେ । ଟୁକୁନା ବାଲିଶ୍‌ମାନଙ୍କୁ ଇଣ୍ଟାରକନ୍‌ଟିନେନ୍‌ଟାଲ ବାଲିଷ୍ଟିକ୍ ମିଶାଇଲ ରୂପେ ବ୍ୟବହାର କରେ ।

ଏ'ଙ୍କ ଜ୍ୱାଳାରେ ମଣିଷ ଟିକିଏ ଶୋଇ ପାରିଲା ନାହିଁ, ମୁଁ ମରିଯାଆନ୍ତି କି ଭଗବାନ୍ ! ପ୍ରୀତି ଆକ୍ଷେପ କରି କହିଲା ଏବଂ ତା ପରେ ମିମି ଓ ଟୁକୁନା ପିଠିରେ ଦୁଇ ଚାରିଟା ବିକ୍ଷିପ୍ତ ବିଧା ଥୋଇ ଦେଇ ଟୁକୁନା କାନ ଧରି କହିଲା, ହଇରେ ତୁ କାହିଁକି ମିମି ଆଡ଼େ ଗୋଡ଼ ଦେଲୁ ?

– ସେ କାହିଁକି ମୋ ଆଡ଼େ ହାତ ରଖିଲା ? ଟୁକୁନା ପାଲଟା ପ୍ରଶ୍ନ କଲା ତା'ର ସ୍ୱରରେ ।

- ଛିଃ ଛିଃ, ତୁମେ ଦୁଇଟା ଏତେ ହିଁସ୍କୁରିଆ । ଏଇ ଟୁକୁନାଟା ଭାରି ବାଦୁଆ, ସାନ ଭଉଣୀଟା ସାଙ୍ଗରେ ବରାବର ବାଦ ।

ଟୁକୁନାର ଚରିତ୍ର ପଞ୍ଜିକାରେ ଏପରି କଟୁ ମନ୍ତବ୍ୟ ଅନେକ ଥର ଅନ୍ତର୍ଭୁକ୍ତ ହେଲାଣି । ଟୁକୁନାର ସେ ମନ୍ତବ୍ୟ ପ୍ରତି ଭ୍ରୂକ୍ଷେପ ନାହିଁ । ଉପରନ୍ତୁ ସେ ଆହୁରି ରାଗିଯାଇ ମିମି ପଠି ଉପରେ ଦୁମ୍‌ଦାମ୍ ଦି'ଟା ଥୋଇ ଦେଲା । ମିମି ଆଉ କିଛି କରି ନପାରି ପ୍ରୀତିର ବାହୁକୁ କାମୁଡ଼ି ଦେଲା ।

ମରିଗଲି ଲୋ ବୋଉ, ପ୍ରୀତି ବେଦନାରେ ଚିତ୍କାର କରି ଉଠିଲା ।

ମିମି ପେଟରେ ରହିବା ଦିନୁ ଟୁକୁନାର ବାଦ । ସେତେବେଳେ ସେ କଥା କହିବାକୁ ଶିଖି ନାହିଁ । ତାର ହିଂସା ପ୍ରକାଶ ପାଇଚି ସେତେବେଳେ ବଡ଼ ବେଦନାମୟ ଭାବରେ । ମିମିର ଗର୍ଭସ୍ଥିତି ସାଙ୍ଗେ ସାଙ୍ଗେ ଟୁକୁନା ରୋଗରେ ପଡ଼ିଲା । ସଦାବେଳେ ଚିଡ଼ିଚିଡ଼ି ଆଉ ଅଝଟ ପଣିଆ ତାର ଆରମ୍ଭ ହେଲା ଆଉ ବୋଉ କୋଳରେ ରହିବାକୁ ସଦାବେଳେ ଜିଦ୍ ଧରି ବସିଲା । ମିମି ଜନ୍ମ ହେବା ପରେ ସୂତିକା ଗୃହର ଦୁଆର ମୁହଁରେ ଚୁପ୍‌କରି ଛିଡ଼ାହୋଇ ମିମି ଆଡ଼େ ଗୋଟାଏ ଅପ୍ରସନ୍ନ ଦୃଷ୍ଟି ନିକ୍ଷେପ କରି ସେ ଗୋଟିଏ ଘରର କୋଣରେ ଚୁପ୍ କରି ବସି ରହିଲା । ତା' ପରେ ମିମିକୁ ଯେତେବେଳେ ସେ ଦେଖିଚି ସ୍ତନ୍ୟପାନ କରିବାର, ସେତେବେଳେ ତାକୁ ଠେଲି ବୋଉ କୋଳରୁ ତଳେ ପକାଇ ଦେବାକୁ ଚେଷ୍ଟା କରିଚି । ମିମିକୁ ଏକା ପାଇ ସେ ତାକୁ ଚିମୁଟି ଦେଇଚି । ବିଧା ମାରି ପଳାଇ ଯାଇଚି । ସୁଦାମ ବାବୁ ଟୁକୁନାର ଏପରି ବ୍ୟବହାର ଦେଖି ବ୍ୟଥିତ ହୋଇପଡ଼ିଛନ୍ତି ।

ପ୍ରୀତି କହିଲା, ଏ ଦି'ଟା ତଳ ଉପର ଭାଇ ଭଉଣୀ, ସଦାବେଳେ କଜିଆ ଲାଗିବେ ଏମାନେ ।

ଦୁଇଜଣକୁ ଅଲଗା ଅଲଗା ଶୁଆଇ ସେମାନଙ୍କ ମଝିରେ ଶୋଇ କାହାରି ଆଡ଼କୁ ମୁହଁ ନକରି ଚିତ୍‌କରି ଶୋଇ ପ୍ରୀତି ବାଘ ଗପ କହିବାକୁ ଲାଗିଲା...ମିମି, ତୁ ଦେଖିଚୁନା ସେ ବାଘ ! ମା'ଲୋ, ଏଡ଼୍‌ଡ଼େ ବଡ଼ ବଡ଼ କାନ, ଏଡ଼୍‌ଡ଼େ ବଡ଼ ବଡ଼ ଦାନ୍ତ, ଏଡ଼୍‌ଡ଼େ ବଡ଼ ବଡ଼ ଗୋଡ଼, ଏଡ଼୍‌ଡେ ବଡ଼ ବଡ଼ ହାତ...

- ବାଘର ହାତ ଥାଏ କି ? ବୋଉ ତୁ ମିଛ କହୁଚୁ, ଠାକୁର ତୋତେ ମାରିବେ । ଟୁକୁନା ଚେତାଇ ଦେଲା ବୋଉକୁ, ବୋଉର ନିଜ ଉପଦେଶ କଥା, ମିଛ କହିଲେ ଠାକୁର ମାରନ୍ତି ।

- ନାଇଁ, ବାଘର ହାତ ନାହିଁ, ଭୁଲରେ କହିଲି ।

କିନ୍ତୁ ମିମି ତାହା ସ୍ୱୀକାର କରିବାକୁ ନାରାଜ । ସେ କହିଲା, ବୋଉ ବାଘର ହାତ ଅଛି, ନାଇଁ ବୋଉ ? ସେ ଭାତ ଖାଏ କେମିତି ?

ପ୍ରୀତି ଏହାର ଉତ୍ତର ନ ଦେଇ କହି ଚାଲିଲା, ବାଘ ଆସି କହିଲା, ହାଁଉଁ ମାଉଁ ଖାଉଁ, ମଣିଷ ଗନ୍ଧ ପାଉଁ, କିଏ କାନ୍ଦୁଚିରେ ?

ମୁଁ କହିଲି, ନାଇଁ ମିମି କାନ୍ଦୁ ନାହିଁ, ଯା ଯା ତୁ ଯା। ବାଘ କହିଲା, ଆଚ୍ଛା ହଉ ମୁଁ ଯାଉଚି, ଫେଏରେ କାନ୍ଦିଲେ ନେଇଯିବି।

ବାଘର କଥା କହିବା ଶକ୍ତିରେ ଟୁକୁନାର ଆପତ୍ତି ନାହିଁ। ମିମି ଓ ଟୁକୁନା ଦୁହେଁ ଆଖି ବଡ଼ବଡ଼ କରି ଗପ ଶୁଣୁଚନ୍ତି।

ଟୁକୁନା କହିଲା, ବୋଉ, ବାଘ ମିମିକୁ ନେଇଯାଉ, ସେ ମୋର ସିଲଟ ଖଡ଼ି ଖାଇ ଦଉଚି।

ଏ ଅଭିଯୋଗ ସତ୍ୟ ଅଟେ। ମିମି ସିଲଟ ଖଡ଼ିର ଲେଖନୀରୂପେ ବ୍ୟବହାରକୁ ଆଦୌ ପସନ୍ଦ କରି ନାହିଁ। ସେ ଗବେଷଣା କରି ଦେଖିଚି ତାହା ଖାଦ୍ୟ ରୂପେ ଉତ୍କୃଷ୍ଟତର। କିନ୍ତୁ ବୋଉକୁ ଜାପୁଟି ଧରି ସେ କହିଲା, କୁନାକୁ ନଉ।

ତା ପରେ ପ୍ରୀତିର ଦୁଇ କଡ଼ରୁ ଆରମ୍ଭ ହେଲା ପ୍ରତ୍ୟକ୍ଷ ବାକ୍ୟୁଦ୍ଧ ।

– ତୋତେ ନଉ।

– ତୋତେ ନଉ।

ପ୍ରୀତିର ଛାତିକୁ ଯୁଦ୍ଧକ୍ଷେତ୍ର କରି ଦୁହେଁ ତା ଉପରେ ଯୁଦ୍ଧ କରିବାକୁ ଲାଗିଲେ।

ପ୍ରୀତି ଦୁଇଜଣଙ୍କୁ ଦୁଇ ଆଡ଼କୁ ଠେଲିଦେଇ ଉଠି ବସି କହିଲା, ତୁମେ ଦୁହେଁ ଯଦି ଏମିତି ହବ ମୁଁ ଯାଉଚି ଘରୁ ବାହାରି ଯିବି। ମୋତେ ବାଘ ନଉ। ବାଘ ନଉ ମୋତେ !

ମିମି କହିଲା, ମୁଁ ବାଘକୁ ଭାତ ଖାଇବାକୁ ଦେବି, ସେ ନବ ନାହିଁ।

ଟୁକୁନା କହିଲା, ମୁଁ ବାଘକୁ ଗୁଳିକରି ମାରିଦେବି ମୋ ବନ୍ଧୁକରେ।

ପ୍ରୀତି ଖଟରୁ ଓହ୍ଲାଇ ଚାଲିଲା ବାହାରକୁ। ମିମି ଟୁକୁନା ଦୁହେଁ ତାକୁ ଦୁଇପଟୁ ଜାପୁଟି ଧରିଲେ। ପ୍ରୀତି ସେମାନଙ୍କୁ ଠେଲିଦେଇ ବାହାରିଗଲା। ବାହାରି ଗଲା ଏକଦମ ବାହାରକୁ।

ଭାଇ ଭଉଣୀ ଦୁହେଁ ଅମ୍ କିନା ଛିଡ଼ା ହୋଇ ରହିଲେ। ଆଖି ଛଳଛଳ କରି ଦୁହେଁ ଦୁହିଁଙ୍କୁ ଚାହିଁ ରହିଲେ।

କିଛିକ୍ଷଣ ବିରାମ। ସୁଦାମ ବାବୁ ସୁବିଧା ପାଇ ପୁଣି ଲେଖିବାକୁ ଆରମ୍ଭ କଲେ। ତାଙ୍କର ଉପନ୍ୟାସରେ ସେତେବେଳେ ଅତି ଜଟିଳ ପରିସ୍ଥିତି ଉପୁଜିଚି।...ବହୁଯୁଗ ପୂର୍ବରେ ଭା ଦେଶରେ ଯେଉଁ ଆଧ୍ୟାତ୍ମିକ ସ୍ପନ୍ଦନ ହୋଇଥିଲା ସେ ଗୁଡ଼ିକ ବ୍ୟୋମରୁ ସଂଗ୍ରହ କରି ଭା ଦେଶ ସଞ୍ଚୟ କରି ରଖିଚି ଓ ତେଣୁ ସମସ୍ତ ପୃଥିବୀର ସେ ଆଧ୍ୟାତ୍ମିକ

ଗୁରୁ ହୋଇଚି । ବର୍ତ୍ତମାନ ତା ଦେଶ ଅନ୍ୟ ଦେଶକୁ ସେ ସ୍ପନ୍ଦନଗୁଡ଼ିକ ପଠାଉଚି । ଏଣେ କଣ ହୋଇଚି ନା କା ଦେଶ ପୃଥିବୀରେ ପ୍ରଧାନ ଗଣତନ୍ତ୍ର ଉପାସକ ହୋଇଛି, ପୃଥିବୀର ପ୍ରତ୍ୟେକ ମନୁଷ୍ୟର ଚିନ୍ତା ଓ ମତ ପ୍ରକାଶର ସଂପୂର୍ଣ୍ଣ ସ୍ୱାଧୀନତାକୁ ସେ ଯେପରି ସମ୍ମାନ ଦେଇଚି ଆଉ କୌଣସି ଦେଶ ସେପରି କରିପାରିନାହିଁ । ଏକ ଲହମାରେ ପୃଥିବୀର ଜନସଂଖ୍ୟାର ୨୦ଗୁଣ ଲୋକ ମାରି ଦେବାର ଶକ୍ତି ସଞ୍ଚୟ କରି ରଖି ପୃଥିବୀର ବିଭିନ୍ନ ଦେଶକୁ ସେ ଗଣତନ୍ତ୍ର ସ୍ପନ୍ଦନ ପଠାଉଚି । ତେଣେ ପୁଣି କଅଣ ହୋଇଛି ନା ସା ଦେଶ ହୋଇଚି ପୃଥିବୀର ଶ୍ରେଷ୍ଠ ଜନମଙ୍ଗଳକାରକ ଦେଶ । ଶୋଷିତମାନଙ୍କର ଏକମାତ୍ର ଉଦ୍ଧାରକ । ଅର୍ଦ୍ଧ ଲହମାରେ ପୃଥିବୀର ଜନସଂଖ୍ୟା ୪୦ ଗୁଣ ଲୋକ ମାରିଦେବାର ଶକ୍ତି ଆହରଣ କରିବାରେ ଲାଗିପଡ଼ି ଚାରିଆଡ଼େ ସେ ଜନମଙ୍ଗଳ ସ୍ପନ୍ଦନ ପଠାଉଚି । ଏହି ଶକ୍ତିମାନ ସ୍ପନ୍ଦନଗୁଡ଼ିକ ସ୍ୱ ସ୍ୱ ଗତିପଥରେ ଯାଉଯାଉ ବ୍ୟୋମରେ ଏକତ୍ର ମିଳିତ ହୋଇ ସେଠାରେ ସୃଷ୍ଟି ହୋଇଚି ଏକ ପ୍ରଚଣ୍ଡ ସ୍ପନ୍ଦନାବର୍ତ୍ତ । ଏପରି ସମୟରେ ନାୟିକା କାର୍‌ବୋଲିକା ଡ/ ¯୧/ ୨ ଫଁ ଚନ୍ଦ୍ରାଲୋକରେ ଥିବା ତାର ପୂର୍ବଜନ୍ମର ପ୍ରେମିକ ପାଖକୁ ପଠାଉଚି ୨ ଆଙ୍ଗସ୍‌ଟ୍ରାମ୍ ଇଉନିଟ୍‌ର ଇଲେକ୍‌ଟ୍ରୋମାଗ୍‌ନେଟୀକୃତ ପ୍ରେମ । ଇୟାଡ଼େ ତାହାର ଦୁଇ ଜନ୍ମ ପୂର୍ବର ସ୍ୱାମୀ ଠିକ୍ ସେତିକିବେଳେ ୪ଗ୍ରାମ ଦ୍ରବୀଭୂତ ପ୍ରେମ ପଠାଉଥିଲେ...

ଏତିକିବେଳେ ସୁଦାମବାବୁ ଚକିତେ ଶୁଣିଲେ ସେ କ୍ରନ୍ଦନଧ୍ୱନି....ବୋଉ ମ ବୋଉ । ମିମି ଓ ଟୁକୁନାର ଐକକ୍ରନ୍ଦନ ।

କଲମ ଧୀରେ ଥୋଇଦେଇ ସୁଦାମ ବାବୁ ମନେ ମନେ କହିଲେ, ଧେତ୍, ଏ ଘରେ କେହି କେବେ ଲେଖକ ହେଲେଣି ନା ହେବେ ! ! ସ୍ତ୍ରୀ ସିନା ଟିକିଏ ପ୍ରେରଣା ଦିଅନ୍ତା । ସେ କଥା ତ ଦୂରେ ଥାଉ, ଯେତେ ରକମର ବାଧା ସୃଷ୍ଟି କରୁଚି । ପ୍ରେମକରି ବାହା ହବାକୁ ଆଶା କରିଥିଲି ଯେ ସେ ତ ହେଲା ନାହିଁ । ବୟସ ଗଡ଼ାଇ ବାହା ହେଲି ଯେ ଜୁଟିଲା ଗୋଟାଏ ବେରସିକା, ସଦାବେଳେ ଘରକାମ ବା ପିଲାଛୁଆ ନେଇ ବ୍ୟସ୍ତ, ମୋତେ ପ୍ରେରଣା ଦେବାକୁ ବେଳ କାହିଁ ତାର ! ! ଶ୍ୟେଃ, ଏମିତିରେ କେହି କେବେ ଲେଖକ ହେଲେଣି ? ଆଉ ପିଲାଗୁଡ଼ାକ ହୋଇଚନ୍ତି ବି..ଧେତ୍ ।

ପିଲା ଯୋଡ଼ିକଙ୍କର କ୍ରନ୍ଦନ କ୍ରମେ ତୀବ୍ରତର ହେବାକୁ ଲାଗିଲା । କଲମ ରଖିଦେଇ ସୁଦାମ ବାବୁ ଡାକିଲେ, ହୋଇ ହୋ ଶୁଣୁଛ ।

ପ୍ରୀତି ଅନ୍ଧାର କଣରୁ ବାହାରି ପଡ଼ି ହସି କହିଲା, ମୁଁ ଆଉ କଅଣ କରିବି କୁହ ?

ଯଦି ଜଣେ ଅଦ୍ଭୁତ ଲେଖକର ସ୍ତ୍ରୀ ଭାବରେ ମର୍ଯ୍ୟାଦା ପାଇବାକୁ ତୁମେ ଚାହ, ତେବେ ଦୟାକରି ଟିକିଏ ଚୁପ କରାଅ ସେଗୁଡ଼ାଙ୍କୁ । ସୁଦାମ ବାବୁ ହାତଯୋଡ଼ି କହିଲେ ।

ପ୍ରୀତି ଖିଲିଖିଲି ହସି ମିମି ଓ ଟୁକୁନାକୁ କୋଡ଼କୁ ଆଉଜାଇ ନେଇ ଗାଇବାକୁ ଲାଗିଲେ...

ତୁମକୁ ଛାଡ଼ି ମୁଁ କେଉଁଠି ଯିବିରେ, ମୋ ମିମି କୁନା...

ତୁମରିପାଇଁ ତ ମରିବି ନାହିଁରେ ମୋ ମିମି କୁନା...

ମଲେ ଭୂତ ହୋଇ ତୁମଠି ଥିବିରେ, ମୋ ମିମି କୁନା...

- ଦୟାକରି ତୁମର କାବ୍ୟସ୍ରୋତ ଟିକିଏ ବନ୍ଦ କରିବ କି ? ତାଙ୍କର ବିନୟରେ ଚରମ ବିରକ୍ତି ପରିସ୍ଫୁଟ ହୋଇ ଉଠିଲା।

- ଏ କବିତା ସୁଅ କିଏ ରୋଧିବରେ ମୋ ମିମି କୁନା...ପ୍ରୀତି ସେ ବିନୟ ପ୍ରତି ଭ୍ରୂକ୍ଷେପ ନ'କରି ଗାଇ ଚାଲିଲା।

ସୁଦାମ ବାବୁ ଅଧିକ ବିରକ୍ତ ହୋଇ କହିଲେ, ଧେତ୍, ଏ ଘରେ ଆଉ ରହିବି ନାହିଁ। ଦୁମ୍ କରି ଚୌକି କଚାଡ଼ି ସୁଦାମ ବାବୁ ଉଠି ଛିଡ଼ା ହେଲେ ବାହାରିଯିବାକୁ।

- ମିମି କୁନା ଛାଡ଼ି କେଉଁଠି ଯିବ ହୋ ମୋ ଧନମଣି...

- କଅଣ କହିଲ କଅଣ କହିଲ ? ? ଯାଉ ଯାଉ ଥମକି ଛିଡ଼ା ହୋଇ ଉଦ୍‌ଗ୍ରୀବ ଭାବରେ ସୁଦାମ ବାବୁ ପଚାରିଲେ। "ମୋ ଧନ-ମଣି" କଥାଟାକୁ ଦୋହରାଇ ଦୋହରାଇ ମନେ ମନେ କହିବାକୁ ଲାଗିଲେ।

- ଯେଣେ ଯିବ ଏଣେ ଆଣିବେ ଟାଣି ହୋ, ମୋ ଧନମଣି...

(ଆଉ) ଧନମଣି ଏଠି ବନ୍ଧା ହୋଏଙ୍ଗା ହୋ, ମୋ ଧନମଣି...

ଶେଷ ପଦରେ ସୁଦାମ ବାବୁ ହଠାତ୍ ଉତ୍‌କ୍ଷିପ୍ତ ହୋଇ କହିଲେ; ବନ୍ଧା ହୋଏଙ୍ଗା ? ଦେଖେଙ୍ଗା, କେମିତି ବନ୍ଧା ହୋଏଙ୍ଗା। କହି ସେ ଚୌକି ଉପରେ ଦୁମ୍‌କରି ବସିପଡ଼ିଲେ ଦୃଢ଼ଭାବରେ।

ପ୍ରୀତି ଅପାଙ୍ଗ ଦୃଷ୍ଟିରେ ସୁଦାମ ବାବୁଙ୍କ ଆଡ଼େ ଚାହିଁ ମୁରୁକି ହସି ମିମି ଓ ଟୁକୁନାକୁ  କୋଡ଼ରେ ଜାକି ଶୋଇପଡ଼ିଲା।

ମିମି କହିଲା, ବୋଉ, ଘଟୁ ଘର କଥା କହ।

ପ୍ରୀତି ପୁଣି ସୁର କରି ଗାଇବାକୁ ଲାଗିଲା, ଚାନ୍ଦମାମୁ ହୋଇ ଆଲୁଅ କର, ମିମି ଯିବ ହୋ ଶାଶୂଘର, ସାଙ୍ଗରେ ଯିବ କିଏ ?...ଆଲୋ ମିମି ତୋ ସାଙ୍ଗରେ ଶାଶୂଘର କିଏ ଯିବ ?

ମିମି ନିର୍ବିକାର ଭାବରେ କହିଲା, ଟୁକୁନା ଭାଇ।

- ନାଇଁ ନାଇଁ, ମୁଁ ତା ସାଙ୍ଗରେ ଯିବି ନାହିଁ। ଟୁକୁନା ଘୋର ଆପତ୍ତି ଶୁଣାଇ ଉଠି ବସିଲା।

- ବୋଉ ମ ବୋଉ, ହଁ ଯିବ ଭାଇ, ତୁ କହ।

ମିମିର କରୁଣ ମିନତିରେ ପ୍ରୀତି ତାକୁ ଚୁମ୍ବନ ଦେଇ କହିଲା, ହଁ ନିଶ୍ଚେ ଯିବ। ସାଙ୍ଗରେ ଯିବ କିଏ ? ତା ପରେ ପୁଣି ଗାଇବାକୁ ଲାଗିଲା...

ସାଙ୍ଗରେ ଯିବ ଟୁକୁନା ଭାଇ ଛତାବାଡ଼ି ଦେ...

ଗୋଟିଏ ଅପୂର୍ବ ଚଳଚ୍ଚିତ୍ର ମାନସପର୍ଦ୍ଦାରେ ପ୍ରତିଫଳନ ହେଲା ସେ ଗୀତ ଦ୍ୱାରା। ବହୁଦିନର ଗୋଟିଏ କରୁଣ କାନ୍ଦଣା ତାଙ୍କର ମନେ ପଡ଼ିଲା...

....ଗାଁ ଝିଅ ପଦ୍ମା, ବାହା ପରେ ବାପଘରୁ ବିଦାୟ ନେଉଚି। ପିଲାଟି ବେଳୁ ସେ ବାପ ହଜାଇଚି, ଅଛି କେବଳ ଭାଇ ବକଟେ। ଆଜି ଚିରଦିନ ପାଇଁ ବାପଘରୁ ବିଦାୟ ନେବାବେଳେ ତାର ସମସ୍ତଙ୍କ କଥା ମନେପଡ଼ି କୋହ ଉଠୁଚି। ଶକୁନ୍ତଳା ଆଶ୍ରମରୁ ବିଦାୟ ନେବାବେଳେ ବୃକ୍ଷଲତାମାନଙ୍କଠାରୁ ମଧ୍ୟ କାନ୍ଦି କାନ୍ଦି ବିଦାୟ ନେଇଥିଲେ। ପଦ୍ମା ଜଣ ଜଣକୁ ଧରି ବାହୁନି ବିଦାୟ ନେଇ ଯେତେବେଳେ ସାନଭାଇ ପାଖରେ ପହଞ୍ଚିଲା ସେତେବେଳେ ତାର କୋହ ଆଉ ସମ୍ଭାଳି ହେଲାନାହିଁ। ଭାଇକୁ ଧରି ପଦ୍ମା ବାହୁନିଲା...

ଉସୁନା ଧାନ କି ଗଜା ହୋଇବ, ମୋ ସୁନା ଭାଇ
ସତେ ଛତାବାଡ଼ି ଡେରି ଥୋଇବ, ମୋ ସୁନା ଭାଇ।

ଭଉଣୀ ଶାଶୂଘରେ। କେବଠୁଁ ବାପଘର ଛାଡ଼ି ଆସିଚି କାହିଁ ଦୂରେ। ବିଲ ଭିତରେ ଚାଲି ଚାଲି ତିନି କୋଶ ଯିବା ପରେ ପଡ଼େ ବୁଢ଼ା ନଈ। ତତଲା ବାଲିରେ ଡେଇଁ ଡେଇଁ ନଈ ପାର ହେବା ପରେ ବାଶୁଳେଈ ପାଟ। ସେ ପାଟ ଭିତରେ ରାସ୍ତାଟା ଲମ୍ବି ଯାଇଚି ଯେ କାହିଁ କେଉଁଠି, ଶେଷ ଦିଶୁନାହିଁ। ରାସ୍ତାକଡ଼ରେ ଗୋଟିଏ ଘାସ ଗଛ ବି ନାହିଁ। ସୂର୍ଯ୍ୟଦେବତା ଯେତେବେଳେ ଠିକ୍ ମୁଣ୍ଡ ଉପରେ ସେତେବେଳେ ପୁଣି ପାରିହେବ ଖରସୁଆ ନଈ। ସାରା ବର୍ଷଯାକ ସେଥିରେ ଡଙ୍ଗା ପଡିଥାଏ। କଳାମଚମଚ ପାଣି। ମଣିଷଖିଆ ନଈ ଏଇଟା। ଖରସୁଆ ପାରି ହୋଇ ପୁଣି ବିଲ। ବିଲ ପାର ହେଲେ ହରିପୁର, ଭଉଣୀର ଶାଶୂଘର ଗାଁ। ଭଉଣୀ ସେଇ ଯେ ବାହା ହୋଇ ଆସିଚି ବାପଘର ଆଡ଼କୁ ପିଠି କରି, ଆଉ ମୁହଁ ବୁଲାଇ ନାହିଁ। କିଏ ନବ ? ଭାଇ ତ ବକଟେ। ଭାଇ କେବେ ବଡ଼ ହବ ସିନା ନବ। ...ଭାଇ ବଡ଼ ହୋଇଚି, କଲିକତାରେ ଝୋଟ କଳରେ ଚାକିରି କରିଚି। ଛୁଟି ନେଇ ଗାଁକୁ ଫେରିଚି କେତେ ଦରବ ନେଇ। ଗାଁରେ ପହଞ୍ଚିବା ପରଦିନ ଛତା ବାଡ଼ି କାଖରେ ଜାକି ଭାଇ ଛୁଟିଛି ହରିପୁର, ଭଉଣୀକୁ ଆଣିବାକୁ। ଖରସୁଆ କୂଳରେ ଭାଇ ଯେତେବେଳେ ପହଞ୍ଚିଲା, ସୂର୍ଯ୍ୟ ସେତେବେଳେ ଠିକ୍ ମୁଣ୍ଡ ଉପରେ। ନଈ କୂଳରେ ଥକ୍କା ହୋଇ ବସିପଡ଼ି ଆଞ୍ଜୁଳା ଆଞ୍ଜୁଳା ପାଣି ପିଇ ମୁହଁ ହାତ

ଧୋଇ ଡାକ ଛାଡ଼ିଲା, ଏ ସତୁରା ଭାଇ ଏ...ଏ...ହେ, ବେଇଗେ ଡଙ୍ଗା ଆଣ୍। ନାଉରି ସେ ପାଖରୁ ଝିଙ୍କାରି କହିଲା, ରହଃ, ଆସିଲା ମୋର ଦେଖେ ନାଇକି ନାଟ ସାଇବ।

ନଈ ପାର ହୋଇ ଆମ୍ବ ତୋଟାରେ ବସିପଡ଼ି ଅଣ୍ଟାରୁ କଳିକତି ଗାମୁଛା ଖୋଲି ବିଞ୍ଚି ହୋଇ ଝାଳ ପୋଛି ଭାଇ ଖୋଲିଲା ଥଳିଆ ଦେଖିବାକୁ। ଆରିସା ପିଠା, କାକରା, ପିଉପାଡି ଶାଢ଼ି, ଅଳତା, ସିନ୍ଦୂର; ବନାରସି କାଚ, ଦର୍ପଣି ଶଙ୍ଖା, ଅତର, ସାବୁନ୍, ଓ ହାଲ୍ ଫେସନର ବ୍ଲାଉସ୍ ଗୋଟି ଗାଟି କରି ବାହାର କରି ସପ୍ରଶଂସ ଦୃଷ୍ଟିରେ ଚାହିଁ ପୁଣି ସେଗୁଡ଼ିକୁ ଥଳିଆରେ ସଜାଡ଼ି ରଖିଲା। ଆମ୍ବ ପେନ୍ଥାଏ ଥଳିଆରେ ରଖି ଭାଇ ପୁଣି ଚାଲିଲା। ଏଥର ଆଉ ବେଶି ବାଟ ନାହିଁ। ବିଲ ଆରପଟେ ହେଇ ଯେଉଁ ମନ୍ଦିର ଚୂଡ଼ା ଦିଶୁଚି, ତାରି ପାଖରେ ଭଉଣୀ ଘର। ବେଗେ ବେଗେ ଚାଲି ଉଦୁବୁଦିଆ ଖରାବେଳେ ଭାଇ ଭଉଣୀର ଶାଶୂଘର ଦାଣ୍ଡ ପିଣ୍ଡାରେ ଛତାବାଡ଼ି ଡେରି ଥୋଇଦେଇ ଡାକିଲା, ଅପା। ଧୀରେ ଗୋଟିଏ ଡାକ, କ୍ଷୁଦ୍ର ଗୋଟିଏ ଶବ୍ଦ। ଶାଶୂକୁ ପଙ୍ଖା କରୁ କରୁ ଥମ୍‌କିନା ଭଉଣୀର ହାତ ରହିଗଲା, ଦମ୍‌କିନା ଛାତି ହେଲା। ଉତ୍କର୍ଣ୍ଣ ହୋଇ ଚାହିଁ ମନେ ମନେ ପଚାରିଲା, ଏ ମୋ ଭାଇ ଗଳା ନା ? ହଁ ଲୋ ମୋ ଭାଇ ତ ! ଶାଶୂର ଭୟ ଭୁଲିଯାଇ ନସରପସର ହୋଇ ଲୁଗା ସଜାଡୁ ସଜାଡୁ ଦଉଡ଼ି ଆସି ଦାଣ୍ଡଦୁଆର ଖୋଲିଦେଇ ଚାହିଁରହିଲା ଭାଇ ଆଡ଼େ। ଦୁହିଁଙ୍କ ମୁହଁରେ କଥା, ନାହିଁ, ଦୁହିଁଙ୍କ ଆଖିରୁ ପାଣି ଗଡ଼ିଯାଉଚି...

ଟୁକୁନା କିନ୍ତୁ ମସ୍ତକ ସବେଗେ ସଞ୍ଚାଳନ କରି କହିଲା, ନାଇ ନାଇ, ମୁଁ ମିମି ସାଙ୍ଗରେ ତା ଶାଶୂଘର ଯିବି ନାହିଁ।

ମିମି ଧୀରେ ବୋଉର କାନେକାନେ କହିଲା, ହଁ ବୋଉ, ଭାଇ ଯିବ।

ଟୁକୁନା ଦୁମ୍‌କରି ମିମି ପିଠିରେ ଗୋଟିଏ ବିଧା ଥୋଇଦେଲା। ମିମି ତୀବ୍ର ସ୍ୱରରେ କାନ୍ଦୁ କାନ୍ଦୁ କହିଲା, ହଁ ଭାଇ ଯିବ।

ସୁଦାମ ବାବୁ ସବୁ ଶୁଣି ପାଖରେ ଛିଡ଼ା ହେଲେ। ଗୋଟାଏ ପରୀକ୍ଷା କରିବାକୁ ତାଙ୍କର ଅଦମ୍ୟ କୁତୂହଳ ଜାତ ହେଲା। ପିଲାଦୁଇଟା ତ ବୋଉକୁ ବାଘ ନେଇଗଲା ବୋଲି କାନ୍ଦି ଲହୁଲୁହାଣ ହେଲେ, ଆଚ୍ଛା, ମୋ ବେଳକୁ କଅଣ କରୁଛନ୍ତି ଦେଖେ।

ସେ ମିମି ଓ ଟୁକୁନାକୁ କତିକି ନେଇ କହିଲେ, ଏଇ, ଜାଣିଚନା ? ତୁମେ ଦୁହେଁ ଯଦି ଏମିତି ହବ, ତେବେ ମୁଁ ବାହାରି ଯାଉଚି, ମୋତେ ବାଘ ନଉ।...ଯିବି ?

ମିମି ଓ ଟୁକୁନା ନୀରବ, ଦୃଷ୍ଟି ତାଙ୍କର ବୋଉ ଆଡ଼େ।

– କଅଣ କହୁଚ ? ଯିବି ? ହେଇ ଗଲି। ଯିବି ? ସୁଦାମ ବାବୁ ବ୍ୟାକୁଳ ଭାବରେ ପଚାରିବାକୁ ଲାଗିଲେ। ପ୍ରୀତି ମୁରୁକି ମୁରୁକି ହସୁଥାଏ।

– ଯିବି ? ପୁଣି ସେହି କରୁଣ ପ୍ରଶ୍ନ।

ମିମି ନୀରବ ରହିଲା ।

ଟୁକୁନା ମୁଣ୍ଡ ଟୁଙ୍ଗାରି କହିଲା, ହଁ ।

ଦୀର୍ଘନିଶ୍ୱାସ ପକାଇ ସୁଦାମ ବାବୁ କହିଲେ, ବାପାମାନଙ୍କର ଜୀବନ ଭାରି କଷ୍ଟକର, ଦିହର ରକ୍ତ ପାଣି କରି ପିଲାଙ୍କୁ ପାଳିବେ, ବୁଢ଼ା ହେଲେ ଦୁର୍ ଦୁର୍ କରି ପିଲାଏ ଘଉଡ଼ାଇ ଦେବେ । ସବୁ ମାୟା, ସବୁ ମିଛ । ଆଖି ତାଙ୍କର ଛଳଛଳ ହୋଇଗଲା । ସେ ଉଠି ଯାଉଥିଲେ ।

ପ୍ରୀତି ତାଙ୍କ ଲୁଗା କାନି ଧରି ଅଟକାଇ କହିଲା, ତୁମେ ପିଲାଙ୍କ କଥାରେ ଏମିତି ହଉଚନା ! ମାଇପଙ୍କ ଜୀବନ ଭଳି ଆଉ ହୀନିମାନିଆ ଜୀବନ ଅଛି ? ତୁମେମାନେ ତ ସନ୍ନ୍ୟାସୀ । ଏ ସବୁ ପୁରୁଷର, ଅଥଚ କୌଣସିଥିରେ ପୁରୁଷର ଲୋଭ ନାହିଁ । ଆଉ ମାଇପି ? ଛି, ଘରର କେହି ନୁହେଁ, ନା ପିଢ଼ାରେ କୁଆ ବସାଇ ଦିଏନା, ଯେତେ ଛୋଟ କଥା ଏ ମାଇପିଙ୍କର ।

– ଛାଡ଼... ଛାଡ଼ ।

ସୁଦାମ ବାବୁ ଉଠି ଚାଲିଗଲେ ପୁଣି ଲେଖିବାକୁ । ମନଟା ତାଙ୍କର ବେଦନାରେ ପରିପୂର୍ଣ୍ଣ । ସେ ଆକାଶକୁ ଚାହିଁ ବସି ରହିଲେ ।

ପ୍ରୀତି ନିଘୋଡ଼ ନିଦରେ ଶୋଇପଡ଼ିଲାଣି । ମିମି ଓ ଟୁକୁନା ଦୁଇପଟରୁ ଜାବୁଡ଼ି ଧରି ନିଦରେ ଶୋଇଛନ୍ତି । ମିମିର ପାତଳା ଓଠ ଦିଓଟି ମଝିରେ ମଝିରେ ଥରି ଉଠୁଚି । ଟୁକୁନାର ଓଠରେ ମଝିରେ ମଝିରେ ହସ ଖେଳି ଯାଉଚି । ଚାରିଆଡ଼ ପୁଣି ନୀରବ ନିସ୍ତବ୍ଧ । ପଡ଼ିଶା ଘରର ପିଲାଟିର ଦେହ ଭଲ ନାହିଁ, ତାର କାନ୍ଦଣା ଏ ପର୍ଯ୍ୟନ୍ତ ଥମି ନାହିଁ ।

ଢଂ...ଢଂ । ଜେଲ୍‌ଖାନାର ଘଣ୍ଟା ବାଜି ଉଠିଲା ।

ସୁଦାମ ବାବୁଙ୍କ ଆଖିରେ ନିଦ ନାହିଁ । ସେ ଭାବୁଚନ୍ତି ମିମି ଓ ଟୁକୁନା କଥା । ଦୁହିଁଙ୍କ ଭିତରେ ଏତେ ହିଂସା କେଉଁଠି ଆସିଲା ? ଏହା ପାଇଁ ନିଜେ ଦାୟୀ ବୋଲି ଭାବି ସେ ଦୀର୍ଘନିଃଶ୍ୱାସ ପକାଇଲେ । ନିଶ୍ଚୟ ନିଜର ହିଂସା ପ୍ରତିବିମ୍ବିତ ହୋଇଚି ତାଙ୍କର ସନ୍ତାନମାନଙ୍କ ଜୀବନରେ ।

ଏ ପୃଥିବୀ ତ ଆଜି ହିଂସାରେ ଉନ୍ମତ୍ତ...

ହଠାତ୍ ଟୁକୁନା ଧଡ଼ପଡ଼ କରି ଉଠି ବସି ପାଟି କରି କହିଲା, ଦେ, ଦେ ମୋ ବନ୍ଧୁକ ଦେ...

ପ୍ରୀତି ମଧ୍ୟ ଧଡ଼ପଡ଼ କରି ପଚାରିଲା, କିରେ ବନ୍ଧୁକ କଅଣ ହେବ ଏତେ ରାତିରେ ?

– ବୋଉ, ବାଘ ମିମିକୁ ନବାକୁ ଆସିଚି, ମୁଁ ତାକୁ ମାରିବି, କହି ଟୁକୁନା ତା ବନ୍ଧୁକ ଧରି ଦୌଡ଼ିଲା ଦାଣ୍ଡ ଆଡ଼େ।

ପ୍ରୀତି ହସି ହସି ତା'ର ପଛରେ ଗୋଡ଼େଇ ତାକୁ ଧରି ଆଣି କହିଲା– ଦେଖୁଚ ହୋ, ଦିନ ରାତି କଳିଗୋଳ, ବାଦ ହିଂସା ଦୁହିଁଙ୍କ ଭିତରେ। ସପନରେ ଦେଖି ମିମିକୁ ବାଘ ଧରିନେବାକୁ ଆସିଚି ବୋଲି ଭାଇ ବାଘ ମାରିବାକୁ ଦଉଡ଼ିଛନ୍ତି।

ସୁଦାମ ବାବୁ ଆଶ୍ଚର୍ଯ୍ୟ ହୋଇ ଚାହିଁ କହିଲେ, ପ୍ରୀତି...ପ୍ରୀତି...ହିଂସା, ଈର୍ଷା ସତ୍ତ୍ୱେ ମନୁଷ୍ୟର ସାମ୍ୟ ଓ ଶାନ୍ତିର ସ୍ୱପ୍ନ ନିଶ୍ଚୟ ସଫଳ ହେବ! ନିଶ୍ଚୟ ହେବ!...

# କୃପାନିଧିବାବୁ

ଏଇ ଯେ ପ୍ରାୟ ଷାଠିଏ ବର୍ଷ ବୟସ୍କ ଦୀର୍ଘକାୟ ଠେଙ୍ଗା ଭଳି ସିଧା ଭଦ୍ରଲୋକଟି ନଈକୂଳରେ ପ୍ରାତଃଭ୍ରମଣରେ ବାହାରିଚନ୍ତି ଲୋକେ ସକାଳୁ ତାଙ୍କୁ ଦୂରରୁ ଦେଖି ମୁହଁ ବୁଲାଇ ଦିଅନ୍ତି, ତାଙ୍କ କଥା ପଡ଼ିଲେ ତାଙ୍କ ନାଁ ନଧରି କୁହନ୍ତି ଅମୁକବାବୁ। ସକାଳୁ ତାଙ୍କ ମୁହଁ ଦେଖିଲେ ବା ନାଁ ଧଇଲେ ସେ ଦିନଯାକ କୁଆଡ଼େ ଖାଇବାକୁ ମିଳେନାହିଁ। କୃପାନିଧିବାବୁ ଏ କଥା ଜାଣନ୍ତି, ତେଣୁ ସେ ବଡ଼ି ସକାଳୁ ବୁଲି ବାହାରିବା ବେଳେ କୌଣସି ଆଡ଼କୁ ନ ଚାହିଁ ସିଧା ସଳଖ ଚାଲନ୍ତି। କିଏ ତାଙ୍କୁ ଦେଖି ମୁହଁ ବୁଲାଇ ନେଇ ବାଟ କଟେଇ ଅନ୍ୟବାଟେ ଚାଲିଗଲା, ସେଥିପ୍ରତି ତାଙ୍କ ଭ୍ରୂକ୍ଷେପ ନଥାଏ।

ପିଲାଟି ବେଳୁ ସେ ହିସାବୀ। ସେ କହନ୍ତି ବୃଥା ଅପବ୍ୟୟ ସେ ସହ୍ୟ କରି ପାରନ୍ତି ନାହିଁ। କିନ୍ତୁ ଲୋକେ, ଏପରିକି ତାଙ୍କ ଘରଲୋକ ମଧ୍ୟ କୁହନ୍ତି ସେ କଥା ମିଛ; ଅସଲ କଥା ସେ କାହାରିକୁ ଅଧଲାଏ ବି ଦେବାକୁ ଚାହାନ୍ତି ନାହିଁ। ବିଶ୍ୱବିଦ୍ୟାଳୟରେ ପଢ଼ିବା ବେଳେ ହଷ୍ଟେଲ୍‌ରେ ଥିବା ସମୟରେ ଏଇ ଗୁଣ ପାଇଁ ତାଙ୍କୁ ଥରେ ବିପଦରେ ପଡ଼ିବାକୁ ହୋଇଥିଲା।

ପଢ଼ିବା ବେଳଠୁ ତାଙ୍କର ଅଭ୍ୟାସ ଅଟକଳ ଅନୁସାରେ ଖରଚ କରିବା। ଅଟକଳରେ ସୂତାଏ ବି ଏପାଖ ସେପାଖ ହବାର ଉପାୟ ନାହିଁ। ମୁଣ୍ଡ ଦିହରେ ଲଗାଇବା ତେଲ କିଣିଲେ ନିଇତି କେତେ ସେଥିରୁ ମାଖିବେ ତାହାର ଅଟକଳ ହୁଏ ଏବଂ ସେହି ଅଟକଳ ଅନୁସାରେ ନିଇତି ତେଲ ମଖାହୁଏ। ମୁଣ୍ଡରେ ମାଖିବା ପାଇଁ ଗୋଟିଏ ସୁବାସିତ ତେଲ ତାଙ୍କର ପ୍ରତ୍ୟେକ ମାସରେ କିଣା ହୁଏ ଏବଂ ଦୈନିକ ଅନୁମାପ ହିସାବରେ ସେ ତେଲ ଏକ ମାସ ଯିବାର କଥା। କିନ୍ତୁ ତାଙ୍କର ସହାଧ୍ୟାୟୀ, ସୁହୃଦ ଏବଂ ଏକ ପ୍ରକୋଷ୍ଠନିବାସୀ ବିଦ୍ୟାଧର ଥରେ ଥୋଡ଼ାଏ ତେଲ ସେଥିରୁ ଦେହରେ ମାଖିଦେଲେ। ଫଳରେ ସେ ମାସରେ ତାଙ୍କର ତେଲଟି ଏକ ମାସ ଗଲାନାହିଁ। କୃପାନିଧି ମହାଭାଳେଣିରେ ପଡ଼ିଲେ। ପ୍ରଥମ କଥା, ତାଙ୍କ ଅଟକଳ ଭୁଲ ହେବା କଥା ନୁହେଁ, ଭୁଲ ହେଲା କିପରି ? ଦ୍ୱିତୀୟତଃ

ମାସିକିଆ ଅଟକଳର କେଉଁ ଖର୍ଚ୍ଚ ଟଙ୍କା କାଟି ତେଲ ଖର୍ଚ୍ଚରେ ଭରତି କରିବେ? ମାସିକିଆ ଅଟକଳଟି ଏପରି କଣ୍ଟାଏ କଣ୍ଟାଏ ତିଆରି ଯେ, କୌଣସି ଖର୍ଚ୍ଚ କାଟ କରିବା ଅସମ୍ଭବ। ସିନେମା ଦେଖିବା ପାଇଁ ଯେଉଁ ଟଙ୍କା ଅଛି ସେଥିରୁ କିଛି କମାଇ ଦିଆଯାଇପାରେ। କିନ୍ତୁ ସିନେମା ମାସକୁ ଥରେ ଦେଖିବା ପାଇଁ ଅଟକଳ ହୋଇଛି। ସେ ବାବଦ ଖର୍ଚ୍ଚ କାଟ କଲେ ପଢ଼ାପଢ଼ିଜନିତ ମାନସିକ ଚାପର ଲାଘବ ସେ ମାସରେ ହୋଇ ପାରିବ ନାହିଁ ଏବଂ ତା ଫଳରେ ହୁଏତ ମାନସିକ ଦୁର୍ବଳତା ବଢ଼ିପାରେ। କୃପାନିଧି କିଛି ଠିକ୍ କରିପାରିଲେ ନାହିଁ। ଖାଇବା ପରେ ଏବଂ ଶୋଇବା ପୂର୍ବରୁ ଡାଏରି ଓ ହିସାବ ଲେଖିବା ପାଇଁ ଯେଉଁ ଘଣ୍ଟାଟିଏ ସମୟ ଅଟକଳରେ ଅଛି, ତାଠୁ ଅଧିକ ଏକ ମିନିଟ୍ ଭାବନା ପାଇଁ ବ୍ୟୟ କରିବାକୁ ଉପାୟ ନାହିଁ।

କୃପାନିଧି ତିନିଦିନ ତିନୋଟି ଘଣ୍ଟା ଏହିପରି ଭାବିଲେ। ଏ ତିନି ଦିନ ତେଲ ବାବଦ ଖର୍ଚ୍ଚ ଅଟକ ରହିଲା। ତା ପରେ ଉପାୟ ସ୍ଥିର କଲେ ଯେ ବର୍ଷକିଆ ଅଟକଳରେ ଯେଉଁ ଅଧିକ ଟଙ୍କା ବିପଦ ଆପଦକୁ ଧାର୍ଯ୍ୟ ଅଛି ସେଥିରେ କିଛି ସେ ମାସର ତେଲ ବାବଦକୁ ନେବେ। ସେଇ ସିଦ୍ଧାନ୍ତ ଅନୁସାରେ ସେ ବର୍ଷର ହିସାବଖାତାରେ ଅନୁରୂପ ମନ୍ତବ୍ୟ ଲେଖି ଯଥାରୀତି ଗୋଟିଏ ବାବଦରୁ ଅନ୍ୟ ବାବଦକୁ ଦେବାନେବା ହେଲା ପରେ ତେଲମାଖି ଗାଧୋଇବା ହେଲା। କିନ୍ତୁ ପର ମାସରେ ମଧ୍ୟ ସେହିପରି ନିଅଣ୍ଟ ପଡ଼ିଲା। ତାଙ୍କର ତ ଏପରି ଭୁଲ ହେବା ଆଦୌ ସମ୍ଭବ ନୁହେଁ! ନିଶ୍ଚୟ ତେବେ କେଉଁଠି ଚୋରି ହେଉଚି। ଅନୁସନ୍ଧାନ କରି ଜାଣିଲେ ଯେ ସୁହୃଦୋତ୍ତମ ବିଦ୍ୟାଧର ଲୁଚାଇ ତେଲ ନେଉଚି। ପରବର୍ତ୍ତୀ ମାସରେ ବିଦ୍ୟାଧର ପାଇଁ ଗୋଟିଏ ତେଲ ଶିଶି ବାବଦ ଅଟକଳରେ ଖର୍ଚ୍ଚା ପକାଇ କୃପାନିଧି ବିଦ୍ୟାଧରକୁ ଗୋଟିଏ ତେଲ ଶିଶି ଦେଲେ। କିନ୍ତୁ ବିଦ୍ୟାଧର ଏହାକୁ ଅପମାନ ବୋଲି ବିବେଚନା କରି କୃପାନିଧି ବିରୁଦ୍ଧରେ ଅପପ୍ରଚାର କରିବା ଫଳରେ କୃପାନିଧି କୃପଣ ବୋଲି ସାବ୍ୟସ୍ତ ହୋଇଥିଲେ ଏବଂ ସେଥି ସକାଶେ ତାଙ୍କୁ ବନ୍ଧୁ ମହଲରେ ନାନା ଅପମାନ ସହ୍ୟ କରିବାକୁ ପଡ଼ିଥିଲା। କୃପାନିଧି ନୀରବରେ ସେ ଅପମାନ ସହ୍ୟ କରି ତାଙ୍କର ନୀତିରେ ଅଟଳ ରହିଥିଲେ।

କଲେଜପଢ଼ା ସାରି କୃପାନିଧି ଚାକିରି କଲେଣି । କିନ୍ତୁ ସେଇ ନୀତି, ସେଇ ଚଳଣିରେ ତାଙ୍କର କୌଣସି ପରିବର୍ତ୍ତନ ହୋଇ ନାହିଁ। ବିବାହ ସେ କରି ନାହାନ୍ତି। ନ କରିବାର କାରଣ, ଚାରି ପୁରୁଷ ପୂର୍ବେ ତାଙ୍କର ବୃଦ୍ଧ ପ୍ରପିତାମହ ଧଇଁ ରୋଗରେ ଆକ୍ରାନ୍ତ ହୋଇଥିଲେ। ଯଦିଚ ପରବର୍ତ୍ତୀ ତିନିପୁରୁଷରେ ସେ ରୋଗର କୌଣସି ଲକ୍ଷଣ ଦେଖା ଯାଇନାହିଁ, ତଥାପି ବିଜ୍ଞାନାନୁସାରେ ଏ ରୋଗ ବଂଶାନୁକ୍ରମିକ ଏବଂ ଯେ କୌଣସି ପୁରୁଷରେ ତାହା ପୁଣି ବାହାରି ପାରେ। କୃପାନିଧିଙ୍କ ନୀତିରେ ଏପରି ରୋଗାକ୍ରାନ୍ତ ବଂଶ

ନିଶ୍ଚିହ୍ନ ହୋଇଯିବା ଉଚିତ। ସେଇ ନୀତି ଅନୁସାରେ ସେ ବିବାହ କରିବେ ନାହିଁ ବୋଲି ସିଦ୍ଧାନ୍ତ କରିଥିଲେ। ବସ୍ତୁତଃ ତାଙ୍କୁ ଯେତେବେଳେ ପାଞ୍ଚବର୍ଷ ବୟସ, ସେତେବେଳେ ଏ ରୋଗର ସାମାନ୍ୟ ଲକ୍ଷଣ ଟିକିଏ ଦେଖାଯାଇଥିଲା। ତା ପରେ ସେ ରୋଗର ତିଳେମାତ୍ର ଲକ୍ଷଣ ଦେଖାଯାଇ ନାହିଁ ଏବଂ ସେ ସର୍ବଦା ସବଳ, ସୁସ୍ଥ। ଏ ଷାଠିଏ ବର୍ଷ ବୟସରେ ମଧ୍ୟ ତାଙ୍କର ଗୋଟିଏ ଦାନ୍ତ ବି ପଡ଼ିନାହିଁ; କେବଳ କାନପାଖର ଦୁଇଚାରିଟା ବାଳ ଧଳା ହୋଇଛି ଏଇ କେତେମାସ ହେବ। ତଥାପି ତାଙ୍କ ସିଦ୍ଧାନ୍ତ ଅନୁସାରେ ସେ ବିବାହ କଲେ ନାହିଁ। ବାପା, ବୋଉ, ଭଉଣୀ କେତେ ରାତି କାନ୍ଦି କାନ୍ଦି ଆଖି ଫୁଲାଇଚନ୍ତି, ବୋଉ କେତେ ମୁଣ୍ଡ ବାଡ଼େଇଚି, ତଥାପି କୃପାନିଧି ତାଙ୍କ ନୀତିରେ ଅଟଳ।

ବିବାହ କରି ନାହାନ୍ତି ବୋଲି ଅବିବାହିତ ଜୀବନର ନାନା ଦୋଷ ବିଷୟରେ ସେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ, ଆଲୋଚନା କରି ସେଥିପାଇଁ ସର୍ବଦା ସତର୍କ ଅଛନ୍ତି। ନାରୀଘଟିତ ବ୍ୟାପାରରେ ତାଙ୍କର ଅତି ବଡ଼ ଶତ୍ରୁ ମଧ୍ୟ ଦୁର୍ନାମ ଦେଇପାରିନାହିଁ। ଖାଲି କ୍ୱଚିତ୍ ସୁପ୍ରିୟା କଥା ମନେ ପଡ଼ିଲେ କୃପାନିଧିଙ୍କ ମନଟା ଉଦାସ, ଚଞ୍ଚଳ ହୋଇଉଠେ। ତାଙ୍କ ଡାଏରିରେ ସୁପ୍ରିୟାକୁ ଦେଇଥିବା ଶେଷ ଚିଠିର ନକଲ ତଳେ ଦିଆଗଲା।

କଟକ

ତା-୧୮-୧୨-୧୯୧୯

ସୁପ୍ରିୟା,

ପ୍ରେମ ହୁଏତ ଯୌନ ପ୍ରବୃତ୍ତିରୁ ଉତ୍ପତ୍ତି। କିନ୍ତୁ ମାନସିକ ଓ ଶାରୀରିକ ବିକାଶ ଦିଗରେ ଏହା ଯଥେଷ୍ଟ ସାହାଯ୍ୟ କରେ। ପ୍ରେମର ପରିଣତି ପରିଣୟ ହେବା ଉଚିତ। ଅବାଧ ପ୍ରେମ ସମାଜ ପକ୍ଷରେ ଅମଙ୍ଗଳଜନକ। ମୋ ପକ୍ଷରେ ବିବାହ ସମାଜ ପକ୍ଷରେ ଅମଙ୍ଗଳ ଜନକ। ତେଣୁ ମୋ ଜୀବନରେ ପ୍ରେମର ସ୍ଥାନ ନାହିଁ। ଏହା ଜାଣି ମୁଁ ସର୍ବଦା ସତର୍କ ଥିବା ସତ୍ତ୍ୱେ କେତେବେଳେ ମୋର ଅଜ୍ଞାତସାରରେ ମୋର ମନ ଆପଣଙ୍କ ଆଡ଼କୁ ଆକୃଷ୍ଟ ହୋଇଛି ତାହା ଜାଣିପାରିନାହିଁ। ଦିନେ ଅକାରଣରେ ମୋର ମନଟା ଉଦାସ ଲାଗିଲା ଏବଂ ଛାତି ଭିତରେ ଗୋଟାଏ ଅଦ୍ଭୁତ ବ୍ୟଥା ଅନୁଭବ କଲି। ଡାକ୍ତର ଯେଉଁ ଔଷଧ ଲେଖିଦେଲେ ତାହା ଖାଇ ମଧ୍ୟ ସେ ବ୍ୟଥାର ଉପଶମ ହେଲାନାହିଁ। କାରଣ ଅନୁସନ୍ଧାନ କରି ବୁଝିଲି ଯେ ଆପଣଙ୍କର ସେଦିନ ଦେଖା ନ ପାଇଥିବାରୁ ଏପରି ଅନୁଭୂତି। ସେହିଦିନ ବୁଝିଲି ଯେ ମୁଁ ଆପଣଙ୍କର ପ୍ରେମରେ ପଡ଼ିଚି। ସେଇ ଦିନହିଁ ସିଦ୍ଧାନ୍ତ କରିଥିଲି ଯେ ଏହାକୁ ଆଉ ଆଗେଇବାକୁ ଦେବା ଉଚିତ ନୁହେଁ। ମୁଁ ମୋ ଆଡୁ ମୋ କଥା କହିଲି। ଆପଣଙ୍କ ମନକଥା ଆପଣ ପ୍ରକାଶ କରିଛନ୍ତି। କିନ୍ତୁ ମୋ ସିଦ୍ଧାନ୍ତ ହିଁ ମୁଁ କାର୍ଯ୍ୟକାରୀ କରିବି। ଅତଏବ ଏହାହିଁ ଆମ ଦୁହିଁଙ୍କର ଶେଷ ସମ୍ବନ୍ଧ। ଯେ

କୌଣସି ଉପାୟରେ, ଏପରିକି ମୋ ପ୍ରତି ଘୃଣାଭାବ ଆଣି ମଧ୍ୟ ଆପଣଙ୍କର ମୋତେ ଭୁଲିଯିବା ଉଚିତ। ଆପଣଙ୍କ ସହିତ ମିଳାମିଶା ବେଳେ ମୁଁ ମୋର ଭଲ ଦିଗଟି ହିଁ ଆପଣଙ୍କୁ ଦେଖାଇବାକୁ ଚେଷ୍ଟା କରିଚି। ଏ ଶଠତା ପାଇଁ କ୍ଷମା କରିବେ। କିନ୍ତୁ ବର୍ତ୍ତମାନ ମୋ ପ୍ରତି ଘୃଣାଭାବ ଆଣିବାକୁ ଆପଣଙ୍କୁ ସାହାଯ୍ୟ କରିବାପାଇଁ, ଯଦି ଆପଣ ଚାହାନ୍ତି, ମୁଁ ମୋର ଖରାପ ଗୁଣଗୁଡ଼ିକ କହିବି। ତାହାର ଅଭାବ ମଧ୍ୟ ନାହିଁ।।। ଇତି।।

କୃପାନିଧି

ଚିଠି ଦେବା ଦିନ ସୂର୍ଯ୍ୟାସ୍ତ ସମୟରେ କୃପାନିଧି ନିଜ ଘରେ ଚୌକି ଉପରେ ବସି ଆକାଶ ଆଡ଼େ ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଚନ୍ତି। ଏହି ସମୟରେ ତାଙ୍କର କାର୍ଯ୍ୟନିର୍ଘଣ୍ଟ ଅନୁସାରେ ବାଡ଼ିବଗିଚା କାମ କରିବା କଥା। କେତେବେଳେ ଯାଏ ଏହିପରି ବସିଥିଲେ ତାଙ୍କୁ ମାଲୁମ ନଥିଲା। ହଠାତ୍ ତାଙ୍କର ମନେ ପଡ଼ିଗଲା, ସେ କାର୍ଯ୍ୟନିର୍ଘଣ୍ଟ ଅନୁସାରେ କାମ ନକରି ବସିରହିଛନ୍ତି। ଉଠିଯାଇ ବଗିଚାକୁ ଗଲେ। ଗୋଲାପ ଗଛଟିଏ ମଉଳି ଯାଇଚି ଦେଖି ତାର କାରଣ ଅନୁସନ୍ଧାନ କରିବାକୁ ସେହି ଗଛମୂଳେ ବସିପଡ଼ିଲେ। ଅଜାଣତରେ ତାଙ୍କର ଆଖିପତା ଟିକିଏ ଓଦା ହୋଇଗଲା।

- କଅଣ କରୁଚନ୍ତି ?

ଚମକି ପଡ଼ି ପଛକୁ ଚାହିଁ ଦେଖିଲେ, ସୁପ୍ରିୟା।

- ମୋର ଚିଠି ପାଇଚନ୍ତି ?

- ଆଜ୍ଞା ହଁ, ସୁପ୍ରିୟା ହସି କହିଲେ।

- ତେବେ ତ ଆଉ ଆସିବାର ପ୍ରୟୋଜନ ନଥିଲା।

- ମୋର ପ୍ରୟୋଜନ ଆପଣ କେମିତି ଜାଣିବେ !

ସେ ପ୍ରଶ୍ନ ଏଡ଼ାଇ ଯାଇ କୃପାନିଧି କହିଲେ, ମୁଁ ମୋର ଯାହା କରିବାର କଥା ଚିଠିରେ ଲେଖିଚି। ତା ପରେ ଆଉ କିଛି କହିବାର ଥାଇ ପାରେନା।

- କିଏ କହୁଚି ଆପଣଙ୍କୁ ବିବାହ ହେବାକୁ ? ସ୍ୱାମୀ ସ୍ତ୍ରୀ ଛଡ଼ା ପୁରୁଷ ଓ ନାରୀର କଅଣ ଆଉ କୌଣସି ସମ୍ପର୍କ ଥାଇପାରେ ନା ? ଆମେ ଦୁହେଁ ବନ୍ଧୁ ଭଳି ରହିବାକୁ ଆପତ୍ତି କଅଣ ଆପଣଙ୍କର ?

- ସେମିତିକିଆ ପ୍ରଶ୍ନ ମୁଁ ଅନେକ ଉପନ୍ୟାସରେ ପଢ଼ିଚି। ନିହାତି ଉପରଠାଉରିଆ ବା ଅଭିସନ୍ଧିମୂଳକ ପ୍ରଶ୍ନ। ଯେଉଁ ସମ୍ବନ୍ଧରେ ଯୌନ ଉଦ୍ରେକ ହେବାର ସମ୍ଭାବନା ଅଛି ସେଠି ନିଛକ ବନ୍ଧୁତ୍ୱ ରହିବ କିପରି ? ରହିବା ଉଚିତ ମଧ୍ୟ ନୁହଁ। କାରଣ ତାହା ସମସ୍ତ ଜୀବନ ବିକୃତ କରିଦେବ।

- ବେଶ୍ ତ, ବିବାହ କରନ୍ତୁ। ସନ୍ତାନ ନ ହେଲେ ହେଲା। ଆଉ ଆପଣଙ୍କ ଆପତ୍ତି କଅଣ ଥାଇପାରେ ?

କୃପାନିଧି କଅଣ ସେହିପରି ମନେ ପକାଇବାକୁ ଚେଷ୍ଟା କଲେ। ତାପରେ ସୁପ୍ରିୟାଙ୍କୁ ଦେଇଥିବା ଚିଠିର ନକଲଟି ବାହାର କରି ପଢ଼ି କହିଲେ, ଓଃ ମୋର ଭୁଲ ହୋଇ ଯାଇଚି। ଏ ବିଷୟରେ ମୋର ମତ ଲେଖିବା ଉଚିତ ଥିଲା, ଲେଖି ନାହିଁ। ମୋର ମତରେ ନାରୀର ଚରମ ପରିଣତି ଜନନୀ ହେବାରେ। ସେଥିରୁ ମୁଁ ଆପଣଙ୍କୁ ବଞ୍ଚିତା କରି ଦୋଷୀ ହେବାକୁ ଚାହେ ନା। ଆପଣ ବୃଥାରେ ଚିନ୍ତା କରୁଚନ୍ତି। ଯାହା ବର୍ତ୍ତମାନ ମନେ ହେଉଛି ଅଶେଷ କଷ୍ଟଦାୟକ, କିଛିଦିନ ପରେ ଦେଖିବେ ଯେ ମନେ ହେବ ସେଇଟାହିଁ ଆପଣଙ୍କର ସୁଖଶାନ୍ତିର କାରଣ। ମନ କେବେ ଗୋଟାଏ ଜିନିଷକୁ ଧରି ପଡ଼ି ରୁହେନା। ତାହା ନ ହୋଇଥିଲେ ମଣିଷ ବିବର୍ତ୍ତନ ଦିଗରେ ଅଗ୍ରସର ହୋଇ ପାରନ୍ତା ନାହିଁ। ଏ ବିଷୟରେ ଆଉ କିଛି ଆଲୋଚନା ନ କରିବା ହିଁ ଭଲ।

କୃପାନିଧି ଉଠି ଦୁଆରଟି ଖୋଲି ଦେଇଥିଲେ ଏବଂ ସୁପ୍ରିୟା ତଳକୁ ମୁହଁ ପୋତି ବାହାରି ଯାଇଥିଲେ ସେ ଘରୁ। ଏହାର ପ୍ରତିକ୍ରିୟା ସ୍ୱରୂପ କୃପାନିଧି ସେହି ଦିନକ ପାଇଁ ତାଙ୍କର ଦୈନନ୍ଦିନ କାର୍ଯ୍ୟନିର୍ଘଣ୍ଟର ବ୍ୟତିକ୍ରମ ଘଟାଇ ଖଟ ଉପରେ ଶୋଇରହିଥିଲେ ପରଦିନ ସକାଳ ଯାଏଁ। ଏହାପରେ ସେ ଦୁଇଜଣଙ୍କର ଆଉ ଦେଖାସାକ୍ଷାତ ହୋଇ ନାହିଁ କିମ୍ବା କୃପାନିଧିଙ୍କର ତାହା ପରେ ଆଉ ବ୍ୟତିକ୍ରମ ଘଟିନାହିଁ।

କୃପାନିଧିଙ୍କ ଉପରେ ବିଶେଷ ବିରକ୍ତ ହୁଅନ୍ତି ଯେଉଁମାନେ ତାଙ୍କ ଦ୍ୱାରା ଉପକୃତ ହୋଇଚନ୍ତି। ଦୟା, ଦାନଶୀଳତା ଆଦି ଯେଉଁ ଗୁଣଗୁଡ଼ିକ ପାଇଁ ମଣିଷ ଦେବତା ହୋଇପାରେ ସେ ବିଷୟରେ ତାଙ୍କର ମତ ସଂପୂର୍ଣ୍ଣ ଓଲଟା। ସେ କୁହନ୍ତି, ଏହାପରି ସ୍ୱାର୍ଥାନ୍ଧତା ବା ଅସାମାଜିକତା ବା ଦାୟିତ୍ୱହୀନତା ଆଉ କିଛି ନାହିଁ। କିଛି ଅର୍ଥ ସାହାଯ୍ୟ ଦେଇ ଦୟାବାନ ବୋଲି ପ୍ରଶଂସା ପାଇ ମଣିଷ ଆତ୍ମପ୍ରସାଦ ଲାଭ କରେ, ସୁନାମ ଅର୍ଜନ କରିବାରେ ଲାଗେ ଏବଂ ସମାଜରେ ନିଜ ପ୍ରତିପତ୍ତି ବଢ଼ାଏ। ତା ନହେଲେ ଲୋକ ଟିକସ ଦେବାରେ ନାନା ଧପ୍‌ପାବାଜି କରି ଦାନଖଇରାତରେ ଲକ୍ଷ ଲକ୍ଷ ଟଙ୍କା ଦିଅନ୍ତା ନାହିଁ। ଏ ପ୍ରକାର ପ୍ରତିପତ୍ତିରେ ସେ ଏପରି ବିଭୋର ରୁହେ ଯେ କେବେ ହେଁ ଭାବି ଦେଖେ ନାହିଁ ଯେଉଁ ସାହାଯ୍ୟକୁ ସେ ନିଜର ମହତ୍ତ୍ୱଜନିତ ଦାନ ବୋଲି କହୁଚି ତାହା ହୁଏତ ଅନ୍ୟର ଦାବୀ ହୋଇପାରେ। ଅନ୍ୟର ଦାବୀକୁ ସେ ଅସ୍ୱୀକାର କରି ତାହାକୁ ଭଣ୍ଡାଇବା ପାଇଁ ଦାନ, ଦୟା ଆଦି ଆବିଷ୍କାର କରିଚି। ଅତଏବ ପୁଞ୍ଜିବାଦରୁ ସୃଷ୍ଟି ଦୟା, ଦାକ୍ଷିଣ୍ୟ ଆଦି ନାମକରଣ। ଆର୍ଥିକ ସାହାଯ୍ୟ ଦେଇ ମଣିଷ କେବେହେଁ ଦେଖେ ନାହିଁ, ତାହାଦ୍ୱାରା ସେ ଅନ୍ୟର ବା ସମାଜର କ୍ଷତି କଲା କି ନା। ଦେଖେ ନାହିଁ ତାର ସାହାଯ୍ୟ

କିପରି ବ୍ୟଥିତ ହେଲା । ସେ ଦାନ ଦେଇ ପରମ ସନ୍ତୋଷ ଲାଭ କରି ରହିଲା, ଅନ୍ୟର ତାହା ଦ୍ୱାରା କଅଣ ହେଲା ସେଥିରେ ତା'ର କିଛି ଯାଏ ଆସେ ନା । ତାଙ୍କ ମତରେ ଅର୍ଥନୀତି ଏପରି ହେବା ଦରକାର ଯେ ଅନ୍ୟକୁ ଦୟା, ଦାନ କରିବାର ସୁଯୋଗ ରହିବ ନାହିଁ ।

ଗୋଟିଏ ଦରିଦ୍ର ମେଧାବୀ ଛାତ୍ରକୁ ସେ ମାସିକ ପାଞ୍ଚଟଙ୍କା ସାହାଯ୍ୟ ଦେବାକୁ ସ୍ୱୀକୃତି ଦେଇଥିଲେ । କିନ୍ତୁ ସାହାଯ୍ୟ ଦେବା ପୂର୍ବରୁ ସେ ପ୍ରଧାନ ଶିକ୍ଷକଙ୍କର ମତାମତ, ସ୍କୁଲରେ ତାହାର ଆଚରଣ ଆଦି ସବୁ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ତାହାପରେ ତାକୁ ସାହାଯ୍ୟ ଦେଲେ । କିନ୍ତୁ ଏହି ସର୍ତ୍ତରେ ସେ ସାହାଯ୍ୟ ଦେଲେ ଯେ, ପ୍ରତ୍ୟେକ ମାସରେ ଉକ୍ତ ଛାତ୍ର ତାହାର ସମସ୍ତ ଖର୍ଚ୍ଚର ହିସାବ ଦେଇଯିବ । କେବଳ ସେତିକି ନୁହେଁ, ପ୍ରତ୍ୟେକ ମାସରେ ସେ ପ୍ରଧାନ ଶିକ୍ଷକଙ୍କଠାରୁ ଉକ୍ତ ଛାତ୍ର ବିଷୟରେ ସମସ୍ତ ସମ୍ବାଦ ସଂଗ୍ରହ କରୁଥିଲେ । ଉକ୍ତ ଛାତ୍ର କଲେଜରେ ପଢ଼ିବାବେଳେ ସେ ତାକୁ ମାସିକ ଦଶଟଙ୍କା ସାହାଯ୍ୟ ଦେଉଥିଲେ । କିନ୍ତୁ ଛାତ୍ରଟି କୃପାନିଧିଙ୍କ ମାସିକ ଅନୁସନ୍ଧାନରେ ବ୍ୟତିବ୍ୟସ୍ତ ହୋଇ ଶେଷକୁ ସେ ସାହାଯ୍ୟ ନେବା ବନ୍ଦ କରିଥିଲା । କୃପାନିଧିଙ୍କ ଭାଳେଣି ପଡ଼ିଲା ଯେ, ସେ ଛାତ୍ର ସଂକ୍ରାନ୍ତ ତାଙ୍କର ନଥିଟି ବିଡ଼ା ବନ୍ଧାହୋଇ ପାରିବ ନାହିଁ– ଯେ ପର୍ଯ୍ୟନ୍ତ ସେ ଛାତ୍ରଟିଠାରୁ ସଂପୂର୍ଣ୍ଣ ହିସାବ ନ ପାଇଛନ୍ତି । ଦିନେ ହଠାତ୍ ଦେଖା ହୋଇଯିବାରୁ କୃପାନିଧି ପଚାରିଲେ, କିହୋ ଯତୀନ, କିପରି ଅଛ ? ତୁମ୍ଭର ହାକିମ ଚାକିରି ହେବାର ଶୁଣି ସୁଖୀ ହେଲି । କିପରି ଲାଗୁଚି ବର୍ତ୍ତମାନ ?

ଯତୀନ ଚିହ୍ନି ନ ଚିହ୍ନିଲା ପରି କହିଲା, ଭଲ । ହଁ, ତମର ଖବର କଅଣ ? ଭଲ ତ ? ବେଶ୍ ବେଶ୍ ।

– ତମର ଶେଷ ତିନିମାସର ହିସାବ ମୋତେ ଏ ପର୍ଯ୍ୟନ୍ତ ଦେଇ ନା, ମନେ ଅଛି ? ସେଟା ଦେଇଦେବ । ନହେଲେ ମୋର ସେ ସଂକ୍ରାନ୍ତ ନଥିପତ୍ର ଅସଂପୂର୍ଣ୍ଣ ରହିଯିବ । କୃପାନିଧି ଯଥାନୀତି କହିଲେ ।

– କି ହିସାବ ହୋ ? ଭାରି ତ ଗୋଟେ ଦେଇପକାଉଥିଲେ ଯେ ତାହାର ହିସାବ ପୁଣି ଦବାକୁ ହେବ ! ଗୁରାଏ..., ମୋ ନା'ରେ ମକଦ୍ଦମା କରିବ ଯାଅ ।

– ମକଦ୍ଦମା କରିବି କାହିଁକି ? ଓ, ଟଙ୍କା ପାଇଁ ? ସେତକ ମୁଁ ଟିକସ ହିସାବରେ ଦେଉଚି । ତା ହିସାବ ନ ହେଲେ ମୋ ନଥିରେ ଆପଣଙ୍କ ବିଷୟରେ ମୋର ମନ୍ତବ୍ୟ ଲେଖି ସେ ଫାଇଲ୍ କାମ ବଢ଼େଇ ବିଡ଼ାବାନ୍ଧି ଥୋଇଦେବି ।

– ହଁ ହଁ ମନ୍ତବ୍ୟ ଲେଖି ରଖ । ସକାଳୁ ମୁହଁ ଦେଖିଲାଣି ମଣିଷ, ଏଦିନ କେମିତି ଯିବ କିଏ ଜାଣେ । ମୁଁ ସମସ୍ତ ଟଙ୍କା ତୁମର ଫେରାଇ ଦେବି ।

- ମୁଁ ଫେରାଇ ନେବି କାହିଁକି ?

- ମୁଁ ଏପରି ଲୋକ ପାଖରେ କୃତଜ୍ଞ ରହିବାକୁ ଚାହେ ନା ।

- କିଏ କହୁଛି କୃତଜ୍ଞ ହେବାକୁ ? ମୁଁ ତ ଚାହି ନାହିଁ । କେବଳ ମୋର ଦେୟ ଟିକସ ସଦ୍‌ବ୍ୟବହାରରେ ଲାଗିଛି କି ନା ତାହା ମୁଁ ଜାଣିବାକୁ ଚାହେ । ତୁମର ଯେଉଁ ବିଦ୍ରୋହ ଭାବ ତାହା ମୋ ବିରୁଦ୍ଧରେ ନୁହଁ । ତୁମେ ମୋର ଦବାକୁ ସାହାଯ୍ୟ ଓ ଦାନ ବୋଲି ଭାବୁଚ ବୋଲି ମନରେ ବିଦ୍ରୋହ ଭାବ ଆସୁଛି । ମୋ ପ୍ରତି ବିଦ୍ରୋହ ଭାବ କ୍ରମେ ସମସ୍ତ ସମାଜକୁ ସଂଚରି ଯିବ । ଏକୁ ସାହାଯ୍ୟ ବାବଦ ବୋଲି ଭାବନା । ମୁଁ ତ ନିଜେ ସେପରି ଭାବେ ନା । ହଉ ମନ ଭଲ ରଖି କାର୍ଯ୍ୟ କରିବ । ନମସ୍କାର ।

ଦିନେ ରବିବାର ସକାଳୁ ଯାଇ ଦେଖେ ଦଳେ କୁଷ୍ଠ, ଅନ୍ଧ, ବିକଳାଙ୍ଗ ଭିକାରି କୃପାନିଧିଙ୍କ ଦୁଆର ମୁହଁରେ ଛିଡ଼ା ହୋଇ ପାଟି କରୁଛନ୍ତି, ବାବୁ ଗଣ୍ଡେ ଭିକ ମିଳୁ । କୃପାନିଧି ଚିନ୍ତିତ ଭାବରେ ଚୌକି ଉପରେ ବସିଛନ୍ତି ।

- କଥା କଅଣ ? ଏପରି ଚିନ୍ତାମଗ୍ନ ଭାବରେ...

- ଭାବୁଥିଲି ଏମାନଙ୍କୁ ଭିକ ଦେବି କି ନା । ସରକାରଙ୍କୁ ଆମେ ଟିକସ୍ ଦେଉ ଥାଇଁ ଏବଂ ସେ ଟିକସରେ ଏମାନଙ୍କର ଦାବୀ ଅଛି । ଆମେ ଯଦି ଏମାନଙ୍କୁ ଭିକ୍ଷା ଦେଉ, ତେବେ ସରକାରର ଅନ୍ୟାୟ ବିରୁଦ୍ଧରେ ଏମାନେ କେବେହେଁ ବିଦ୍ରୋହ କରିବେ ନାହିଁ । ଅର୍ଥାତ୍ ଆମେ ବିପ୍ଳବର ମୁଖରୋଧ କରିଦେବୁ । ଯଦି ନ ଦେଉ, ତେବେ ଏମାନେ ମରିଯିବେ । ଉପାୟ ?

- ସତେ ଏକା, ସରକାର ଏମାନଙ୍କ ପକ୍ଷରେ ନିହାତି ଦାୟିତ୍ୱହୀନ ଭଳି କାମ କରୁଛନ୍ତି ।

- ଖାଲି ଏମାନଙ୍କ ପକ୍ଷରେ ନୁହଁ, ଆମ ପକ୍ଷରେ ମଧ୍ୟ । ଏଇମାନେ ତ ରୋଗୀର ସଂଖ୍ୟା ବଢ଼ାଇବାରେ ସାହାଯ୍ୟ କରୁଚନ୍ତି । ନାଃ, ସରକାରଙ୍କୁ ସଚେତନ କରିବାପର୍ଯ୍ୟନ୍ତ ଏମାନଙ୍କୁ ଭିକ୍ଷା ଦେବା ଉଚିତ ।

- ଏମାନଙ୍କୁ ଦେଖି ଭାରି ଦୟା ହୁଏ ମୋର ।

- ତା ହେଲେ ତ ଆପଣ ଦେବତା । ମୋର ଦୟା ହୁଏ ନାହିଁ । ମୁଁ ଭାବେ ଏମାନେ ଏମାନଙ୍କ ଦାବୀ ହାସଲ କରିବା କଥା ଜାଣି ନାହାନ୍ତି । ଅର୍ଥନୀତି ଏପରି ହେବା ଉଚିତ ଯେ କେହି ଯେପରି ଅନ୍ୟକୁ ଦୟା କରୁଚି ବୋଲି ଗର୍ବ ଅନୁଭବ ନକରେ । ଦୟା ବୋଲି ଯେଉଁ ଭାବ ତାହା ଦାତା ଓ ଗ୍ରହୀତା ଦୁହିଁଙ୍କୁ ହୀନ କରାଏ ଏବଂ ସରକାରକୁ ଦାୟିତ୍ୱହୀନ କରାଏ । ସରକାରଙ୍କୁ ଏ ଦିଗରେ ସଚେତନ ନ କରିବା ପର୍ଯ୍ୟନ୍ତ ଏମାନଙ୍କ ପାଇଁ ଅଧିକା ଟିକସ ଦିଆଯାଉ ।

କୃପାନିଧି ଉଠି ପ୍ରତ୍ୟେକଙ୍କୁ ଘଉଳ ଦେଲେ। କିନ୍ତୁ ସେହି ଦିନୁ ସେ ଏ ବିଷୟରେ ନାନା ତଥ୍ୟ ସଂଗ୍ରହ କରି ଲେଖିବାକୁ ଲାଗିଲେ ପ୍ରବନ୍ଧ- ଯାହା ଫଳରେ ବହୁଦିନ ପରେ ସରକାରଙ୍କ ଆସନ ଟିକିଏ ଟଳିଥିଲା।

ଜୀବନରେ ଯାହା କିଛି ସରସ, ସୁନ୍ଦର, ଭାବପୂର୍ଣ୍ଣ ସବୁ ସେ ଏଡ଼ାଇ ଚାଲିଛନ୍ତି। ଟିକିଏ ପରିହାସ କରିବାର ମଧ୍ୟ ମୁଁ କେବେ ତାଙ୍କୁ ଦେଖି ନାହିଁ। ଏତେ ହିସାବ ନିକାଶ, ଏତେ ନିୟମପୂର୍ଣ୍ଣ ଜୀବନ କେଉଁଥିପାଇଁ ମୁଁ ଭାବି ପାରେନା। ସଦାବେଳେ ସେଇ ଗମ୍ଭୀର ଚିନ୍ତାକୁଳ ମୁହଁ ଆଉ ହିସାବପତ୍ର। ପ୍ରତିଦିନ ଯେ ଡାଏରି ଲେଖନ୍ତି, କଅଣ ଲେଖନ୍ତି ସେଥିରେ ! କଅଣ ଏତେ ଘଟଣା ଅଛି ଲେଖିବାର ? ସଂସାର ତ କରି ନାହାନ୍ତି, ଏତେ ହିସାବ ଲେଖିବା କେଉଁଥି ପାଇଁ ?

ଥରେ ସେ କଥାଟା ସାହସ କରି ପଚାରିଥିଲି। ଉତ୍ତରରେ ସେ ହସି ହସି କହିଥିଲେ, ବିବାହ, ସଂସାର କରି ନାହିଁ ବୋଲି ତ ଏତେ ହିସାବ। ସମାଜ ଭିତରେ ରୋଜଗାର କରି ବଞ୍ଚିରହିବାର ଯେଉଁ ସୁଯୋଗ ମୋତେ ଦିଆ ହୋଇଚି ତାହାର କିପରି ସଦ୍‌ବ୍ୟବହାର କଲି ଏହା ଜାଣିବା ଅଧିକାର ସମାଜରେ ପ୍ରତ୍ୟେକର ଅଛି। ଯଦି ବିବାହ କରି ଥାଆନ୍ତି, ତେବେ ସମାଜକୁ ସୁଶିକ୍ଷିତ ସ୍ୱାସ୍ଥ୍ୟବାନ କାର୍ଯ୍ୟକ୍ଷମ କେତୋଟି ମଣିଷ ଦେଇଥାନ୍ତି, ଏତେ ହିସାବ ଲେଖିବାର ପ୍ରୟୋଜନ ନଥାନ୍ତା। କିନ୍ତୁ ତାହା ଯେତେବେଳେ କରିବାର ମୋର ଉପାୟ ନାହିଁ, ସେତେବେଳେ ଟିକିନିଖି ହିସାବ ରଖିଯିବା ମୋର କର୍ତ୍ତବ୍ୟ।

ଷାଠିଏ ବର୍ଷ ହେଲା କଟକର ବାହାରକୁ ସେ ଯାଇ ନାହାନ୍ତି। କେତେବାର କହିଚି ଟିକିଏ ବୁଲି ଆସିବାକୁ। ହସି ସେ ଉତ୍ତର ଦିଅନ୍ତି, ବଦ୍ରିକା ଯିବି କି କାରଣେ ? ସେଦିନ ହଠାତ୍ ସେ ନିଜେ ମୋତେ କହିଲେ-

ହରିହର, ଚାଲ ହେ ଟିକିଏ ପୁରୀ ଯାଇ ସମୁଦ୍ରସ୍ନାନ କରି ଆସିବା।

ଦ୍ୱିଧା ନକରି ବାହାରି ପଡ଼ିଲି ତାଙ୍କ ସହିତ।

ପୁରୀରେ ରହିବାର ତିନିଦିନ ହୋଇଗଲା, କିନ୍ତୁ ବୁଲିବାକୁ ଆସି ମଧ୍ୟ ତାଙ୍କର ନିୟମର ବ୍ୟତିକ୍ରମ ଘଟିନାହିଁ। କାହିଁକି ପୁରୀ ଆସିଥିଲେ, ସେଇ ଜାଣନ୍ତି। ଦିନେ ସକାଳେ ସମୁଦ୍ରକୂଳରେ ବୁଲୁବୁଲୁ ଜଣେ ରୁଗ୍‌ଣା ଭଦ୍ରମହିଳା ହଠାତ୍ ତାଙ୍କୁ ନମସ୍କାର କରି ସାମନାରେ ଛିଡ଼ା ହେଲେ।

କୃପାନିଧି ଚିହ୍ନି ନ ପାରି ନିର୍ବାକ ଭାବରେ ଅନାଇ ରହିଲେ।

- ମୁଁ ସୁପ୍ରିୟା, ଭଦ୍ରମହିଳା ହସି କହିଲେ।

- ସୁ-ପ୍ରି-ୟା ! କଅଣ ହୋଇଛି ଆପଣଙ୍କର ?

– ଯକ୍ଷ୍ମା ।

କୃପାନିଧି କିଛିକ୍ଷଣ ଶୂନ୍ୟଦୃଷ୍ଟିରେ ଚାହିଁ ରହି କହିଲେ, ଯକ୍ଷ୍ମା ତ ଆଜିକାଲି ଭୟଙ୍କର ରୋଗ ନୁହେଁ। ଚିକିତ୍ସା ହେଉଚି ତ ?

– ହଁ, ସେମିତି ହଉଚି। ତାଙ୍କର କ୍ଷମତା ଏତେ ନାହିଁ ଯେ ଏହାର ଉପଯୁକ୍ତ ଚିକିତ୍ସା ପାଇଁ ପଇସା ଖରଚ କରି ପାରିବେ। ପିଲାଝିଲା ତ ଢେର ଅଛନ୍ତି।

– ତା'ତ ସତ। କେତେଦିନ ଏଠାରେ ଅଛନ୍ତି ?

– ଦଶଦିନ ହେବ ଆସିଚି। ବୋଧହୁଏ ଆଉ ମାସେ ରହିବି।

– ହଉ ତେବେ ମୁଁ ଆସେ।

– ଆଚ୍ଛା, ଆସନ୍ତୁ।

କୃପାନିଧି ଏହାପରଠୁ ଆଉ କଥାଟିଏ ସୁଦ୍ଧା କହି ନାହାନ୍ତି। ସେହିଦିନ ଆମେ କଟକ ଫେରି ଆସିଲୁ ଯଦିଚ ଆଉ ତିନିଦିନ ରହିବାର ତାଙ୍କର ଇଚ୍ଛା ଥିଲା।

ଏହାତ ସାତ ଦିନ ପରେ ହଠାତ୍ ଖବର ପାଇଲି କୃପାନିଧି ବାହାରିଚନ୍ତି ମଦନାପଲ୍ଲୀ ଯକ୍ଷ୍ମା ହାସପାତାଳକୁ। ସାଙ୍ଗେସାଙ୍ଗେ ଗଲି ତାଙ୍କ ଘରକୁ। ଇଏ କଅଣ ! ଇଏ ଯେ କୃପାନିଧିଙ୍କର ପ୍ରେତାତ୍ମା ! !

– କଅଣ ହୋଇଚି ଆପଣଙ୍କର ? ଆଶ୍ଚର୍ଯ୍ୟ ହୋଇ ପଚାରିଲି।

– ଯକ୍ଷ୍ମା। କୃପାନିଧି ହସି କହିଲେ।

– ଯକ୍ଷ୍ମା ! ! ! ହଠାତ୍ ?

– ସବୁ ହଠାତ୍ ହରିହର, ସବୁ ହଠାତ୍। ଜନ୍ମ ହଠାତ୍, ମୃତ୍ୟୁ ହଠାତ୍, ସବୁ ହଠାତ୍, ଗୋଟିଏ କ୍ଷୀଣ ନିଃଶ୍ୱାସ ପକାଇ କୃପାନିଧି କହିଲେ। ସେ ଯାହା ହେଉ, ମୁଁ ଯାଉଚି ମଦନାପଲ୍ଲୀ। ଆରୋଗ୍ୟ ହେବା ପାଇଁ ନୁହଁ, ଲୋକବସତି ମଧ୍ୟରେ ଆଉ ରହିବା ମୋର ଉଚିତ ନୁହଁ ବୋଲି। ତମେ ଆସିଚ ଭଲ ହୋଇଚି। ମୁଁ ତମକୁ ଖବର ଦେଇଥାଆନ୍ତି। ଏଇ ମୋର ସାରା ଜୀବନର ହିସାବ ରହିଲା, ଏଇ ସବୁ ରହିଲା ଡାଏରି ଓ ଅନ୍ୟାନ୍ୟ କାଗଜପତ୍ର। ଏଇ ବାକ୍ସରେ ରହିଲା ମୋର ଶେଷ ଉଇଲ୍। ଉଇଲ୍ ଅନୁସାରେ ସୁପ୍ରିୟାକୁ ଦେବ ପାଞ୍ଚ ହଜାର ତା'ର ଚିକିତ୍ସା ପାଇଁ, ଗାଁରେ କେତୋଟି ନଳକୂପ ପାଇଁ ରହିଲା ତିନି ହଜାର, ଗୋଟିଏ, ଜଳସେଚନ ଯୋଜନା ପାଇଁ ରହିଲା ଦଶ ହଜାର। ଗାଁ ଇସ୍କୁଲ ପାଇଁ ରହିଲା ତିନି ହଜାର। ଏ ରହିଲା ମୋଟାମୋଟି ଖର୍ଚ୍ଚର ହିସାବ। ଆଉ ଅନେକ ଦେୟ ମୋର ଅଛି ତା'ର ହିସାବ ରଖିଗଲି।

– ଆପଣଙ୍କର ଖାଲି ସବୁ ଦେୟ, ପ୍ରାପ୍ୟ କିଛି ନାହିଁ ?

– ମୋର ପ୍ରାପ୍ୟ ମୁଁ ପାଇଚି।

ଏହାପରେ ଯେତେ ପ୍ରଶ୍ନ ମୁଁ କରିଚି ତା'ର ଉତ୍ତରରେ ହୁଁ ବା ନା ବ୍ୟତୀତ ଆଉ କିଛି ପାଇନାହିଁ ।

ସେଦିନ ରାତିଟାଯାକ ତାଙ୍କ ବାରଣ ସତ୍ତ୍ୱେ ମୁଁ ତାଙ୍କ ପାଖରେ ଥିଲି । ରାତି ପ୍ରାୟ ଗୋଟାକବେଳେ ହଠାତ୍ ନିଦ ଭାଙ୍ଗି ଯିବାରୁ ଦେଖିଲି କୃପାନିଧି ସ୍ଥିରଦୃଷ୍ଟିରେ ଉପରକୁ ଚାହିଁ ରହିଚନ୍ତି । ମୁହଁରେ ତାଙ୍କର ଅପୂର୍ବ ହସ ।

– କଅଣ ଦେଖୁଚନ୍ତି ?

– କି ଅପୂର୍ବ ବର୍ଣ୍ଣାଭା ! କୋଟି କୋଟି ସୂର୍ଯ୍ୟ, ଗ୍ରହ, ତାରା ଚକାଭଉଁରୀ ବୁଲୁଚନ୍ତି । ଏଁ, ମୁଁ କେଉଁଠିକି ଯାଇଚି ? କେଉଁଠିକି ? କିଏ ସେ ସୁନ୍ଦର ! ଆହା ସାତ ରଙ୍ଗର କି ଢେଉ ଖେଳୁଚି ଏଠି; ସେ ଢେଉ ଉପରେ କିଏ ସେ ସୁନ୍ଦର ବସିଚନ୍ତି ? ନୀଳଃ ପତଙ୍ଗୋ ହରିତୋ ଲୋହିତଃ କ୍ଷତ୍ତଡ଼ିତ ଗର୍ଭରତବଃ ସମୁଦ୍ରାଃ, ଅନାଦିମତ୍ତ୍ୱମ୍ ବିଭୁତେନ ବର୍ତ୍ତସେ ଯତୋଜାତାନି ଭୁବନାନି ବିଶ୍ୱାଃ । କହୁ କହୁ ସେ ବେହୋସ୍ ହୋଇ ପଡ଼ିଗଲେ ।

ତା ପରଦିନ ରାତି ନ ପାହୁଣୁ କୃପାନିଧି ଚାଲିଲେ ଷ୍ଟେସନ । ସାଙ୍ଗରେ ତାଙ୍କର ସାନ ଗୋଟିଏ ସୁଟ୍‌କେସ୍ । ତାଙ୍କର କାଗଜପତ୍ରଭରା ନାନା ବଡ଼ ବଡ଼ ଟ୍ରଙ୍କ ପଡ଼ିରହିଲା ତାଙ୍କର ବସାରେ, ମୋ ଜିମ୍ମାରେ । ଜଣେ ଲୋକ ଗାଧୋଇ ଯାଉ ଯାଉ କୃପାନିଧିଙ୍କୁ ଦେଖିପାରି ମୁହଁ ବୁଲାଇ ନେଇ ଚାଲିଗଲା । କୃପାନିଧି ମୋ ଆଡ଼କୁ ଚାହିଁ ଟିକିଏ ହସି କହିଲେ, ସର୍ବେ ସୁଖୀନଃ ଭବନ୍ତୁ, ସର୍ବେ ସନ୍ତୁ ନିରାମୟଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା' କଶ୍ଚିତ୍ ଦୁଃଖଭାଗ୍ ଭବେତ୍ ।

ଏ କଥାଗୁଡ଼ାକ ସେ ଏପରି ଧୀର, ଶାନ୍ତ ଭାବରେ କହିଲେ ଯେ ମନ ହେଲା ଯେପରି ତାଙ୍କର ଅନ୍ତରର କଥା, ଜୀବନର ସାଧନା ।

ଏହାପରେ ମୋର ଅନେକ ଚିଠି ଦେବା ସତ୍ତ୍ୱେ ତାଙ୍କଠାରୁ ଆଉ କୌଣସି ଜବାବ ପାଇ ନାହିଁ । ସୁପ୍ରିୟା ଦେବୀଙ୍କୁ ଟଙ୍କା ଦେବା ପୂର୍ବରୁ ହିଁ ଖବର ପାଇଥିଲି ସେ ଆଶାତୀତ ଭାବରେ ଭଲ ଆଡ଼କୁ ଗତି କରୁଚନ୍ତି ।

ଦିନେ ସକାଳେ କୃପାନିଧିଙ୍କ କାଗଜପତ୍ର ଅଣ୍ଡାଳି ଦେଖୁଥିଲି । ହିସାବ ତ ନୁହଁ, ତାଙ୍କର ଓ ଦେଶର ଷାଠିଏ ବର୍ଷର ମାଦଳା ପାଞ୍ଜି ।

# ନିର୍ବାଚନ

ଜିଲା କଲେକ୍ଟର ସାହେବ ଉଦ୍‌ବିଗ୍ନ ଭାବରେ ମୁଣ୍ଡରେ ହାତ ଦେଇ ବସି ଅଛନ୍ତି । ଚିନ୍ତାର କାରଣ, ପଶ୍ଚିମ ଆଡୁ ଖଣ୍ଡେ କଳାମେଘ ଘୋଟିଆସିଲାଣି । ଟେବୁଲ ଉପରେ ତାଙ୍କର ନାନା ନଥିପତ୍ର, ମାନଚିତ୍ର, ନୋଟବହି ଆଦି ଖେଳାମେଲା ହୋଇ ପଡ଼ିଛି । ଆଜିକି ଚାରିଦିନ ହେବ ତାଙ୍କର ଖାଇବା ଶୋଇବାର ଠିକ୍ ନାହିଁ । ଚାରିଦିନ ହୋଇଗଲା ସେ ତାଙ୍କର ଘରକୁ ଯାଇ ନାହାନ୍ତି, ସେଇ କିଲଟରି ଅଫିସ୍ ଘରେ ତାଙ୍କର ଖିଆଶୁଆ ଚାଲିଚି ।

ପାଞ୍ଚବର୍ଷ ପରେ ପୁଣି ଥରେ ନିର୍ବାଚନ ଆସିଚି । ଜିଲ୍ଲାର ପ୍ରାୟ ଏକ ହଜାର ସ୍ଥାନରେ ଭୋଟ ଗ୍ରହଣ କେନ୍ଦ୍ର ଖୋଲା ଯାଇଚି । କେଉଁ ଦୁର୍ଗମ ପାହାଡ଼ ଖୋଲ ମଝିରେ ଗୋଟିଏ କେନ୍ଦ୍ର ତ ସାତ ନଈ, ସାତ ନାଳ, ବିଲ, ଜଙ୍ଗଲ ପାରିହୋଇ ଆଉ ଗୋଟିଏ କେନ୍ଦ୍ର । ଭୋଟ ଗ୍ରହଣ ପାଇଁ ପ୍ରତ୍ୟେକ କେନ୍ଦ୍ରକୁ ଦଶଜଣ କରି ଅଫିସର ମଟରରେ ସୁବିଧାରେ ଯିବେ, ସେଠାରେ ସୁବିଧାରେ ରହିବେ ଏବଂ ଭୋଟ ଗ୍ରହଣ କାମ ସାରି ହୁଏତ ଯିବେ ସେହିପରି ଆଉ ଗୋଟିଏ ଦୁର୍ଗମ କେନ୍ଦ୍ରକୁ । ଏକାଥରକେ କଚେରୀ ହତାରୁ ବାହାରିବେ ଏହିପରି ଦୁଇଶହ ଦଳ । ସେମାନଙ୍କ ପଛେ ପଛେ ଯିବେ ଆହୁରି ପଚାଶ ସରିକି ଦଳ ଯେଉଁମାନେ ସେମାନଙ୍କ ଠାରୁ ଭୋଟ ଭରତି ବାକସ୍ ସବୁ ଆଣିବେ ଏବଂ ଦେଇ ଆସିବେ ପରବର୍ତ୍ତୀ କେନ୍ଦ୍ର ପାଇଁ ଅନ୍ୟ ବାକ୍‌ସ ସବୁ ।

କଚେରୀ ଘର ବାହାରେ ରଖା ହୋଇଛି ଅସଂଖ୍ୟ ମୋଟର ଗାଡ଼ି, କେଉଁ ମୋଟର କେତେବେଳେ କେଉଁ ଦଳ ନେଇ କେଉଁ ବାଟରେ କେତେ ଦୂର ଯିବ ତାହାର ସଂପୂର୍ଣ୍ଣ ବିବରଣୀ ସହ ଗୋଟିଏ ନିର୍ଦ୍ଦେଶନାମା ପ୍ରତ୍ୟେକ ଦଳକୁ ଦିଆସରିଲାଣି । କେଉଁଠାରେ ମେଲେରିଆର ପ୍ରକୋପ ବେଶୀ, ସେ କେନ୍ଦ୍ରକୁ ଯିବା, ଦଳ ସହିତ ଦେବାକୁ ହେବ କୁଇନାଇନ୍ ଓ ଫ୍ୟାଲୁଡିନ୍ । କେଉଁଠାରେ ସମସ୍ତ ଗ୍ରାମଟି କୁଷ୍ଠ ରୋଗାକ୍ରାନ୍ତ, ସେଠାରେ କିପରି ଭାବରେ ସାବଧାନରେ ରହିବାକୁ ହେବ ତାହାର ଗୋଟିଏ ଉପଦେଶାବଳୀ ଦିଆ ସରିଚି । ସମସ୍ତ ଜିଲାଟାର ସମସ୍ତ ଗ୍ରାମ, ରାସ୍ତା, ପ୍ରତ୍ୟେକ ଗ୍ରାମର

ଭୂଗୋଳ, ଇତିହାସ କଲେକ୍ଟର ସାହେବଙ୍କର ନଖଦର୍ପଣରେ । ସେ ନିଜେ ସମସ୍ତ ଯୋଜନା ଟିକିନିଖି ତନଖି ତିଆରି କରିଛନ୍ତି । ରାତି ଦିନ ଲାଗି ତିନିଶହ କିରାଣି ଓ ପଚାଶ ସରିକି ଅଫିସର୍ ଖଟୁଛନ୍ତି । ଥରେ ଥରେ ହୁଏତ ମହାଭୁଲ୍ ହୋଇଯାଇଚି, ସବୁ ଓଲଟପାଲଟ ହୋଇଯାଇଚି । କିନ୍ତୁ ଯେତେ ଭୁଲଭ୍ରାନ୍ତି ହେଉ କେହି କେବେ କଲେକ୍ଟର ସାହେବଙ୍କୁ ଉତ୍ତେଜିତ ହେବାର ଦେଖିନାହାନ୍ତି । ଟିକିଏ ହସି ସେ ନିଜେ କାମରେ ଲାଗି ସୁଧାରି ଦେଇଛନ୍ତି ସବୁ ଭୁଲ । ତାଙ୍କର ଅମାୟିକ ବ୍ୟବହାରରେ ସମସ୍ତେ ଆନନ୍ଦରେ ଖଟି ଚାଲିଛନ୍ତି । କଲେକ୍ଟର ସାହେବ ତାଙ୍କର ବ୍ୟବହାରରେ ଏପରି ଅବସ୍ଥା ସୃଷ୍ଟି କରିଛନ୍ତି ଯେ ଯାହାକୁ ଅଳ୍ପ କାମ ଦିଆ ହୋଇଚି ତାହାର ମନରେ ଦୁଃଖ ତାହାକୁ କାହିଁକି ବେଶୀ କାମ ଦିଆ ନଗଲା ।

ଅଧିକାଂଶ ମୋଟର ସ୍ୱ ସ୍ୱ ଗନ୍ତବ୍ୟ ସ୍ଥାନକୁ ବାହାରି ଗଲେଣି । ଆଉ କେତେକ ମୋଟର ସ୍ୱ ସ୍ୱ ଦଳ ସହିତ ନିର୍ଦ୍ଦେଶନାମା ଅପେକ୍ଷାରେ ରହିଛନ୍ତି । ସମସ୍ତଙ୍କୁ ନିର୍ଦ୍ଦେଶନାମା ଦିଆଇ ଯାତ୍ରା କରାଇଦେଇ କଲେକ୍ଟର ସାହେବ କପେ ଚାହା ଖାଇ ନିଜ କଚେରୀ ଘରୁ ପଦାକୁ ବାହାରିଲେ । ଚିନ୍ତିତ ଭାବରେ ସେ ମୁହଁ ଟେକି ଆକାଶକୁ ଚାହିଁଲେ । ପଶ୍ଚିମ ଆକାଶରେ ସେହି କ୍ଷୁଦ୍ର କଳାମେଘ ଖଣ୍ଡକ ଆକାଶର ଅଧ ପର୍ଯ୍ୟନ୍ତ ମାଡ଼ି ଆସିଲାଣି । ପବନ ଧୀରେ ଧୀରେ ବହିବାକୁ ଆରମ୍ଭ କରିବ ତାହାର ସୂଚନା ଦେଲାଣି । କଚେରୀ ହତାର ଗଛସବୁ ଆପତ୍ତି ଜଣାଇ ମୁଣ୍ଡ ହଲାଉଚନ୍ତି । କଲେକ୍ଟର ସାହେବ ବୋଧହୁଏ ଆପତ୍ତି ଜଣାଇ ମୁଣ୍ଡ ହଲାଇଲେ । ତାଙ୍କର ଚିନ୍ତାର କାରଣ, ଯଦି ଝଡ଼ ବର୍ଷା ହୁଏ ତେବେ ମଙ୍ଗଳପୁର ଦଳ କଦାପି ଗନ୍ତବ୍ୟ ସ୍ଥାନରେ ଭୋଟ ପୂର୍ବରୁ ପହଞ୍ଚି ପାରିବେ ନାହିଁ ।

ନାଳବନ୍ଧରେ ଷାଠିଏ ମାଇଲ ଯିବା ପରେ ସେଠାରୁ ବିଲ ମଝିରେ ଯିବାକୁ ହେବ ଦଶ ମାଇଲ । ସେ ଦଶ ମାଇଲ ମୋଟର କୌଣସି ଉପାୟରେ ଯାଇପାରେ । କିନ୍ତୁ ତା ପରେ ନଦାରତ୍ । ତା ପରେ ନଦୀ ପାରି ହୋଇ ବିଲ ମଝିରେ ଚାଲିବାକୁ ହେବ ଚାରି ମାଇଲ୍ । ତା ପରେ ଆଉ ଗୋଟିଏ ନଦୀ । ସେ ନଦୀ ପାରିହୋଇ ପୁଣି ଚାଲିବାକୁ ହେବ ଦୁଇ ମାଇଲ । ତା ପରେ ପଡ଼ିବ ଗୋଟିଏ ଜଙ୍ଗଲ, ଅଗ୍ନାଗ୍ନି ବନସ୍ତ କହିଲେ ଚଳେ । ସେହି ଜଙ୍ଗଲ ମଝିରେ ଗୋଟିଏ ଗାଁ, ନାଁ'ଟି ତାର ମଙ୍ଗଳପୁର । ଭୂଗୋଳ ପୋଥି ପତରରେ ପଛେ ନଥାଉ ତାର ନାଁ'ଟି, କିନ୍ତୁ କଲେକ୍ଟର ସାହେବଙ୍କ ପୋଥିପତରରେ ତା'ର ନାଁ ତଳେ ଦିଆ ହୋଇଚି ଦୁଇଟି ମୋଟା ମୋଟା ନାଲିଆ ଗାର ଏବଂ ତାଙ୍କ ମାନଚିତ୍ରରେ ସେ ନାଁ'ର ଚାରିପଟେ ଗୋଟିଏ ନାଲିଆ ମୁଣ୍ଡୁଳା ଦିଆହୋଇଚି । ଗାଁଟିର ଅଧିକାଂଶ ହରିଜନ ।

କଲେକ୍ଟର ସାହେବ ଚିନ୍ତାକୁଳ ଭାବରେ ବୁଲବୁଲୁ ପଚାରିଲେ, କିଛି ଖବର ଆସିଲା ?

ଜଣେ ଅଫିସର କହିଲେ, ସବୁ ଦଳ ସେମାନଙ୍କର ନିଜ ନିଜ କେନ୍ଦ୍ରମାନଙ୍କରେ ପହଞ୍ଚି ଯାଇଥିବାର ଖବର ବର୍ତ୍ତମାନ ଆସିଲା, କେବଳ ମଙ୍ଗଳପୁର ସଂବାଦ ଏ ପର୍ଯ୍ୟନ୍ତ ଆମେ ପାଇନୁ।

- ହୁଁ। ମିଶ୍ରବାବୁଙ୍କୁ ଟିକିଏ ଡାକି ଦିଅନ୍ତୁ ତ। ସେ ତିନିଖଣ୍ଡ ମୋଟର ନେଇ ଯାଆନ୍ତୁ ମଙ୍ଗଳପୁର ଆଡ଼େ। ବିଲରେ ଯଦି କୌଣସି ମଟର କାଦୁଅରେ ଅଟକି ଯାଇଥାଏ,...ଆଚ୍ଛା ଚାଲନ୍ତୁ ମୁଁ ନିଜେ ଯାଉଚି ତାଙ୍କ ପାଖକୁ।

ମିଶ୍ରବାବୁ ଓ ଅନ୍ୟାନ୍ୟ କେତେଜଣ ଅଫିସର ଦୁଇ ରାତି ଦୁଇ ଦିନ ଖଟିବା ପରେ ସେତେବେଳେ ଗୋଟିଏ ଘରେ ବିଶ୍ରାମ କରୁଚନ୍ତି। ଚାହା ଓ ସିଙ୍ଗିଡ଼ା ଖାଇବା ମଝିରେ ମଝିରେ ଚାଲିଚି ରାଜନୈତିକ ଦର୍ଶନ ଆଲୋଚନା।

ମିଶ୍ରବାବୁ କହିଲେ, ଲୋକଶାସନ ସଫଳ କରିବାକୁ ହେଲେ ଆଗ ଦରକାର ବ୍ୟାପକ ଶିକ୍ଷା। ମୁଁ କଦାପି ବିଶ୍ୱାସ କରି ପାରେ ନା ଯେ ଅଇଣ୍ଠୁ ମଳିକ ସବୁ ବୁଝିସୁଝି ତାର ଭୋଟଟି ଦଉଚି। ସେ କଅଣ ଜାଣେ କାଶ୍ମୀର ସମସ୍ୟା ବିଷୟରେ, ସେ କଅଣ ଜାଣେ ବାନ୍ଦୁଙ୍ଗ ସମ୍ମିଳନୀ, ପଞ୍ଚଶୀଳ ନୀତି ବିଷୟରେ, ବା ସେ କଅଣ ଜାଣେ ପଞ୍ଚବାର୍ଷିକ ଯୋଜନା ବିଷୟରେ ? ସେ ତା'ର ନିଜ ଦାୟିତ୍ୱ ତୁଲାଇବାକୁ ଉପଯୁକ୍ତ ଶିକ୍ଷା ପାଇ ନାହିଁ। ତାକୁ ସେ ଶିକ୍ଷା ଦିଆ ହୋଇନାହିଁ, ତାକୁ ଦୁଇଟି ଟଙ୍କା ଯିଏ ଦବ ସେ ତାକୁ ଭୋଟ ଦେବ। ଅତଏବ...

କଲେକ୍ଟର ସାହେବ ଏହି ସମୟରେ ଘର ଭିତରକୁ ପଶିଯାଇ ଅଳ୍ପ ହସି କହିଲେ, ସେ କଥା ଯଥାର୍ଥ। କିନ୍ତୁ ଆପଣ ଅଇଣ୍ଠୁ ମଳିକକୁ ଯେତେ ନିର୍ବୋଧ ମନେ କରୁଚନ୍ତି ବାସ୍ତବରେ ସେତେ ନିର୍ବୋଧ ସେ ନୁହେଁ। ତାର ରାଜନୈତିକ ଚେତନା କ୍ରମେ କ୍ରମେ ବିକାଶ ଲାଭ କରୁଚି। ମୁଁ ମୋର ଗସ୍ତବେଳେ ଲକ୍ଷ୍ୟ କରିଚି ଗତ ନିର୍ବାଚନଠାରୁ ଏ ନିର୍ବାଚନ ବେଳକୁ ଲୋକେ ଟିକିଏ ବେଶୀ ବୁଝିବାକୁ ଆରମ୍ଭ କଲେଣି। ଆଉ ଦୁଇଟି ନିର୍ବାଚନ ପରେ ଲୋକେ ଆହୁରି ବୁଝିଯିବେ। ଲୋକେ ଶିକ୍ଷା ପାଇ ସାରିବା ପର୍ଯ୍ୟନ୍ତ ଏକଛତ୍ର ଶାସନ ଚାଲିବ, ଏହା କ'ଣ ଆପଣ ଚାହାନ୍ତି ? ଲୋକଶାସନର ସଫଳତା ପାଇଁ ଆଉ ଗୋଟିଏ ପ୍ରଧାନ ଉପାଦାନ ହେଉଚି ଯେ ଯାହାକୁ ଯେତିକି କାମ ଦିଆ ହୋଇଚି ସେ ତାହା ପ୍ରାଣପଣେ ତୁଲାଇବାକୁ ଚେଷ୍ଟା କରିବାର ଦାୟିତ୍ୱବୋଧ। ଲୋକଶାସନରେ କୌଣସି କାମ ବଡ଼ ନୁହେ କି କୌଣସି କାମ ଛୋଟ ନୁହେଁ; ଆମର ଦାୟିତ୍ୱ, ବର୍ତ୍ତମାନ ନିର୍ବାଚନ କାର୍ଯ୍ୟ ନିର୍ବିଘ୍ନରେ...

ବିଲୁଆ କହୁଚି କୁକୁରକୁ, ବିଲୁଆ କହୁଚି କୁକୁରକୁ, ବିଲୁଆ କହୁଚି କୁକୁରକୁ। ମୋର ସମ୍ବାଦ କଲେକ୍ଟର ସାହେବଙ୍କୁ ଜଣାଅ। ବର୍ତ୍ତମାନ ସମ୍ବାଦ ମିଳିଲା ମଙ୍ଗଳପୁର ଦଳ ମଙ୍ଗଳପୁରରେ ପହଞ୍ଚି ଗଲେଣି। 'ସମାପ୍ତ'

ଅଦୂରେ ରଖା ହୋଇଥିବା ବେତାରଯନ୍ତ୍ରରୁ ଉକ୍ତ ସମ୍ବାଦ ପ୍ରଚାରିତ ହେଲା। ନିମିଷକେ କଲେକ୍ଟର ସାହେବଙ୍କର ବଦନରେ ଆନନ୍ଦର ହସ ଖେଳିଗଲା। ଏହି ସମୟରେ ମଧ୍ୟ ଗୋଟିଏ ପାରାବତ ଉଡ଼ି ଉଡ଼ି ଆସି ବସିପଡ଼ିଲା ତାହାର ପିଞ୍ଜରା ଉପରେ। ଗୋଡ଼ରେ ବନ୍ଧା ହୋଇଚି ତାହାର ଖଣ୍ଡେ କାଗଜ। ପାରାରକ୍ଷକ ସେ କାଗଜଟି ଆଣି କଲେକ୍ଟର ସାହେବଙ୍କୁ ଦେଲେ। କଲେକ୍ଟର ସାହେବ କାଗଜଟି ପଢ଼ି କହିଲେ, ଆସନ୍ତୁ, ଆମେ ସିଂହମାନେ ଏଥର ଜଳଖିଆ ଖାଇବା।

ମଙ୍ଗଳପୁରରେ ଭୋଟଦଳ ପହଞ୍ଚିଲେ ସନ୍ଧ୍ୟା ସମୟରେ। ଦଳଟି ଗାଁ ନିଃ ପ୍ରାଃ ବିଦ୍ୟାଳୟରେ ସେମାନଙ୍କ ଆସ୍ଥାନ ଜମେଇସାରିଲେଣି। ସେମାନଙ୍କ ସାଙ୍ଗରେ ଦିଆ ହୋଇଥିବା ପେଟ୍ରୋମ୍ୟାକ୍‌ସ ଆଲୁଅ ସଗର୍ଜନେ ଜଳୁଛି। କାଲି ଭୋଟ ଗ୍ରହଣ ପାଇଁ ସେମାନେ ପ୍ରସ୍ତୁତ ହେଉଚନ୍ତି। ଗାଁର ଦଫାଦାର, ଚୌକିଦାର ସେମାନଙ୍କ ପାଇଁ ଖାଦ୍ୟ ସାମଗ୍ରୀ ଯୋଗାଡ଼ କରିବାରେ ଲାଗିପଡ଼ିଚନ୍ତି। ସେମାନଙ୍କୁ କଲେକ୍ଟର ସାହେବଙ୍କ ଆଦେଶ ଯେ ଭୋଟଦଳକୁ ଯେପରି କୌଣସି ସାମାନ୍ୟ ଅସୁବିଧା ଭୋଗ କରିବାକୁ ନ ପଡ଼େ।

ଖଣ୍ଡେ ଦୂରରେ ଗୋଟିଏ ନିର୍ବାଚନସଭା ଚାଲିବ। ତାର କିଛି ଦୂରରେ ଆଉ ଗୋଟିଏ ନିର୍ବାଚନସଭା ମଧ୍ୟ ଚାଲିଚି। ଡାକବାଜି ଯୋଗେ ପ୍ରତ୍ୟେକେ ନିଜ ନିଜ ପ୍ରଚାର ଚଳାଇଛନ୍ତି। ମଙ୍ଗଳପୁର ଗ୍ରାମ ନିର୍ବାଚନ ପାଇଁ ଲଢ଼ୁଛନ୍ତି ଦୁଇଟି ଦଳ। ଏଇ ଯେ ଅଇଣ୍ଠୁ ମଳିକ, ସଜନୀ ବେଓ୍ୱା, ଅଗାଧୁ ସୁଇଁ, ଦନେଇ ସାହୁ, ଦୁଲୀ ଦେଈ, ନଣ୍ଡା ଦାସ ପ୍ରଭୃତି ଅର୍ଦ୍ଧନଗ୍ନ ଅବସ୍ଥାରେ ବସି ବୋକାଙ୍କ ଭଳି ବଡ଼ ବଡ଼ ଆଖିରେ ଶୁଣୁଚନ୍ତି ବକ୍ତୃତା, ସେମାନେ କାଲି ବିଚାର କରିବେ କେଉଁ ଲୋକ ତାଙ୍କର ହାଲ୍ ହରକତ ବୁଝିବା ପାଇଁ ଉପଯୁକ୍ତ, କେଉଁ ଦଳ କାଶ୍ମୀର ବିଷୟରେ ସହଜ ସମାଧାନ କରିପାରିବ, କେଉଁ ଦଳ ପୃଥିବୀ ଯୁଦ୍ଧ ବନ୍ଦ କରି ପାରିବ। ସେମାନଙ୍କୁ ମୂର୍ଖ, ଅଜ୍ଞ, ନିର୍ବୋଧ ଜନତା ଭାବନ୍ତୁ ନାହିଁ; ସବୁ ବିଷୟରେ ସେମାନଙ୍କର ଗୋଟାଏ ମୋଟାମୋଟି ଧାରଣା ଅଛି ଏବଂ ସେହି ମୋଟାମୋଟି ଧାରଣା ଦେଖାଯାଉଛି ସବୁ ଶାସ୍ତ୍ରର ଶେଷ ସିଦ୍ଧାନ୍ତ। ସପନି ମଳିକ ମୁଣ୍ଡ ଟୁଙ୍ଗାରି କିଣେଇ ସାହୁକୁ ବୁଝାଉଚି, ଆରେ କଥାଟା ବୁଉଝୁ। ବୋଇଲା, ଦୟା ଦାକ୍ଷିଣ୍ୟ ସେବା ଫଳେ, କିମ୍ବା ଅସାଧ୍ୟ ମହୀତଳେ।

କିଣେଇ ସାହୁ କିଛିକ୍ଷଣ ଆବାକାବା ହୋଇ ସପନି ମଳିକକୁ ଚାହିଁ କହିଲା,

କଅଣ କହୁଚ ବା ! ! ତା କଥାକୁ ତମ କଥା ଖାପ ଖାଇଲା ଟି ? ନା, ନା, କୁହ ମତେ, ତମ କଥା ତା କଥାକୁ ଖାପ ଖାଇଲା ? ଖାପ ଖୋଇ, କଥାକୁ କଥା ଖଞ୍ଜି କହିଲେ ହବନା, ଇଆଡୁ ସିଆଡୁ କହିଲେ ଚଳିବ ?

ସପନି ମଳିକ ରାଗିଯାଇ ଧଡ଼ପଡ଼ ହୋଇ ଉଠି ବସି କହିଲେ, ବୋଇଲା କେତେ ଦିନକୁ ମନ କରିଚୁ ଆଣ୍ଟ, କି ଘେନିଯିବୁ ତୋର ଛୁଟିଲେ ଘଟ....

କିଶେଇ ସାହୁ ଖଣ୍ଡେ ବାଟ ଘୁଞ୍ଚିଯାଇ କହିଲା, ଘଟ କଅଣ ମୋର ଏକା ଛୁଟିବ କି ହେ, ସେ କାଳ ଆଉ ନାହିଁ। ଗୁପ୍ତ୍ୟାନ୍ତେ ସେ ଦଳ ପାଖରୁ ଥୋଡ଼େ ଟଙ୍କା ଲୁଗା ପାଇଯାଇଚ ନା...ସବୁ ଜଣା, ଛାଡ଼। ଶୁଣ କଅଣ କହୁଚି ସେ।

ଡାକବାଜି ଯୋଗେ ବକ୍ତା ପଚାରିଲେ, ମୁଁ ଆପଣମାନଙ୍କୁ ଗୋଟିଏ ଅତି ସାଧାରଣ କଥା ପଚାରିବି। ମୋତେ କୁହନ୍ତୁ ଆମ ଦେଶରେ କଅଣ ଲୋକ ନାହାନ୍ତି ଯେ ଏଠୁ ଜଣେ ଅଣଓଡ଼ିଆ ଛିଡା ହୋଇଚି ?

ସମସ୍ତ ଜନତା ଆଶ୍ଚର୍ଯ୍ୟ ହୋଇ ପରସ୍ପରକୁ ଚାହିଁଲେ। ହାଡୁ ସାନ୍ତରା ସଭଯେ ପଚାରିଲା, ଅଣଓଡ଼ିଆ କିଏ ? ଜଣେତ ମିଶ୍ରେ, ଆଉ ଜଣେତ ଛୋଟରାୟେ, ଦି ଜଣତ ଆମରି ଗାଁ ଲୋକ ! !

ପ୍ରଚାରକ କହିଲେ, ହାଁ, ସେଇଠି ତ କଥା। ଛୋଟରାୟେ ଆମ ଗାଁ ଲୋକ, ହେଲେ ଆମରି ଗାଁ ଲୋକ ନୁହନ୍ତି। ସେ ହେଉଛନ୍ତ ଦିଲ୍ଲୀବାଲା। ସେ ଯାହା କହିବେ, ଯାହା କରିବେ ଦିଲ୍ଲୀ ନିର୍ଦ୍ଦେଶ ପାଇଲେ କରିବେ। ଆପଣମାନଙ୍କୁ ପଚାରି, ଆପଣମାନଙ୍କ ପରାମର୍ଶ ନେଇ କରିବେ ନାହିଁ। ତାଙ୍କର ତନୁ, ମନ, କାନ ସବୁ ଦିଲ୍ଲୀରେ, ଏ ଗାଁରେ ନାହିଁ; ଏ ଗାଁରେ ଅଛି ତାଙ୍କର ପ୍ରେତ। କୁହନ୍ତୁ ତେବେ ସେ ଦିଲ୍ଲୀବାଲା ନା ଏଇ ଗାଁ ଲୋକ।

ଜନତା ନିର୍ବାକ୍।

ସେ ଦଳ ପ୍ରଚାରକ ଡାକବାଜି ଯୋଗେ କହୁଚନ୍ତି, ଏ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ହେଉଚନ୍ତି ମା’ ହିଙ୍ଗୁଳା। ତାଙ୍କର ଶ୍ରୀଚରଣରେ ମୋର କୋଟି କୋଟି ପ୍ରଣାମ। (ନୀରବରେ ପ୍ରଣାମ କରିବା ପରେ) ନା, ମା, ତୁ ତୋ ବାହୁଛାୟା ତଳେ ଏମାନଙ୍କୁ ରକ୍ଷା କର। କୁହନ୍ତୁ, ମା’ ହିଙ୍ଗୁଳେଈ କେଉଁଠି ଅଛନ୍ତି। ସେ ଯେଉଁ ବରଗଛରେ ଅଛନ୍ତି ସେଇ ବରରେ ଆମର ଚିହ୍ନ-। ଏଥର ଆପଣମାନେ ବିଚାର କରନ୍ତୁ ଭୋଟ କାହାକୁ ଦେବେ।

ଜନତା ନିର୍ବାକ୍ ।

ଅସଣା ଷଣ୍ଢେ କିଛିକ୍ଷଣ ପରେ ଛିଡ଼ା ହୋଇ କହିଲେ, ମା’ ହିଙ୍ଗୁଳେଈ କଥା

ଯଦି କହିଲେ ତେବେ ମୁଁ କହୁଚି ଶ୍ରବଣ କରନ୍ତୁ। ମା' ହିଙ୍ଗୁଳେଈ ଆଜି ଶହେ ବର୍ଷ ହେବ ସେହି ଗଛମୂଳେ ଖରାବର୍ଷା କାକରରେ ପଡ଼ିଛନ୍ତି। ଗୋଟିଏ ସାନ ପକ୍କାଘର ତାଙ୍କ ପାଇଁ କରିଦେବାକୁ ଆମେ ଦରଖାସ୍ତ କରି କରି ହଇରାଣ ହେଲୁଣି। ଶେଷ ଦରଖାସ୍ତ ଖଣ୍ଡକ ପଢୁଚି ଶୁଣନ୍ତୁ। "ଶ୍ରୀ ଶ୍ରୀ ଶ୍ରୀ ପ୍ରଧାନମନ୍ତ୍ରୀ ମହୋଦୟ ସମୀପେଷୁ ଧର୍ମାବତାର ! ମା' ହିଙ୍ଗୁଳେଈଙ୍କ ଚରଣେ ଶରଣ। ମା' ହିଙ୍ଗୁଳେଇଙ୍କ ଚରଣେ ଶରଣ। ମା' ହିଙ୍ଗୁଳାଇ ଆପଣଙ୍କୁ ଦୀର୍ଘଜୀବୀ କରନ୍ତୁ। ଦରଖାସ୍ତର କାରଣ ଏହିକି ଯେ ଆମ୍ଭଗ୍ରାମର ମା' ହିଙ୍ଗୁଳାଇ ପ୍ରତ୍ୟକ୍ଷ ଦେବୀ ଅଟନ୍ତି। ଆମେ ଏହାର ବହୁ ପ୍ରମାଣ ପାଇଅଛୁ। ଆଜିକି ବହୁବର୍ଷ ଧରି ଆମ୍ଭ ଗ୍ରାମର ଷଠୀ ବରଗଛ ତଳେ ସେ ବିଜେ ଅଛନ୍ତି। ଏଥକୁ ଖରାବର୍ଷାରେ ତାଙ୍କୁ ବଡ଼ ହଇରାଣ ହେଉଅଛି। ସେ ଗଛରେ ଭୂତ ପ୍ରେତ ଆଦି ବାସ କରୁଥିବାରୁ ରାତିରେ ଭୟରେ କେହି ପୂଜା କରିବାକୁ ଯାଇ ପାରୁ ନାହାନ୍ତି। ଆଜକୁ ଚାରିଦିନ ତଳେ ମା' ଆମ୍ଭ ଗ୍ରାମର କାଳସୀକୁ ସ୍ୱପ୍ନରେ କହିଛନ୍ତି ଯେ, ସେ ଗୋଟିଏ ପକ୍କାଘରେ ରହିବାକୁ ଚାହାନ୍ତି। ଆମ୍ଭଗ୍ରାମର ଅଧିକାଂଶ ଦରିଦ୍ର ହରିଜନ ଥିବା ସତ୍ତ୍ୱେ ଆମ୍ଭେ ମା'ଙ୍କ ପାଇଁ ଗୋଟିଏ ପକ୍କା ଘର କରିବାକୁ ଅସମର୍ଥ ଥିବା ଏବଂ ଉପଯୁକ୍ତ ସ୍ଥାନ ନ ଥିବା ହେତୁରୁ ଆମ୍ଭମାନଙ୍କର ବିନୀତ ପ୍ରାର୍ଥନା କି..."

ପ୍ରଚାରକ ବାଧା ଦେଇ କହିଲେ, ହବ, ସବୁ ହବ, କେତେ ଟଙ୍କା ଆପଣଙ୍କର ଦରକାର କୁହନ୍ତୁ।

ସପନି ମଳିକ ଛିଡ଼ା ହୋଇ କହିଲେ, ବୋଇଲା, ଯାହା ନୋହିଲା ବାଲ୍ୟକାଳେ, ତାହା ନୋହିବ ପାଚିଲା ବାଳେ।

ଏହି ସମୟରେ ପଟୁଆର ସହ ରଙ୍ଗସ୍ଥଳରେ ପ୍ରବେଶ କଲେ ଦଳର ପ୍ରଧାନ ନେତା। ସେ ରାଜନୈତିକ ଦର୍ଶନ, ପଞ୍ଚବାର୍ଷିକ ଯୋଜନା, କାଶ୍ମୀର ପ୍ରଶ୍ନ ଆଦି ପ୍ରାଞ୍ଜଳ ଭାବରେ ବୁଝାଇବା ପରେ ସଭା ଭଙ୍ଗ ହେଲା। ସମସ୍ତେ ଯେ ଯାହା ଘରକୁ ବାହୁଡ଼ିଲେ।

ପରଦିନ ସକାଳୁ ଭୋଟଗ୍ରହଣ କାର୍ଯ୍ୟ ଆରମ୍ଭ ହେଲା। ପ୍ରଥମେ ଭୋଟ ଦେଲେ ବୃଦ୍ଧ ଦନେଇ ପ୍ରଧାନ। ଖଣ୍ଡେ ମଇଳା ଗାମୁଛା ପିନ୍ଧିଛନ୍ତି। ଗାମୁଛାର ଗୋଟିଏ ପାଖ ଚିରା ଥିବାରୁ ଫାଳେ ପିଚା ଦିଶୁଚି। କାଖରେ ଗୋଟିଏ ଦାଆ ଗୁଞ୍ଜି ସେ ପହଞ୍ଚିଗଲେ ଭୋଟ ଦେବାକୁ। ସେ କାହାକୁ ଭୋଟ ଦେଲେ କେଜାଣି !!

ତା' ପରେ ପରେ ଚାଲିଲା ଭୋଟଦାତାଙ୍କ ସ୍ରୋତ। ବାହାରେ ଜମିଗଲେଣି ଅନେକ ସ୍ତ୍ରୀ ଲୋକ। ମୁଖ୍ୟ ନିର୍ବାଚନ ଅଫିସର୍ ଆଦେଶ ଦେଲେ, ଏଥର ସ୍ତ୍ରୀଲୋକମାନଙ୍କୁ ଛାଡନ୍ତୁ।

ପ୍ରଥମେ ଗଲା ଦୁଲୀ ଦେଈ। ୨୩ବର୍ଷ ବୟସ। କୁନ୍ଦା କୁନ୍ଦା ଦେହ। ସୁପୁଷ୍ଟ

ବର୍ତ୍ତୁଳ ନିତମ୍ବ । ଉପରେ ରୁପାର ଗୋଠ ଅଙ୍ଗଶୋଭା ଆହୁରି ବଢ଼ାଇ ଦେଇଛି । କପାଳରେ ଗୋଟିଏ ବଡ଼ ସିନ୍ଦୂର ଟୋପା । ସଖୀ କାନ୍ଧରେ ହାତ ରଖି ସେ ବଙ୍କିମଠାଣିରେ ଛିଡ଼ା ହେଲେ ପ୍ରଥମ ଅଫିସର୍‌ଙ୍କ ପାଖରେ ।

- ନାଁ କଅଣ ? ପଚାରିଲେ ଅଫିସର୍ ।

ଉତ୍ତର ନାହିଁ, କେବଳ ଟିକିଏ ମୁରୁକି ହସ ।

- ନାଁ  କଅଣ ?

ଉତ୍ତର ନାହିଁ । ସଖୀ କହୁଣିରେ ଟିକିଏ ଠେଲିଦେଲେ ।

- ନାଁ କଅଣ, କୁହ । ଅଫିସର୍ ଟିକିଏ ବିରକ୍ତ ହେଲେଣି ।

ଧୀରେ ଓଢ଼ଣା ତଳୁ ଶୁଭିଲା, ଦୁଲୀ ଦେଈ ।

- ଦୁଲୀ ଦେଈ ?

ଉତ୍ତର ନାହିଁ । କେବଳ ଟିକିଏ ମୁଣ୍ଡ ଟୁଙ୍ଗୁରା ।

- ସ୍ୱାମୀ ନାଁ ରଘୁଆ ଭୋଇ ? ଅଫିସର୍ ଭୋଟର ତାଲିକା ଦେଖି ପଚାରିଲେ ।

ଦୁଲୀ ଦେଈ ସଲଜ୍ଜେ ସଖୀ କାନ୍ଧରେ ମୁଣ୍ଡ ରଖି ତାଙ୍କ କାନେ କାନେ କହିଲେ, ଆଗୋ ସହି, ଇୟେ ତାଙ୍କର ନାଁ ବି ଜାଣନ୍ତି ! ! !

ଦୁଲୀ ଦେଈ କାହାକୁ ଭୋଟ ଦେଲେ କେଜାଣି ।

# ଲଡ୍ଡୁ

ଚୌଧୁରୀବଜାର ଡେଇଁବା ମାତ୍ରକେ ପରେଶବାବୁ ଆଉ ବାଁ ଆଡ଼କୁ ମୁହଁ କରନ୍ତି ନାହିଁ। ବଜାରଥିଳିଟି ଜୋରରେ ହଲେଇ ବେଗେବେଗେ ପାହୁଣ୍ଡ ପକାଇ ଡାହାଣ ଆଡ଼କୁ ଅନେଇ ଅନେଇ ଚାଲି ଯାଆନ୍ତି; ଦେଖିଲେ ମନେହୁଏ ବାଁ କାନ୍ଧରେ ବୋଧହୁଏ ରକା ପଶିଚି। ମ୍ୟୁନିସିପାଲଟି ବଜାର ନିକଟ ହେଲେ ଯାଇ ସେ ମୁହଁ ଫେରାନ୍ତି। ଆଜି କିନ୍ତୁ ଗୋଟାଏ ଗାଇ ଶିଙ୍ଘ ବାଗେଇ ହଠାତ୍ ମାଡ଼ି ଆସିବାରୁ ସେ ଚମକି ପଡ଼ି ଚାହିଁଛନ୍ତି କି ନାହିଁ ଗୋଟାଏ ପ୍ରକାଣ୍ଡ ଷଣ୍ଢ ସଁ ସଁ କରି ମାଡ଼ି ଆସିଲା। ପରେଶବାବୁ ପ୍ରାଣଭୟରେ ସେହି ଦୋକାନ ଉପରକୁ ଉଠିଗଲେ, ଉଠିଯିବାକୁ ବାଧ୍ୟ ହେଲେ। ବଜାରିଆମାନେ ଖେଁ ଖେଁ କରି ହସି କହିଲେ, "ଏକାମୁହାଁ ବାବୁ ଧପାଲିଚନ୍ତି, ଇୟାଡ଼େ ଗାଇ ତାତି ରହିଚି ଖିଆଲ ନାହିଁ..." ଇତ୍ୟାଦି।

ପରେଶ ବାବୁଙ୍କ କାନରେ କିନ୍ତୁ ସବୁକଥା ଗଲା ନାହିଁ। ତାଙ୍କ ଛାତି ଭିତରୁ ଅତଡ଼ା ଖସି ପଡ଼ିଲା, କାନ ଲାଲ ପଡ଼ିଗଲା। କପାଳରେ ବିନ୍ଦୁ ବିନ୍ଦୁ ଝାଳ ଫୁଟିଉଠିଲା। ଭୟରେ ନୁହଁ, ଲୋଭରେ; ଅସହ୍ୟ ଲୋଭ। ଏହି ଲୋଭର ଦାଉ ଏଡ଼ିବା ପାଇଁ ସେ ନିଇତି ବଜାର କରି ଯିବା ସମୟରେ ଏ ଦୋକାନକୁ ନ ଚାହିଁ ଶ୍ରୀଘ୍ର ଶୀଘ୍ର ଚ଼ାଲି ଯାଆନ୍ତି। ମ୍ୟୁନିସିପାଲଟି ଯିବା ପାଇଁ ଅନ୍ୟ ଅନେକ ବାଟ ଅଛି; କିନ୍ତୁ ପରେଶ ବାବୁ ଏହି ବାଟ ଦେଇ ନ ଯାଇ ମଧ୍ୟ ରହି ପାରନ୍ତି ନାହିଁ, ତାଙ୍କ ପାଦ ଛାଏଁ ଛାଏଁ ଚାଲିଆସେ, ତାଙ୍କୁ ଆକର୍ଷଣ କରିଆଣେ ସେହି ଲଡ୍ଡୁ। ଆଜି ଏ ଲୋଭ ଦୁର୍ଦ୍ଦମନୀୟ ହୋଇ ଉଠିଚି, ଲୋଭ ସହିତ ପ୍ରଥମ ଇନ୍ଦ୍ରିୟଟା ମଧ୍ୟ କିପରି ଜାଗ୍ରତ ହୋଇଚି।

ଭାଇସ୍‌ରାୟ ଲର୍ଡ କ୍ୟାନିଙ୍ଗଙ୍କ ପତ୍ନୀ ଲେଡ଼ି କ୍ୟାନିଙ୍ଗ୍ ଲୋଭରେ ପଡ଼ିଥିଲେ। କୋଉ ଯୁଗର କଥା ସେ, ଲର୍ଡ଼ କ୍ୟାନିଙ୍ଗ୍ ଓ ତାଙ୍କ ପତ୍ନୀ ଖତ ହୋଇ ବ୍ଲାକ୍‌ବେରି ବା ଷ୍ଟ୍ର'ବେରି ଫଳେଇ, ସେହି ଫଳ ରୂପେ ପୁଣି ଆଉ କାହା ମଧ୍ୟରେ ପ୍ରବେଶ କରି, ସେ ଲୋକ ପୁଣି ମରି ଏହିପରି କେତେ ଜନ୍ମ ତାଙ୍କର ହୋଇଗଲାଣି। ବ୍ରିଟିଶ ରାଜତ୍ୱ ଯାଇ

ଭାରତ ସ୍ୱାଧୀନ ହେଲାଣି; କିନ୍ତୁ ଲେଡି କ୍ୟାନିଙ୍ଗ୍ ଅମର ରହିଗଲେ ତାଙ୍କର ଲୋଭ ପାଇଁ । ତାଙ୍କର ଅର୍ଥର ଅଭାବ ନଥିଲା, ତେଣୁ ଗୋଟିଏ ପ୍ରକାରର ମିଷ୍ଟାନ୍ନ ଲୋଭରେ ପଡ଼ି ସେ ସେହି ମିଷ୍ଟାନ୍ନ ପ୍ରଚୁର ପରିମାଣରେ କିଣି ଖାଇବାକୁ ଲାଗିଲେ । ତାଙ୍କର ନାମାନୁସାରେ ସେ ମିଠେଇର ନାଁ ହେଲା ଲେଡି କ୍ୟାନିଙ୍ଗ୍ ବା ଲେଡ଼ିକେନି । ପରେଶ ବାବୁଙ୍କ ଲୋଭ ପାଇଁ ସେ ଅମର ହୋଇ ପାରିବେ ନାହିଁ । ଭାଇସ୍‌ରାୟ ବା ପ୍ରେସିଡେଣ୍ଟ ତ ଛାଡନ୍ତୁ ସାମାନ୍ୟ ହେଡ୍‌କିରାଣି ବି ସେ ନୁହନ୍ତି । ପଚାଶ ଟଙ୍କା ଦରମାରେ ଅଦାଲତ କିରାଣି ସେ । ତାଙ୍କର ବଜେଟ ଭିତରେ ଯେଉଁ ସାମାନ୍ୟ କେତୋଟି ଡିପାର୍ଟମେଣ୍ଟ ଅଛି, ସେମାନଙ୍କ ଭିତରେ ରସନେନ୍ଦ୍ରିୟର କୌଣସି କାର୍ଯ୍ୟ ନାହିଁ । ଜିଭ ଅଛି ତାଙ୍କର କେବଳ ନେହୁରା ହବାପାଇଁ— ସେ ସ୍ତ୍ରୀ ପାଖରେ ହେଉ ବା ହାକିମଙ୍କ ପାଖରେ ହେଉ, ମହାଜନ ପାଖରେ ହେଉ ବା ଭଗବାନଙ୍କ ପାଖରେ ହେଉ । ଅବଶ୍ୟ ସେ ନେହୁରାର ଫଳ ସବୁଠି ସମାନ ।

ଧର୍ମପତ୍ନୀଙ୍କ ହୁକୁମ, ପ୍ରତ୍ୟହ ବଜାର ଆଠ ଅଣାରୁ ବେଶୀ ହବ ନାହିଁ ଏବଂ କଅଣ କଅଣ କିଣା ହେବ ସେ ବରାଦ କରିବାର ଅଧିକାର ମଧ୍ୟ ଧର୍ମପତ୍ନୀଙ୍କର ଏକଚାଟିଆ । ଯେଉଁ ତାଲିକା ସେ ଦିଅନ୍ତି ସେ ସବୁ କିଣି ଗୋଟିଏ ପଇସା ମଧ୍ୟ ପାନ ପାଇଁ ବାହାର କରିବା ଦୁଃସାଧ୍ୟ । ଥରେ ସେ ଦୋକାନୀକୁ ସଜନା ଶାଗ ଦାମରୁ ଗୋଟିଏ ପଇସା କାଟିବା ପାଇଁ ନେହୁରା କରିଥିଲେ; କିନ୍ତୁ ଯେଉଁ ଅପମାନ ଦୋକାନୀ ସେଦିନ ତାଙ୍କୁ ଦେଇଥିଲା ତା ପରଠୁଁ ସେ ଆଉ କେବେହେଁ ଦାମ୍ କାଟିବାକୁ ଚେଷ୍ଟା କରି ନାହାନ୍ତି । ଆଉ ଥରେ ସେ ତାଲିକାରେ ଥିବା କୋଶଳା ଶାଗ ସେରେ ଜାଗାରେ ତିନି ପା ଶାଗ ଆଣି ଦୁଇଟି ପଇସାରେ ଗୋଟିଏ କଇଞ୍ଚି ସିଗାରେଟ ମନ ଆନନ୍ଦରେ ଧୂଆଁ ଛାଡ଼ି ଛାଡ଼ି ଘରକୁ ଫେରିଥିଲେ । କିନ୍ତୁ ସେ ଦିନ ଘରେ ଯାହା ଘଟିଥିଲା ତା' ପରେ ସେ ଚେଷ୍ଟା ମଧ୍ୟ ସେ ଛାଡ଼ିଚନ୍ତି । ଧର୍ମପତ୍ନୀ ସେ ଦିନ ଶାଗର ପରିମାଣ ଦେଖି ସନ୍ଦେହ କରି ପଡ଼ିଶା ଘରୁ ସେର ତରାଜୁ ଆଣି ଓଜନ କରି ସାରିବା ପରେ ଯେଉଁ ସବୁ ବାକ୍ୟବାଣ୍ୟ ମାରିଥିଲେ ସେଥିରେ ପରେଶବାବୁ ଅତି କ୍ଷୋଭ ଓ ଦୁଃଖରେ ମନେମନେ ହସି କହିଥିଲେ, ହ୍ୟାପ କବିମାନେ ଖାଲି ନୟନବାଣ କଥା ଲେଖିଯାଇଛନ୍ତି ।

ପରେଶ ବାବୁ ଦୋକାନ ଉପରକୁ ଉଠିଯାଇ ସେଇ ଲଡ଼୍ଡୁ ଆଡ଼େ ଚାହିଁଲେ । ମଟରରୁ ଓହ୍ଲାଇ ଜଣେ ଭଦ୍ରଲୋକ ସେ ଲଡ଼୍ଡୁରୁ ସେରେ କିଣି ନେଇ ମଟରରେ ବସିଥିବା ଜଣେ ଭଦ୍ରମହିଳାଙ୍କ ହାତକୁ ବଢ଼ାଇଦେଲେ । ଭଦ୍ରମହିଳାଙ୍କ ଆଖି ଓ ପାତଳା ଓଠରେ ଆନନ୍ଦ ଖେଳିଗଲା । ପରେଶ ବାବୁ ତରତର ହୋଇ ଦୋକାନରୁ ଚାଲିଯିବାକୁ ବାହାରିଲେ; କିନ୍ତୁ ପାଦ ତାଙ୍କର ଆଗେଇଲା ନାହିଁ । ଆଖି ତାଙ୍କର ସେହି ମିଠେଇରେ ଲାଖି ରହିଲା । ମିଠାଇର ବାସନାରେ ନାକ ପୁଡ଼ିଆ ତାଙ୍କର ବାରମ୍ବାର ଫୁଲିଉଠିଲା ।

"ବସନ୍ତ, କଅଣ ଦେବି ?"

"ନା, ସେ ଷଣ୍ଢଟା ମାରି ଗୋଡ଼ାଇଲା ନାଁ..."

"ସେଟା ଗଲାଣି..."

"ହଁ"

ଏହା ପରେ ଦୋକାନରେ ଆଉ ରହିବାର କାରଣ ନାହିଁ। କିନ୍ତୁ ଦୋକାନରୁ ଚାଲି ମଧ୍ୟ ଯାଇପାରୁ ନାହାନ୍ତି। ଏମିତି କିଛି ନୂତନ ପ୍ରକାର ମିଠାଇ ନୁହଁ। ସେଇ ପୁରୁଣା ହଳଦିଆ ବୁନ୍ଦିଆରେ ଗୋଲ ଲଡ୍‌ଡୁ। କେବଳ ମଝିରେ ମଝିରେ ଗୋଟିଏ ଲାଲ ଓ ଗୋଟିଏ ଗୋଟିଏ ସବୁଜ ରଙ୍ଗର ବୁନ୍ଦିଆ ଦାନା ଓ ଲଡ୍‌ଡୁ ଉପରେ ଗୋଟିଏ ସୁନ୍ଦର ବଡ଼ କିସ୍‌ମିସ୍ ଓ କିଛି ପେସ୍ତା। ଏହି ରଙ୍ଗର ସମାବେଶ ଏପରି ସୁନ୍ଦର ଭାବରେ କରା ହୋଇଚ଼ି ଯେ ସମସ୍ତ ଲଡ୍‌ଡୁଟିର ଆକର୍ଷଣୀ ଶକ୍ତି ଦୁର୍ବାର ହୋଇ ପଡ଼ିଚି। ସେଥିରେ ପୁଣି ଏହି ମିଠାଇଟିର ଥାଳିଟି ଯେପରି ସାଧାରଣତଃ ଗୁଡ଼ିଆ ଦୋକାନ ଆଲମାରିରେ ମିଠାଇ ଥାଳି ସବୁ ସଜା ହୋଇ ରହିଥାଏ, ସେପରି ଭାବରେ ସଜା ହୋଇ ନାହିଁ। ଗୋଟିଏ ବେଦିଂସୁଟ୍ ପରିହିତା, ସୁପୁଷ୍ଟନିତମ୍ବିନୀ ନାରୀ, ଥାଳିଟି ତାର ବେନି ଘନ ବକ୍ଷ ନିକଟରେ ଧରି ଥାଳିଟି ଅର୍ପଣ କରିବା ଭଙ୍ଗୀରେ କାଚ ଆଲମାରି ମଧ୍ୟରେ ଛିଡ଼ା ହୋଇ ରହିଛି। ପରେଶବାବୁ ଘନଘନ ଦୁଇ ତିନିଥର ସିଆଡ଼େ ଚାହିଁ ଦୋକାନରୁ ଓହ୍ଲାଇ ଯିବାକୁ ବସିଲେ। ତାପରେ ମନେ ହେଲା କାଚ ଆଲମାରି ମଧ୍ୟରୁ ସେଇ ନାରୀମୂର୍ତ୍ତି ଖିଲିଖିଲି ହସି କହୁଚି, ଆସନ୍ତୁ ନା !

ପରେଶ ବାବୁଙ୍କ କାନ ଲାଲ୍ ପଡ଼ିଗଲା। ଆଉ ଜଣେ ଭଦ୍ରଲୋକ ସେଇ ମିଠାଇ କିଣି ନେଇଗଲେ। ପରେଶ ବାବୁଙ୍କର ମନେ ହେଲା ମିଠାଇ ଯେପରି କହୁଚି, "ନାହଂ ଧନ-ହୀନେନ ଲଭ୍ୟ।" ସେ ଦୋକାନରୁ ବାହାରି ଆସି ପାହାଚ ଉପରେ ଛିଡ଼ା ହେଲେ। ଅଦୂରରେ ରାସ୍ତା ଉପରେ ଗାଈଟି ଅପେକ୍ଷାରେ ନୀରବରେ ଛିଡ଼ା ହୋଇ ରହିଚି ଏବଂ ଷଣ୍ଢଟି ବାରମ୍ବାର ତାର ଗ୍ରୀବା ଲେହନ କରୁଚି ଏବଂ ମଝିରେ ମଝିରେ ହଠାତ୍ ବ୍ୟସ୍ତ ହୋଇ ପଡୁଚି। ପରେଶବାବୁ କଣେଇ ସେଆଡ଼େ ଥରେ ଚାହିଁ ପୁଣି ଦୋକାନ ଭିତରେ ଥିବା ସେଇ ମିଠାଇ ଥାଳିଟିକୁ ଚାହିଁଲେ। ଆଉ ଲୋଭ ସମ୍ଭାଳି ନପାରି ସେ ଦୋକାନ ଉପରକୁ ଉଠିଯାଇ ପଚାରିଲେ

– ଇୟା ଦାମ କେତେ ?

– କାହାର, 'ଦିଲମୋହିନୀ' ? ଛ' ଟଙ୍କା ।

ପରେଶ ବାବୁ ଅପ୍ରସ୍ତୁତ ଭାବରେ କହିଲେ, ନାଁ, ମୁଁ ଗୋଟି ପଚାରୁଥିଲି।

– ଗୋଟିକୁ ଛ' ଅଣା।

ଦାମ୍ ଶୁଣି ପରେଶବାବୁ ମୁହଁ ମେଲା କରି ଚାହିଁ ରହି ଭାବିବାକୁ ଲାଗିଲେ।

...ଛ' ଅଣା! ଦୁଇଅଣା ହୋଇଥିଲେ ବା ସେ ଦୋକାନୀମାନଙ୍କୁ ନେହୁରା ନେହୁରି କରି କିଛି ଦାମ କଟାକଟି କରିଦିଅନ୍ତେ। ଛ' ଅଣା, ସେତକ ସେ କେଉଁଠୁ ଯୋଗାଡ଼ କରିବେ! ଅସମ୍ଭବ। ଛାଡ଼ଃ ।

ଆଉ ଜଣେ ଦୁଇ ସେର "ଦିଲମୋହିନୀ" ନେଇଗଲେ। ପରେଶ ବାବୁ ଆଲମାରି ଭିତରକୁ ଚାହିଁଲେ। ନିତମ୍ବିନୀର ଥାଳିରେ ଆଉ ଅଳ୍ପ କେତୋଟି ମିଠେଇ ପଡ଼ିରହିଚି। ନିତମ୍ବିନୀ ବିମ୍ବୋଷ୍ଠରେ ଓ ଏଣୀ ନୟନରେ ଆହ୍ୱାନର ହାସ୍ୟ। ପରେଶବାବୁ ମୁହଁ ଫେରାଇ ନେଇ ଅନ୍ୟ ଆଡ଼େ ଚାହିଁଲେ। କ୍ଷଣେ ସଫଳତା ଲାଭ କରିଚି।

ପରେଶବାବୁ ମନ ଭିତରେ ବୈରାଗ୍ୟ ଆଣିବାକୁ ଚେଷ୍ଟା କଲେ।

...ସର୍ବଦା ସଂଯୁକ୍ତ ଓ ତୁଲ୍ୟନାମବିଶିଷ୍ଟା ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷର ଆଶ୍ରୟ ନେଇଅଛନ୍ତି। ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ୱାଦଯୁକ୍ତ ଫଳ ଭକ୍ଷଣ କରେ ଏବଂ ଅପରଟି ଭକ୍ଷଣ ନକରି କେବଳ ଦର୍ଶନ କରେ। ଏହି ଦେହବୃକ୍ଷରେ ଜୀବ ନିମଗ୍ନ ରହି ମୋହ ହେତୁ ଶୋକ କରିଥାଏ। ସେ ଯେତେବେଳେ ବିଶ୍ୱବ୍ୟାପୀ ପରମାତ୍ମାଙ୍କୁ ହୃଦୟଙ୍ଗମ କରେ, ସେତେବେଳେ ସଂସାର ଅତିକ୍ରମ କରେ।

...ପୃଥିବୀରେ ଯେତେ ଜୀବ ସୃଷ୍ଟି ହୋଇଛନ୍ତି ସମସ୍ତଙ୍କ ଦେହରେ ପଞ୍ଚେନ୍ଦ୍ରିୟ ଅଛି। କିନ୍ତୁ ଅନ୍ୟାନ୍ୟ ଜୀବମାନଙ୍କଠାରେ ପଞ୍ଚେନ୍ଦ୍ରିୟର ଆକର୍ଷଣୀ ଶକ୍ତି ରୋଧ କରିବାପାଇଁ ଚିନ୍ତାଶକ୍ତି, ବୁଦ୍ଧି ବା ଇଚ୍ଛା ନାହିଁ। ମନୁଷ୍ୟ କିନ୍ତୁ ପଞ୍ଚେନ୍ଦ୍ରିୟର ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବାର ଇଚ୍ଛା ପାଇଚି ଏବଂ ସେହି ଇଚ୍ଛା ଚରିତାର୍ଥ କରିବା ପାଇଁ ଧର୍ମ, ଦର୍ଶନ ଓ ଆଦର୍ଶ ସୃଷ୍ଟି କରିଚି। ଏ ସବୁର ଜୀବନଧାରଣ ସହିତ କୌଣସି ସମ୍ପର୍କ ନାହିଁ, ତେଣୁ ଏ ସବୁ ମିଥ୍ୟା କୁହାଯାଇପାରେ; କିନ୍ତୁ ଏ ମିଥ୍ୟାରେ ହିଁ ମନୁଷ୍ୟତ୍ୱ ନିହିତ। ଏହି ମିଥ୍ୟାନିହିତ ବସ୍ତୁ ପାଇବାର ଇଚ୍ଛା ଦ୍ୱାରା କ୍ରମବିକାଶ ନିୟମାନୁସାରେ ମନୁଷ୍ୟ ଦିନେ ଦେବତା ନ ହେବ କିଏ କହିପାରେ! ଏହି ଆଦର୍ଶ ଅନୁସାରେ ଆମର ଅର୍ଥନୀତି; ଅର୍ଥନୀତି କାହିଁକି ଶିକ୍ଷା, ଶାସନ ସବୁ ଚାଳିତ ହେବା ଉଚିତ। କିନ୍ତୁ ବର୍ତ୍ତମାନ ତାର ଠିକ୍ ଓଲଟା ହେଉଚି। ମନୁଷ୍ୟ କିପରି ବେଶି ରୋଜଗାର କରିବ ସେହି ଲକ୍ଷ୍ୟାନୁସାରେ ଶିକ୍ଷା, ଶାସନ, ଅର୍ଥନୀତି ଚାଲିଚି। ସାଂସାରିକ ଦୃଷ୍ଟିରୁ ଦେଖିବାକୁ ଗଲେ ମଧ୍ୟ ମୋର ଏ ମିଠାଇ ଖାଇବା ଅନ୍ୟାୟ। ମୋର ସଂସାରର ସମସ୍ତଙ୍କର ଲୋଭ ଚରିତାର୍ଥ କରିବାର ଭାର ମୋ ଉପରେ। ମୁଁ ଯଦି ଲୋଭରେ ପଡ଼ି ମୋ ଲୋଭ ଚରିତାର୍ଥ କରେ ତେବେ ମୁଁ ଖାଲି ଯେ ଅନ୍ୟାୟ କରିବି ତା ନୁହେଁ, ବ୍ୟଭିଚାରୀ ମଧ୍ୟ ହେବି। ସରକାର ଯଦି ଲୋଭରେ ପଡ଼େ,

ତେବେ ସେ ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ ସମାଜବାଦୀ ହେଉ ବା କମ୍ୟୁନିଷ୍ଟ ହେଉ, ସେ ସରକାର ବ୍ୟଭିଚାରୀ....।

ପରେଶବାବୁ ଅନେକ ବହି ପଢ଼ିଛନ୍ତି ଓ ଅନେକ କଥା ଜାଣନ୍ତି। ତାଙ୍କର ଚିନ୍ତାଶକ୍ତି ମଧ୍ୟ ଅଛି। କିନ୍ତୁ ଶୁଷ୍କ ଚିନ୍ତା ଓ ବିଶ୍ଳେଷଣ ତାଙ୍କର ଏକ ଦିଗରେ ଚାଲିଲା ଏବଂ ତା' ସହିତ ଲୋଭ ମଧ୍ୟ ଅନ୍ୟ ଦିଗରେ ଚାଲିଲା। ଚିନ୍ତା କରୁ କରୁ ହଠାତ୍ ତାଙ୍କ ମନରେ ପ୍ରଶ୍ନ ଜାଗିଲା, ଏ ପରମାତ୍ମା ଲାଭ ନୈରାଶ୍ୟ ବା ଅକ୍ଷମତାଜନିତ ନୈରାଶ୍ୟଦ୍ୱାରା ଲାଭ ହୁଏ ନାହିଁ।

ଆଉ ଜଣେ ଭଦ୍ରଲୋକ ସେରେ 'ଦିଲମୋହିନୀ' ନେଇଗଲେ, ମାତ୍ର ଦୁଇଟି ପଡ଼ି ରହିଚି। ଆଉ ସମୟ ନାହିଁ। ଦର୍ଶନ ଓ ବିଶ୍ଳେଷଣର ବେଳ ନାହିଁ। ଶୀଘ୍ର କିଛି ବ୍ୟବସ୍ଥା କରିବାକୁ ହେବ।

ପରେଶବାବୁ ପୁଣି ଦୋକାନ ପାହାଚ ଉପରକୁ ଉଠିଲେ। ଦର୍ଶନ ବିଶ୍ଳେଷଣ ପରିବର୍ତ୍ତେ ଭୟରେ ତାଙ୍କର ପାଦ ଆଉ ଚଳିଲା ନାହିଁ। ଏହାପରେ ଶୂନ୍ୟ ଥଳିରେ ଘରକୁ ଫେରିଗଲେ ଯାହା ଅବସ୍ଥା ହେବ, ସେହି ଦୃଶ୍ୟ ତାଙ୍କ ଆଖି ସାମନାରେ ଖେଳିଗଲା।

...ନାଃ, ଦରିଦ୍ରର ଏ ଅଧିକାର ନାହିଁ। ଦରିଦ୍ର ପାଇଁ ଅଛି ଆତ୍ମା, ପରମାତ୍ମା, ଧର୍ମ, ତ୍ୟାଗ, ସଂଯମ। ସରକାର ଯେତେ ଉପଦେଶ ଦେଉଛନ୍ତି ସେ ସବୁ ତ ଆମରି ପାଇଁ ! ଆମେ ଟିକିଏ ଲୋଭରେ ପଡ଼ି କିଛି କଲେ ତ ଉପଦେଶ, ପୁଲିସ୍ ଶାସନ ଆମରି ଉପରେ ଅଜାଡ଼ି ପଡୁଚି। ନାଃ, ସଂଯମ ହିଁ ଆମର ଭଲ। ଆମରି ସଂଯମ ଉପରେ ତ ସରକାର ପ୍ରତିଷ୍ଠିତ। ଉପରେ ଜଣେ ଦୁଇଜଣ ଅସଂଯମୀ ହେଲେ କିଛି ଯାଏ ଆସେ ନାହିଁ। ତଳେ ଆମେ ଯଦି ଅସଂଯମୀ ହେବା...।

ଜଣେ ଭଦ୍ରଲୋକ ତାଙ୍କୁ ଠେଲି ଭିତରକୁ ପଶିଯାଇ କହିଲେ, "ଦିଲ୍‌ମୋହିନୀ ଗୋଟେ"...।

ଆଲମାରି ଭିତରକୁ ଚାହିଁ ପରେଶ ବାବୁ ଦେଖିଲେ ନିତମ୍ବିନୀର ଘନବକ୍ଷ ନିକଟରେ ଆଉ ଗୋଟିଏ ମାତ୍ର "ଦିଲ୍‌ମୋହିନୀ"। ତାଙ୍କର ଆଉ କାଣ୍ଡଜ୍ଞାନ ରହିଲା ନାହିଁ। ସବୁ ଦର୍ଶନ, ସବୁ ଚିନ୍ତା କୁଆଡ଼େ ଭାସିଗଲା। ଦୋକାନ ଭିତରକୁ ପଶିଯାଇ ଗୋଟିଏ ଚୌକିରେ ବସି ପଡ଼ି କହିଲେ, "ମୋତେ ବି ଗୋଟାଏ'।

କେହି ନାହାନ୍ତି ତାଙ୍କ ଆଦେଶ ଶୁଣିବା ପାଇଁ। କିଛିକ୍ଷଣ ଅପେକ୍ଷା କଲେ ସେ। ତଥାପି କେହି ଆସିଲେ ନାହିଁ। ପୁଣି ଦ୍ୱିଧାରେ ପଡ଼ିଲେ ପରେଶ ବାବୁ। ଅସହ୍ୟ ଏ ଦ୍ୱିଧା।

କେଉଁ ନାରୀର ଲାଲ୍ ଦୋପଟା ଉଡ଼ି ଯାଉଚି, ସେ ଆନନ୍ଦରେ ଚିତ୍କାର କରି ସମସ୍ତଙ୍କୁ ଏ ବିଷୟରେ ଜଣାଇ ଗାଉଚି, ମେରେ ଲାଲ୍ ଦୋପଟ୍ଟା ଉଡଯାଏ...ଦୋକାନ

ମସ୍‌ଗୁଲ ହୋଇ ତାହା ଶୁଣୁଚି। ପରେଶବାବୁ ମଧ୍ୟ ଗୀତ ଶୁଣିବାକୁ ଲାଗିଲେ। ଶୁଣୁ ଶୁଣୁ ତାଙ୍କର ଚିନ୍ତା ସେଇଆଡ଼େ ଚାଲିଗଲା...ଧନ୍ୟରେ ବମ୍ବେଇ ଫିଲ୍‌ମ, ଧନ୍ୟରେ ଆଧୁନିକା ! ! କେଳା ଯେମିତି ମାଙ୍କଡ଼କୁ ନଚେଇବା ସମୟରେ କୁହେ, ବାବୁଙ୍କୁ ପେଟ ଦେଖେଇଥା, ପଇସା ଦେବେ; ସେମିତି ଏ ନାରୀ ପିଟା ହଲେଇ, ପେଟ ଫେଟ ଦେଖେଇ ପଇସା ଟାଣୁଚି। ସରକାରଙ୍କର ଏଥିପ୍ରତି ତ ଦୃଷ୍ଟି ନାହିଁ...ମନୁଷ୍ୟତ୍ୱ ଯୁଆଡ଼େ ଯାଉ ପରବାଏ ନାହିଁ। ପଇସା ରୋଜଗାର କର, ଜାତୀୟ ଧନ ବଢ଼ାଅ, ଏହି ଲକ୍ଷ୍ୟ। ଏକଆଡ଼େ କାମ, ଲୋଭ ଆଦି ଚରିତାର୍ଥ କରିବାର ଉପାୟ ବଢ଼ିବାରେ ଲାଗିଚି, ଅନ୍ୟଆଡ଼େ ସେ ସବୁ ତ୍ୟାଗ କରିବାର ଉପଦେଶ ମଧ୍ୟ ଅଜାଡ଼ି ପଡୁଚି ଶିକ୍ଷା, ବକ୍ତୃତାରେ। ମଣିଷ ମଲା ତ ଦ୍ୱିଧାରେ ପଡ଼ି।

ଆଉ ଜଣେ ପ୍ରବେଶ କରି ଚୌକିରେ ବସିଲେ ତାଙ୍କ ପାଖରେ। ତାଙ୍କ ମୁହଁରୁ "ଦି" ବାହାରିଚି କି ନାହିଁ ପରେଶବାବୁ ସମାଜଚିନ୍ତା ତ୍ୟାଗକରି ଉତ୍‌କ୍ଷିପ୍ତ ଭାବରେ ଚିତ୍କାର କରି କହିଲେ, "ମୁଁ କେତେବେଳୁ ଗୋଟାଏ ଦିଲ୍‌ମୋହିନୀ ମାଗୁଚି, କେହି ଶୁଣିବାକୁ ନାହିଁ।"

ତାଙ୍କ ଚିତ୍କାରରେ ଦୁଇ ତିନିଜଣ ଧାଇଁ ଆସି ତରବର ହୋଇ ଆଲମାରିରୁ 'ଦିଲମୋହିନୀ' ବାହାର କରି ତାଙ୍କ ଆଗରେ ଥୋଇଲେ। ପରେଶବାବୁ ତରବର ହୋଇ ସେତକ ଖାଇଦେଇ ଦୋକାନୀ ସାମନାରେ ପଇସା ପକେଇ ଦେଇ ବାହାରି ଆସିଲେ। ନାନା ବିରୁଦ୍ଧାତ୍ମକ ଚିନ୍ତା, ଇଚ୍ଛା, ଅନିଚ୍ଛା ଇତ୍ୟାଦି ଭିତରେ ପଡ଼ି ସେ ଏତେ ଅଧୀର ହୋଇ ପଡ଼ିଥିଲେ ଯେ "ଦିଲମୋହିନୀ" ସେ କେବଳ ଖାଇଲେ; କିନ୍ତୁ କିଛି ଆସ୍ୱାଦ ପାଇଲେ ନାହିଁ। ଏତେବେଳେ ଯାଏ ସେ ପ୍ରାୟ ଅଚେତ ଥିଲେ କହିଲେ ଚଳେ।

ବାହାରକୁ ଆସି ତାଙ୍କ ଚେତା ପଶିଲା। ବଜାରଥଳିଆଡ଼େ ଚାହିଁଲେ। ଆଉ ମାର୍‌କେଟ ଆଡ଼େ ନ ଯାଇ ବନାରସି ଖିଲିପାନ ଦୋକାନରୁ ଚାରିପଇସା ଦେଇ ଗୋଟିଏ ଖିଲିପାନ ଓ ଆଉ ଚାରି ପଇସା ଦେଇ ଗୋଟିଏ କ୍ୟାପ୍‌ସଟାନ୍ ସିଗାରେଟ କିଣି ସେ ଘର ଆଡ଼କୁ ଚାଲିଲେ। ପାଦ କିନ୍ତୁ ତାଙ୍କର ଚଳିଲା ନାହିଁ। ହେଲେ ଉପାୟ ନାହିଁ। ଦୋକାନ ଘଡ଼ିରେ ଦେଖିଲେ ଦଶ ବାଜିଚି। ସ୍ତ୍ରୀ ଭୟଠୁ ଚାକିରି ଭୟ ପ୍ରବଳତର ହୋଇ ଉଠିଲା। ଶୀଘ୍ର ଶୀଘ୍ର ପାଦ ପକେଇ ସେ ଚାଲିଲେ।

କଅଣ କହିବେ ଘରେ ସେ କିଛିଭାବି ସ୍ଥିର କରି ପାରିଲେ ନାହିଁ। ଥରେ ଭାବିଲେ ଆଉ ଘରକୁ ଯିବେ ନାହିଁ, ସିଧା ଷ୍ଟେସନ ଯାଇ ପଳେଇ ଯିବେ ହରିଦ୍ୱାର। ସନ୍ନ୍ୟାସୀ ହେବେ। ଷ୍ଟେସନ ଆଡ଼େ କିଛିଦୂର ଗଲେ ସତ, କିନ୍ତୁ ମନ ତାଙ୍କର ବଳିଲା ନାହିଁ। ପୌରୁଷକୁ ତାଙ୍କର ବାଧିଲା। କାହା ଭୟରେ ସେ ସନ୍ନ୍ୟାସୀ ହେବେ, କାହିଁକି ?

ଅସହାୟ ଭାବରେ ଥରେ ସମସ୍ତଙ୍କୁ ଚାହିଁ ସେ ମୁହଁ ପୋତିଦେଲା । ସମସ୍ତଙ୍କର ସନ୍ତାନ ଫେରିଚନ୍ତି, ତାର ଫେରିନି, ଏ ଲଜ୍ଜା ଯେପରି ତାକୁ ଜାଳିଦେଲା ।

ଲେଡ଼ି ଡାକ୍ତର ପିଠିରେ ହାତ ବୁଲାଇ ପଚାରିଲେ "ପିଲାର ବାପା କାହିଁ ?"

"ମୋ ଖାଇବା ଆଣି ଯାଇଚନ୍ତି ।"

ସେ ଚାଲିଗଲେ । ଘରିଆଡ଼େ ନିସ୍ତବ୍‌ଧ ହୋଇଗଲା । ସମସ୍ତେ ରୁଦ୍ଧଶ୍ୱାସରେ ଆଖିରୁ ଲୁହ ପୋଛିଲେ । କିଛି ସମୟ ପରେ ମହିଳାଟିର ସ୍ୱାମୀ ଖାଇବା ନେଇ ଆସିଲେ । ଲେଡ଼ି ଡାକ୍ତର ସଙ୍କେତ ଦ୍ୱାରା ତାଙ୍କୁ ବାହାରକୁ ଡ଼ାକିଲେ । ମହିଳାଟି ଏଥର ସବୁ ବୁଝିପାରିଲା । "ମୋ ଧନ" ବୋଲି ଚିତ୍କାର କରି ତାର ସନ୍ତାନର କ୍ଷୁଦ୍ର ତକିଆଟି କୁଣ୍ଢାଇ ସେ ଖଟ ଉପରୁ ତଳେ ପଡ଼ି ଅଜ୍ଞାନ ହୋଇଗଲା ।

ମୁଁ ଆଉ ରହିପାରିଲି ନାହିଁ ସୃଷ୍ଟିର ଏ ଅଦ୍ଭୁତ ପ୍ରସୂତିଶାଳାରେ । ବାହାରକୁ ପଳାଇ ଆସିଲି । ବାସ୍ତବତାକୁ ଫେରି ଆସିବା ପାଇଁ ମୁଁ ବେଞ୍ଚ ଉପରେ ପଡ଼ିଥିବା ଖଣ୍ଡେ ଖବର କାଗଜ ଫିଟାଇ ଧରିଲି ।

"ବିଜ୍ଞାନର ଅଦ୍ଭୁତ ଆବିଷ୍କାର । ମାତ୍ର ଗୋଟିଏ ହାଇଡ୍ରୋଜେନ୍ ବୋମାରେ ନିମିଷେକେ କୋଟିକୋଟି ଲୋକର ମୃତ୍ୟୁ ହୋଇପାରେ ।"

"ତୃତୀୟ ମହାସମର ଲାଗିଯିବ ? ଦୁଇପକ୍ଷର ସଜବାଜ ସୈନ୍ୟଶକ୍ତି ବୃଦ୍ଧିପାଇଁ ପ୍ରତ୍ୟେକ ପିତାମାତାଙ୍କୁ ସନ୍ତାନ ଉତ୍ପାଦନ ପାଇଁ ଆର୍ଥିକ ପୁରସ୍କାର !"

କାଗଜଟା ମୋଡ଼ିମୋଡ଼ି ଫିଙ୍ଗିଦେଲି ।

# ଧଡ଼ିଭାଇ ସହିତ ଗୋଟିଏ ରାତ୍ରି

ବୈଜ୍ଞାନିକମାନେ କୁହନ୍ତି ଯେଉଁ ପଦାର୍ଥର ପରମାଣୁ ଗୁଡ଼ିକର ବୈଦ୍ୟୁତିକ ପ୍ରଭାବ ପରସ୍ପର ସଂଘର୍ଷିତ ହୁଅନ୍ତି, ସେହି ପଦାର୍ଥ ଦୃଢ଼ ଏବଂ ଯେଉଁ ପଦାର୍ଥର ପରମାଣୁଗୁଡ଼ିକର ବୈଦ୍ୟୁତିକ ପ୍ରଭାବ ମଧ୍ୟରେ ସେପରି ସଂଘର୍ଷ ନାହିଁ, ତାହା ହୁଗୁଳା ଯଥା: ପାଣି, ବାଷ୍ପ ଆଦି। ଶିବନାରାୟଣ କର- ସମସ୍ତଙ୍କ ଧଡ଼ି ଭାଇ- ହୁଗୁଳା ଚରିତ୍ରର ଲୋକ- ବୟସ୍କ ଏବଂ ସମାଜର ଟିକିଏ କଡ଼ା ସମାଲୋଚମାନେ କୁହନ୍ତି ଲଫଙ୍ଗା।

ମୋ ସହିତ ଧଡ଼ିଭାଇର ପରିଚୟ ଜୀବନର ଶୁଭମୁହୂର୍ତ୍ତରେ କି ଅଶୁଭମୁହୂର୍ତ୍ତରେ ହୋଇଥିଲା ତାହା ମୁଁ ବର୍ତ୍ତମାନ କହିପାରିବି ନାହିଁ। ଚତୁର୍ଥାବସ୍ଥାରେ ଯେତେବେଳେ ପଛକୁ ଚାହିଁବାର ସମୟ ଆସିବ, ସେତେବେଳେ ମୋର ଜୀବନର କି ମୂଲ୍ୟ ମୁଁ ଦେବି, ବର୍ତ୍ତମାନ ଏହି ବୟସରେ କହିପାରୁନି। ବର୍ତ୍ତମାନ ଯାହାକୁ ମୁଁ 'ନିରର୍ଥକ', 'ନଷ୍ଟ' ଭାବୁଚି ସେତେବେଳେ ହୁଏତ ତାହା ଅର୍ଥପୂର୍ଣ୍ଣ ଓ ମୂଲ୍ୟବାନ ଦେଖାଯାଇପାରେ ।

ବର୍ତ୍ତମାନ କିନ୍ତୁ ମୋତେ ଲାଗୁଚି ମୋର ଜୀବନ ନଷ୍ଟ ହୋଇଗଲା ଏବଂ ଏହି ନଷ୍ଟର କାରଣ ମୂଳତଃ ଧଡ଼ିଭାଇ। ବୟସରେ ସେ ମୋଠୁ ବଡ଼। ଗାଁ ମାଇନର ସ୍କୁଲରୁ ଆସି ଯେଉଁଦିନ କଲେଜିଏଟ ସ୍କୁଲରେ ନାମ ଲେଖାଇଲି, ସେହିଦିନ ତା ସହିତ ପରିଚୟ। ସେ ଦିନ ମୋ ମନ କୃତଜ୍ଞତାରେ ଭରି ଉଠିଥିଲା। ଘଟଣାଟି ମୁଁ ଭୁଲି ପାରିବି ନାହିଁ।

ମଫସଲିଆ ବୋଲି ମୋତେ ସମସ୍ତେ ଥଟ୍ଟା କରନ୍ତି। ମୁଁ ବସୁଥାଏ ଶ୍ରେଣୀର ସବା ପଛରେ। ଗରମ ଦିନ। ଦିନ ଦଶଟା ବେଳୁ ପଡୁଥାଏ ଅସହ୍ୟ ଗରମ। ପ୍ରଥମେ ଥାଏ ସଂସ୍କୃତ କ୍ଲାସ୍। ପଣ୍ଡିତ ମହାଶୟ ଜଣ ଜଣ କରି ନାମ ଡାକି ଯାଉଥାଆନ୍ତି ଏବଂ ଆମେ "ପ୍ରେଜେଣ୍ଟ ସାର୍" କହୁଥାଉ। ପ୍ରତ୍ୟେକ ନାମ ଡାକିବା ପରେ ପଣ୍ଡିତ ମହାଶୟ ଚଷମା ଉପରୁ ଆଖି ଟେକି ଥରେ ଦେଖି ନେଉଥାଆନ୍ତି- କେହି ଅନ୍ୟ ପାଇଁ "ପ୍ରେଜେଣ୍ଟ ସାର୍" କହୁଚି କି !

"ଶିବନାରାୟଣ କର" ପଣ୍ଡିତ ମହାଶୟ ଡାକିଲେ।

ସମସ୍ତେ ନୀରବ।

"ଶିବନାରାୟଣ" ସ୍ୱର ବି ବିକୃତ ହୋଇ ଆସିଲା।

ସମସ୍ତେ ତଳକୁ ମୁହଁ ପୋତି ବସିଲେ।

"ଶିବ"-ପଣ୍ଡିତ ମହାଶୟଙ୍କ ବଜ୍ରନାଦ ଘରର ଚାରିକାନ୍ଥରେ ବାଜି ପ୍ରତିଧ୍ୱନିତ ହୋଇ ଉଠିଲା। ଆମେ ସମସ୍ତେ ପ୍ରମାଦ ଗଣିଲୁ। ପଢ଼ା ଆରମ୍ଭ ନ ହେଉଣୁ ତ ଏମିତି, ପରେ କି ଦୁର୍ଯୋଗ ଅଛି ସେ କଥା କଳ୍ପନା କରି ସମସ୍ତେ ଆତଙ୍କିତ ହୋଇ ଉଠିଲେ।

ମୁଁ ମନେ ମନେ ଭାରି ବିରକ୍ତ ହୋଇ ଉଠିଲି ଏଇ ଅପରିଚିତ ଶିବ ପ୍ରତି। ରୋଷକଷାୟିତ ଆଖିରେ ଚାରିଆଡ଼ ଚାହିଁ ପଣ୍ଡିତ ମହାଶୟ ଅନ୍ୟ ନାମ ସବୁ ଡାକି ଖାତା ବନ୍ଦ କଲେ। ଏହି ସମୟରେ ପଣ୍ଡିତ ମହାଶୟଙ୍କ ପଛଆଡ଼େ ଦୁଆର ପାଖରେ ଛିଡ଼ା ହେଲେ ଜଣେ ଭଦ୍ରଲୋକ ଗୁରୁଗମ୍ଭୀର ଭାବରେ। ଅବିନ୍ୟସ୍ତ ବଡ଼ ବଡ଼ ବାଳ। ପିନ୍ଧିଛନ୍ତି ଖଣ୍ଡେ ମଇଳା ଲୁଗା ଏବଂ ଖୁବ ମୋଟା ଗରମ କୋଟ।

ଏ ଅସହ୍ୟ ଗରମରେ ଏଡ଼େ ମୋଟା ଗରମ କୋଟ ପିନ୍ଧିବାର ଦେଖି ମୋ ଠାରୁ ଜଣେ ବଡ଼ ମଫସଲିଆ ଭାବି ମୁଁ ପଛ ବେଞ୍ଚରୁ ଖେଁ ଖେଁ କରି ହସି ପକାଇଲି।

"କିଏ ହସିଲା ?" ପଣ୍ଡିତ ମହାଶୟ ଚାରିଆଡ଼େ ଚାହିଁଲେ। ମୋର ଝାଳ ବୋହିଗଲା।

"ସାର୍, ମୁଁ" ଭଦ୍ରଲୋକଟି କହିଲେ। ମୁଁ ଆଖିରେ ବିସ୍ମୟ ଓ କୃତଜ୍ଞତା ଭରି ତାଙ୍କୁ ଚାହିଁଲି।

ପଣ୍ଡିତ ମହାଶୟ ପଛକୁ ଚାହିଁ ନୀରବରେ ଟେବୁଲର ଦରଜା ଖୋଲିଲେ। ତା ଭିତରୁ ବାହାରିଲା ଗୋଟିଏ ବେତ। ଲମ୍ୱା ନୁହଁ, କିନ୍ତୁ ବେଶ ସୁପୁଷ୍ଟ। ନାନା ବ୍ୟବସାୟର ଲୋକେ ବେତର ନାନା ପ୍ରକାର ବ୍ୟବହାର ଆବିଷ୍କାର କରିଛନ୍ତି, କିନ୍ତୁ ଶିକ୍ଷା ବିଭାଗ ବୋଧହୁଏ ଆବିଷ୍କାର କରିଚି ଏହାର ଏହି ନିର୍ମମ ବ୍ୟବହାରଟି।

ଭଦ୍ରଲୋକ ସେମିତି ହସି ଛିଡ଼ା ହୋଇ ଥାଆନ୍ତି।

"ଏତେବେଳେ ଆପଣ ଆସିଲେ ?" ପଣ୍ଡିତ ମହଶୟ ଖୁବ୍ ସରଳ ଭାବରେ ପଚାରିଲେ। ମାନ୍ୟସୂଚକ ଶବ୍ଦର ବ୍ୟବହାର ଶୁଣି ମୁଁ ଭୟରେ ଆଖିବୁଜିଦେଲି।

"ଆଜ୍ଞା ହଁ।" ଉତ୍ତର ମଧ୍ୟ ସେହିପରି ସରଳ।

ପଣ୍ଡିତ ମହାଶୟ ଆଉ ବାଦାନୁବାଦ ନ କରି ମିନିଟକୁ ପ୍ରାୟ ଶହେ ପ୍ରହର ବେଗରେ ପିଟି ଚାଲିଲେ। ମୁହଁରେ କୌଣସି ବିକୃତି ନାହିଁ, ରାଗ ବା ଘୃଣାର କୌଣସି ଚିହ୍ନ ନାହିଁ, ଅଯଥା ଶାରୀରିକ ଶ୍ରମ ନାହିଁ, ବୃଥା ବାକ୍ୟବ୍ୟୟ ନାହିଁ, ନୀରବରେ, ନିପୁଣ

ଭାବରେ ପଣ୍ଡିତ ମହାଶୟ କାର୍ଯ୍ୟ ସମ୍ପନ୍ନ କରିବାକୁ ଲାଗିଲେ। ପ୍ରହାରକ ଯେପରି ନିର୍ବିକାର, ପ୍ରହାରିତ ମଧ୍ୟ ଠିକ୍ ସେହିପରି।

ମୁଁ ଟିକିଏ ଡେ଼ରିରେ ବୁଝେ। ଏତେବେଳେ ବୁଝିଲି ପ୍ରହାରିତ ଆଉକେହି ନୁହେଁ, ସ୍କୁଲକୁ ଆସିବା ଦିନୁ ସହପାଠୀମାନଙ୍କ ମୁହଁକୁ ଯେଉଁ ଧଡ଼ିଭାଇ କଥା ମୁଁ ଶୁଣିଚି ସେଇ ଧଡ଼ି ଭାଇ।

ମାଡ଼ରେ କୋଟରୁ ଧୂଳି ଉଡ଼ି ଯାଉଚି। ଟିକିଏ 'ଉଃ ଆଃ' ନାହିଁ। ନିର୍ବିକାର। ପଣ୍ଡିତ ମହାଶୟ ଥକିପଡ଼ି ଦମ ନେଲେ। କିଛି ସମୟ ଦମ ନେବା ପରେ ସେ ପୁଣି କାର୍ଯ୍ୟ ଆରମ୍ଭ କରିବାକୁ ଯାଉଥିଲେ, ଅଟକି ସେ କୋଟ କନା ପରୀକ୍ଷା କରିବାକୁ ଲଗିଲେ।

"ଏ କୋଟ କାହାର ?"

"ସାଆନ୍ତ ବାପାଙ୍କର।"

"ତୁମେ କାହିଁକି ପିନ୍ଧି ଆସିଚ ?"

"ସାଆନ୍ତ ବାପା ଦେଇ କହିଯାଇଥିଲେ ଦରକାର ବେଳେ କର୍ମରେ ଆସିବ।"

ଗୋଟିଏ 'ମୃଦୁ କଳରବ" କ୍ଲାସ୍‌ରେ ଖେଳିଗଲା।

"କୋଟ କାଢ଼" ପଣ୍ଡିତ ମହାଶୟ ଗର୍ଜି ଉଠିଲେ।

"ତା ପାରିବି ନାହିଁ। ମୋତେ ନଙ୍ଗଳା କରିବା ପାଇଁ ହେଡମାଷ୍ଟରଙ୍କ ଅନୁମତି ଆଣନ୍ତୁ।"

ଥରେ ଚାରିଆଡ଼କୁ ଚାହିଁ ପଣ୍ଡିତ ମହାଶୟ ଗୋଟିଏ ପ୍ରଚଣ୍ଡ ତଣ୍ଟିଆରେ ଶିବକୁ ଠେଲି ଦେଇ କହିଲେ "ଯାଅ। ପଛ ବେଞ୍ଚରେ ଛିଡ଼ା ହୁଅ।"

ଶିବ ସେହିପରି ନିର୍ବିକାର ଭାବରେ ଆସି ମୋ ପାଖେ ଛିଡ଼ା ହେଲା।

ସେହିଦିନୁ, କାହିଁକି ଜାଣେନା, ମୁଁ ଧଡ଼ିଭାଇ ପ୍ରତି ଆକୃଷ୍ଟ ହେଲି। ଏହା ପରେ ମୋ ପାଠପଢ଼ା ଆଉ ହୋଇନାହିଁ। କେବେହେଁ ଫେଲ୍ ହୋଇନି- ଖୁବ୍ ଭଲ ଛାତ୍ର ବୋଲି ବୋଧହୁଏ। ଧଡ଼ିଭାଇ ତାର ସବୁ ଦୁଷ୍କର୍ମର ସାଥୀ ହିସାବରେ ମୋତେ କାହିଁକି ବାଛି ନେଲା ସେଇ ଜାଣେ ।

ସର୍କସ ଆସିଚି। ଗ୍ରେଟ୍ ରସିୟାନ ସର୍କସ। ଦେଖିଯିବାକୁ ଭାରି ଇଚ୍ଛା। ସବୁଠୁ କମ୍ ଟିକିଟ୍ ଆଠ ଅଣା। ଆଠ ଅଣା!! ହତାଶ ଭାବରେ ତମ୍ବୁକୁ ଚାହିଁ ରହିଲି। ନାଭିମୂଳରୁ ଗୋଟିଏ ଦୀର୍ଘ ନିଶ୍ୱାସ ବାହାରି ଆସିଲା। ବାପାଙ୍କୁ ପଇସା ମାଗିଲେ ଖାଲି ଶାରୀରିକ ପୀଡ଼ା ପାଇବି କିମ୍ବା ସାର୍ ଆଶୁତୋଷ, ବିଦ୍ୟାସାଗର ଆଦି କିପରି କଷ୍ଟରେ ବଡ଼ ଲୋକ ହୋଇଚନ୍ତି ସେ ବିଷୟରେ ଦୀର୍ଘ ବକ୍ତୃତା ଶୁଣିବାକୁ ହେବ।

"କିଛି ପରୁଆ କରନା। କାଲି ସକାଳୁ ମୁଣ୍ଡରେ ତେଲ ନ ଲଗାଇ ଗାଧୋଇବୁ,

ବୁଝିଲୁ ?" କିଛି ବୁଝି ପାରେନି । କିନ୍ତୁ ଧଡ଼ିଭାଇ କହିବା ମତେ କାମ କରେ । ସନ୍ଧ୍ୟାବେଳେ ଧଡ଼ିଭାଇ ଆସି ଦୂରରୁ ହୁଇସିଲ୍ ମାରି ଡାକିଲା । ଅତି ସନ୍ତର୍ପଣରେ ଘରୁ ବାହାରିଲି ।

ମୋତେ ଆପାଦମସ୍ତକ ଥରେ ଚାହିଁ ଧଡ଼ିଭାଇ କହିଲା, "ଠିକ ଅଛି । ନା, ଏ କମିଜ୍ ଚଳିବ ନାହିଁ, ଖଣ୍ଡେ ମଇଳା କମିଜ୍ ପିନ୍ଧଆ ।"

ପୁଣି ଯାଇ ଖଣ୍ଡେ ମଇଳା କମିଜ୍ ପିନ୍ଧ ଆସିଲି ।

"ଠିକ୍ ଅଛି । ଲୁଗା ମୋ ଭଳି ପିନ୍ଧା"

ଲୁଗା ଦୋହଲାଇ ଲୁଙ୍ଗି ଭଳି ପିନ୍ଧିଲି । ଯନ୍ତଚାଳିତ ପରି ଭୟରେ ଧଡି ଭାଇର ପଛେ ପଛେ ଚାଲିଲି ।

"ଏଇ; କୋନ୍ ଯେ ?" ସର୍କସ ତମ୍ବୁର ଫାଟକ ପାଖରେ ବୃହଦ୍‌କାୟ ଜଗୁଆଳି ଧଡ଼ିଭାଇକୁ ଧକ୍‌କା ମାରି ପଚାରିଲା । ଭୟରେ ପଳାଇଯିବାକୁ ବସିଲି । କିନ୍ତୁ ଉପାୟ ନାହିଁ । ଶିବ ମୋର ଭୀରୁ ସ୍ୱଭାବ ଜାଣି କମିଜ ଧରି ଅଟକାଇଚି ।

"ଲାଇଟକା ପମ୍ପ ଦେନେଓ୍ୱାଲା ହେୟ" ଶିବ ନିର୍ଭୟରେ ଅପୂର୍ବ ଭଙ୍ଗୀରେ କହିଲା ।

ଜଗୁଆଳି ଥରେ ଆଗକୁ ଚାହିଁ କହିଲା "ଯାଓ, ଜଲଦି ପମ୍ପ ମାରୋ ।"

କିମ୍ବା ହୁଏତ ସିନେମା ଆସିଛି । ଟାମେରିଆ ଟୁରିଙ୍ଗ୍ ସିନେମା ।

"ଆଇୟେ, ଆଇୟେ, ଲଙ୍କାଦହନ, ଚାର୍ ଚାର୍ ପଇସା ।"

ଚାରି ପଇସା ବା ପାଇବି କେଉଁଠୁ !

"କିନ୍ତୁ ପରୁଆ କରନା, ଆ ମୋ ସାଙ୍ଗରେ ।"

ଚାଲେ ।

"ବଦମାସ, ଚାରିଆଡ଼େ ଲୋକ ଜଗାଇଛନ୍ତି"- ଧଡ଼ିଭାଇ ଟିକିଏ ଚିନ୍ତିତ ହେଲା ।

ତାପରେ କଅଣ ଭାବି ତଳୁ ବଡ଼ ବଡ଼ ତିନି ଚାରୋଟି ଢେଲା ଉଠାଇ ଏଣେ ତେଣେ ଚାହିଁ ସେ ଦୁମ୍ ଦୁମ୍ କରି ଦୂରକୁ ତମ୍ବୁ ଉପରକୁ ଫିଙ୍ଗିଦେଲା ।

"କୋନ୍ ହେୟ, କୋନ୍ ହେୟ" ବେଗରେ ଆଖପାଖର ଜଗୁଆଳି ଦୌଡ଼ିଗଲେ ଘଟଣାସ୍ଥଳକୁ ।

ଏଇ ସୁଯୋଗରେ ଧଡ଼ିଭାଇ ମୋତେ ଟାଣି ତମ୍ବୁ ଭିତରକୁ ପଶିଗଲା ।

ଏମିତି କରି ଯଥାକଥା ମୁଁ ବି.ଏ. ପର୍ଯ୍ୟନ୍ତ ଆସିଲି । ଶିବ ମ୍ୟାଟ୍ରିକ୍ ଥାର୍ଡ କ୍ଲାସ୍‌ରୁ ପଢ଼ା ଛାଡ଼ିଚି । କିନ୍ତୁ ମୋ ସାଙ୍ଗ ଛାଡ଼ିନାହିଁ । ଆଜିକାଲି ମଝିରେ ମଝିରେ ବିରକ୍ତ ହୁଏ ତା ଉପରେ । ନିଜର ଜୀବନ ନଷ୍ଟ କରିଚି- ମୋର ମଧ୍ୟ କରିବ । ସଂସାରରେ କାହାର ଉପକାରରେ ଲାଗନ୍ତି ଏମିତି ଲଫଙ୍ଗା ଲୋକସବୁ ? ଛିଃ ।

ବି.ଏ. ପରୀକ୍ଷା କାଲିଠୁ ଆରମ୍ଭ। ସାରା ବର୍ଷ ଶିବ ପାଠ ପଢ଼ି ଦେଇନି। ରାତି ଜାଗି ପାଠ ପଢୁଛି। ରାତି ସେତେବେଳେ ପ୍ରାୟ ଦଶଟା। ପଢୁଥାଏ।

"What is this life is full of care
If there is no time to stand and stare"

ଦୂରରେ ତୀକ୍ଷ୍ଣ ସ୍ୱରରେ ବାଜିଉଠିଲା ହୁଇସିଲ୍।

କବାଟ ଝରକା ଲଗାଇ ଦେଇ ଗୋଟା ପ୍ରତିଜ୍ଞା କରି ପଢ଼ାରେ ମନଯୋଗ କଲି।

ଠକ୍ ଠକ୍ ଠକ୍। କବାଟରେ ତିନି ଥର ମୃଦୁ ଆଘାତ ହେଲା।

"ନା, ଧଡ଼ିଭାଇ ଯା। ପରୀକ୍ଷା କାଲି।" ବିରକ୍ତି ଓ ବିନୟ ପ୍ରକାଶ କରି କହିଲି।

"ଶୁଣି ଯା ଥରେ।" ରାମକୃଷ୍ଣ ପରମହଂସ ଦେବ ବୋଧହୁଏ ବିବେକାନନ୍ଦଙ୍କୁ ଏପରି ସ୍ୱରରେ ଡାକି ନଥିଲେ।

ବାହାରକୁ ଆସିଲି। ଶୀତଦିନ ରାତିରେ ଆକାଶରେ ପୁନେଇ ଚାନ୍ଦର ସ୍ନିଗ୍ଧ କିରଣ ଅଜାଡ଼ି ପଡ଼ିଚି। ଚାରିଆଡ଼ ନିସ୍ତବ୍ଧତା।

"ଦେଖିଲୁ କେମିତି ରାତି। ଏମିତି ରାତିରେ କଅଣ ଘରେ ରହିବା କଥା। ଚାଲିଆ, ଚାଲିଆ, ଆଜି ରାତିଯାକ ନଗର ପରିକ୍ରମା କରିବା।"

ଦମକାଏ ଥଣ୍ଡା ପବନ କୁଆଡ଼େ ଆସି ଟେଲିଫୋନ୍ ତାର ଝଣ ଝଣ କରି ଚାଲିଗଲା। ମୋର ମନର ସବୁ ତାର ଝଣ କରି ଉଠିଲା। ଗୋଟିଏ ପେଚା 'ହୁ; ହୁ' କରି ଦୁଇ ତିନି ଥର ମୋ ମୁଣ୍ଡ ଉପରେ ବୁଲି ନଈକୂଳ ଆଡ଼େ ଚାଲିଗଲା। ଗୋଟାଏ ଚେମଣିଆ ବାରମ୍ବାର ଠିକ୍ ମୋ ଆଖି ପାଖରୁ ଫେରି ଯିବାକୁ ଲାଗିଲା।

ନିଜର ଅଜ୍ଞତାରେ କହିଲି, "ଚାଲ୍"

"ସାବସ୍" କହି ଧଡ଼ିଭାଇ ମୋ କାନ୍ଧରେହାତ ରଖିଲା।

"କୁଆଡ଼େ ?" ମୁଁ ହସି ପଚାରିଲି।

"ଆଗେ ଚାଲ୍, ଡାକ୍ତର ଦୋକାନକୁ।"

"ଡାକ୍ତର ଦୋକାନ ! ! କାହାର କ'ଣ ହେଇଚି ?"

"ଜଣକର ଚାରି ପାଞ୍ଚ ଦିନ ହେଲା ଭାରି ଜର। ଚାଲ୍।"

ଡାକ୍ତର ଦୋକାନରେ ପଇସା ଦେଇ ଔଷଧ କିଣି ଧଡ଼ିଭାଇ ଚାଲିଲା ଗୋଟାଏ ଅନ୍ଧାରିଆ ଗଳି ଆଡ଼େ।

"ସିଆଡ଼େ କାହିଁକି ?" ମୁଁ ଭୟ ଓ ଘୃଣାରେ ପଚାରିଲି।

"ଚାଲେନା, ସେ ବାଟରେ ଗଲେ କଅଣ ତୋର ସତୀତ୍ୱ ଚାଲିଯିବ। ଅତି ଗୁଡ଼ାଏ...ଆ"।

ଗୋଟାଏ ଜୀର୍ଣ୍ଣଶୀର୍ଣ୍ଣ ଘର ପାଖରେ ଛିଡ଼ା ହୋଇ ଧଡ଼ିଭାଇ ଡାକିଲା, "ମାଳତୀ, ମାଳତୀ !"

ପାଖ ଘରୁ ଭାସି ଆସୁଚି ମାତାଲମାନଙ୍କର ଚିତ୍‌କାର ସହିତ ନାରୀର ଜଡ଼ିତ କଣ୍ଠର ଅବୋଧ ଗାନ। କିଏ କାଳେ ମୋତେ ଦେଖିବ, ଏହି ଲଜ୍ଜାରେ ମୁଁ ତଳକୁ ମୁହଁ ପୋତି ଛିଡ଼ା ହେଲି।

"ମାଳତୀ, ମାଳତୀ"- ଧଡ଼ିଭାଇ ପୁଣି ଡ଼ାକିଲା।

"କୋନ୍ ହେୟ ବେ"ପାଖଘରୁ ଗୋଟାଏ ମାତାଲ୍ ଚିତ୍‌କାର କରି ଉଠିଲା।

ଜୀର୍ଣ୍ଣକବାଟ ଖୋଲି ଗୋଟାଏ ଶୀର୍ଣ୍ଣନାରୀ ବାହାରି ଆସିଲା। ଧଡ଼ିଭାଇକୁ ଅନାଇ କୃତଜ୍ଞତାରେ ସେ କେବଳ ଚାହିଁ ରହିଲା। ଧଡ଼ିଭାଇ ଔଷଧ ବଢ଼ାଇ ଦେଇ କହିଲା, "ଡାକ୍ତର କାଲି ଆସିବାକୁ କହିଚି। ଦେଖେଁ।"

"ଆଜି, ରହିବ ନାହିଁ ଟିକିଏ ?" ନାରୀଟି କମ୍ପିତ କଣ୍ଠରେ ପଚାରିଲା।

"ନା, ଆଜି କାମ ଅଛି। ଆଉ ରହିବା ଦରକାର ନାହିଁ। ରୋଗ ଭଲ ହୋଇ ଗଲାଣି।"

ଛିଃ, ଧଡ଼ିଭାଇ ତେବେ ଏଠିକି ମଧ୍ୟ ଆସେ। ଏମିତି ଲୋକ ମୋର ପୁଣି ବନ୍ଧୁ।

"ଯା, ଶୋଇପଡ଼" କହି ଧଡ଼ିଭାଇ ମୋତେ ଡାକି କହିଲା- ଚାଲ୍।

କିଛି ବାଟ ଆସିବା ପରେ ମୁଁ ପଚାରିଲି, "ଧଡ଼ିଭାଇ, ତୁମେ ଏଠିକି ମଧ୍ୟ ଆସ ?"

"ଆସିଲେ କଅଣ ହେଲା ?"

"ଲଜ୍ଜା କର ନାହିଁ ? କେହି ଯଦି ଜାଣନ୍ତି ବା ଦେଖନ୍ତି ?"

"ଓଃ ! ଏଇଥିପାଇଁ ଲଜ୍ଜା- କେହି କାଳେ ଦେଖି ଦେବେ...ନ ଦେଖିଲେ କିଛି ନାହିଁ। ବେଶ୍ ଆଦର୍ଶ ଏକା ତୋର। ତେବେ ମୋର ଏଠାକୁ ଆସିବାର ଉଦ୍ଦେଶ୍ୟ ଅଲଗା। ଦିନେ ରାତିରେ ଅନ୍ୟ ଏକ ଘରୁ ବାହାରି ଆସିବା ସମୟରେ ମାଳତୀ କହିଲା, ତାକୁ ଭାରି ଜର, କେହି ତାକୁ ପଚାରୁ ନାହାନ୍ତି, ବଡ଼ ଖରାପ ରୋଗ ହୋଇଚି"....

ଏତିକି କହି ସେ କାନ୍ଦି ପକାଇଲା। "ସେହିଦିନୁ ମୁଁ ତାକୁ ରୋଗମୁକ୍ତ କରିବାର ଭାର ନେଇଚି। କିଏ ପଚାରିବ ଏମାନଙ୍କୁ ମୋ' ଭଳି ଲଫଙ୍ଗା ନ ହେଲେ, ଥରେ ଭାବି ଦେଖ। ଆଚ୍ଛା, ତୁ ତ ଅନେକ ପଢ଼ିଛୁ, ଅନେକ ଜାଣୁ...କହିଲୁ, ଏମାନେ ସମାଜର

କୌଣସି ଉପକାର କରୁ ନାହାନ୍ତି ? କିନ୍ତୁ ସଭ୍ୟତାର ଏ ଯେଉଁ ଗୋଟାଏ କଥା ଉଠିଚି ଏମାନଙ୍କୁ ଉଠାଇ ଦେବାକୁ ...ଏମାନେ ସମାଜର କଳଙ୍କ, ମୁଁ କହେ, ଏ ଅନୁଷ୍ଠାନ ସମାଜରେ ରହିବା ଉଚିତ୍ ...ବେଶ୍ ଶୃଙ୍ଖଳିତ ଭାବରେ ରହିବା ଉଚିତ୍...ନହେଲେ ଘରେ ଘରେ...ଛାଡ଼।"

"ଆରେ, ଦଣ୍ଡପାଣି ବାବୁ, ନମସ୍କାର, ଏତେ ରାତିରେ ତରତର ହୋଇ କୁଆଡ଼େ ଚାଲିଛନ୍ତି..."

"ଆଉ କହନା ଭାଇ, କୁଣିଆ ଆସିଛନ୍ତି ଯେ, ସେ କହିଥିଲା ବଜାରରୁ ମାଛ ନବାକୁ ଏକଦମ୍ ଭୁଲି ଯାଇଥିଲି...ଘର ପାଖରୁ ଫେରି ଫେର୍...।"

"ଏତେ ବେଳକା ମାଛ, ତଟକା ତ ?" ଧଡ଼ିଭାଇ ପଚାରିଲା।

"ନିଶ୍ଚୟ ତଟକା। ମାଛ ପଚା କି ନାହିଁ ମୁଁ ଉ ଦେଖି ଜାଣେ। ଆଚ୍ଛା ଯାଏଁ ଭାଇ, ବେଳ ହୋଇଗଲା।"

"ହୋଇଥିବ। ହଁ, ଆପଣଙ୍କର ସେଇ ଚାକିରି ଗୋଳମାଳ କଅଣ ହେଲା ?"

ଦଣ୍ଡପାଣି ବାବୁ ସଉଦା ବୁଜୁଳାଟି ବାଁ ହାତରୁ ଡ଼ାହାଣ ହାତକୁ ବଦଳାଇ କହି ଚାଲିଲେ କର୍ମକ୍ଷେତ୍ରରେ ତାଙ୍କର ଅସୀମ ସାହସ କଥା...କିପରି ଭାବରେ ସେ ମୁହେଁ ମୁହେଁ ସାହେବଙ୍କୁ ଜବାବ୍ ଦିଅନ୍ତି, ଅନ୍ୟାୟ ବରଦସ୍ତ କରି ପାରନ୍ତି ନାହିଁ...ତାଙ୍କର ସାଧୁତା ପାଇଁ ସେ କିପରି କଷ୍ଟ ପାଉଛନ୍ତି...ଇତ୍ୟାଦି, ଇତ୍ୟାଦି। ପ୍ରାୟ ଅଧଘଣ୍ଟାଏ ଧରି ବକି ଚାଲିଲେ।

"ସତେ ଆପଣ ବଡ଼ ଖାଣ୍ଟି ଲୋକ। କିନ୍ତୁ ମାଛଟା ପଚା ନୁହଁ ତ ?"

"ଇସ୍ ଏତେବେଳ ହୋଇଗଲା, ଯାଏଁ ଭାଇ..."

"ହଁ, ଯାଆନ୍ତୁ। ହଁ; ଆପଣଙ୍କ ଘରବାଲା ସହିତ ସେଇ ମକଦ୍ଦମା କଣ ହେଲା ?"

ଧଡ଼ିଭାଇ ପୁଣି ଆଗ୍ରହାନ୍ୱିତ ଭାବରେ ପଚାରିଲା।

ଦଣ୍ଡପାଣି ବାବୁ ପୁଣି ଅଧଘଣ୍ଟାଏ ବକି ଚାଲିଲେ ସେ ଇତିହାସ।

"ବାଃ, କି, ସାହସୀ ଲୋକ ଆପଣ ସତେ ? କିନ୍ତୁ ମୋର ମନେ ହେଉଚି ମାଛଟା ପଚା।"

"ଆରେ ନା, ଦେଖ ନା। ଇସ୍ ଘଣ୍ଟାଏ ଡେରି ହୋଇଗଲା...ସେ ସିଆଡ଼େ..."

"ଯାଆନ୍ତୁ', ଯାଆନ୍ତୁ। ହଁ, ମୁଁ ଶୁଣିଥିଲି ଆପଣଙ୍କୁ କୁଆଡ଼େ ବଦଳି କରି ଦେଉଛନ୍ତି ?"

"ଭାରି କଳାବାଲା। ଏ ଦଣ୍ଡପାଣିକୁ....ବୁଝିଲ..." ଦଣ୍ଡପାଣି ପୁଣି ଅଧଘଣ୍ଟାଏ

ସେ ଇତିହାସ ବକି ଚାଲିଲେ। ଧଡ଼ିଭାଇ ସତେ ଯେପରି କେଡ଼େ ମୁଗ୍ଧ ହୋଇ ଅନାଇ ଶୁଣୁଛନ୍ତି !

"ଚମତ୍କାର। କିନ୍ତୁ ମାଛଟି ନିଶ୍ଚୟ ପଚା..."

ଦଣ୍ଡପାଣିବାବୁ ଆଉ କିଛି ନ କହି ପ୍ରାୟ ଦୌଡ଼ି ପଳାଇଲେ। ଧଡ଼ିଭାଇ କିଛିକ୍ଷଣ ହସି କହିଲେ, "ଲୋକଟା ମନ୍ଦ ନୁହେଁ, କିନ୍ତୁ ସ୍ତ୍ରୀ ଉପରେ ଭାରି ଅତ୍ୟାଚାର କରେ। ଯାଉ ଆଜି କିଛି ଗାଳି ଖାଉ ସ୍ତ୍ରୀ ପାଖରୁ...।"

"ଯାଃ, ଏ କଅଣ ଗୋଟାଏ ତୁମର..." ବିରକ୍ତି ଲାଗିଲା ସତେ ମୋତେ।

"ଆରେ, ଗୋଟାଏ ମଉଜ...ଚାଲ୍"

ଆଗେଇ ଚାଲିଲୁ।

ଚୌଧୁରୀ ବଜାର, ଗୋପାଳଜୀ ମଠ ପାର ହୋଇ ଝୋଲା ସାହି। ରାତି ପ୍ରାୟ ବାରଟା। ଚାରିଆଡ଼େ ନିସ୍ତବ୍ଧ। ଗୋଟିଏ ବୁଢ଼ୀ ବାହାରକୁ କାହିଁକି ବାହାରିଚି। ହଠାତ୍ ଗୋଟାଏ ସାଇକଲ୍ ଧକ୍କା ଲାଗିଲା ବୁଢ଼ୀ ସହିତ।

"ମରଗିଆରେ...ଆଲ୍ଲୁ..." ବୁଢ଼ୀ ଚିତ୍କାର କରି ଉଠିଲା।

"ଏଡ଼େ ଜୋରରେ ସାଇକଲ ଚଳାଇବା ଦରକାର କଅଣ ?" ଧଡ଼ିଭାଇ ବୁଢ଼ୀଟିକୁ ଉଠାଇ ଧୂଳି ଝାଡ଼ିଝୁଡ଼ି ଦେଇ କହିଲା।

ଯୁବକଟି ଭୟରେ ଥରୁ ଥରୁ କହିଲା, "ବାପା ହଠାତ୍ ଅଜ୍ଞାନ ହୋଇ ପଡିଚନ୍ତି, ଡାକ୍ତର ଡାକିବାକୁ ଦୌଡ଼ିଥିଲି...।" ଯୁବକଟି ପ୍ରାୟ କାନ୍ଦି ପକାଇଲା।

"ଶୀଘ୍ର ପଳାନ୍ତୁ।"

ଯୁବକଟି ସାଇକଲ ଉଠାଇ ପଳାଇଲା।

କିନ୍ତୁ ବୁଢ଼ୀର ଚିତ୍କାର ବନ୍ଦ ହେଲା ନାହିଁ। ଧଡ଼ିଭାଇ ତା ହାତରେ ଗୋଟିଏ ଟଙ୍କା ଧରାଇ ଦେଇ କହିଲା "ମାଉସି, ଯା ହବାର ହେଲାଣି..."

କିନ୍ତୁ ଆଖପାଖରେ ଟୋକାଏ ଦଉଡ଼ି ଆସିଲେ ଠେଙ୍ଗାବାଡ଼ି ଧରି।

"କାହାଁ ଗିୟା...ବଦମାସ୍।"

ଧଡ଼ିଭାଇ ହଠାତ୍ "ଧରୋ ପାଜିକୁ, ମାରୋ ପାଜିକୁ" କହି ଯୁବକଟି ଯେଉଁଆଡ଼େ ଯାଇଥିଲା ତାହାର ଓଲଟା ଆଡ଼େ ଦୌଡ଼ିଲା। ପଛେ ପଛେ ମୁଁ ଦୌଡ଼ିଲି। ଅନ୍ୟ ସମସ୍ତେ ବି ଦୌଡ଼ିଲେ।

ଅନେକ ବାଟ ଆସିବା ପରେ ଧଡ଼ିଭାଇ କହିଲା, "ଓ ଭାଗୀ, ମିଲ୍‌ତା ତୋ..."

ଲୋକମାନଙ୍କର ଆଉ କିଛି କହିବାର ଉପାୟ ନାହିଁ। ଧଇଁ ସଇଁ ହୋଇ ସେମାନେ ଫେରିଲେ ।

ଧଡ଼ିଭାଇର ଉପସ୍ଥିତ ବୁଦ୍ଧିରେ ଚମତ୍କୃତ ହୋଇ ଚାହିଁ ରହିଲି।

ଛତରାବଜାର, ଶଙ୍କରପୁର, ମାଲଗୋଦାମ। ରାତି ପ୍ରାୟ ଦେଢ଼ଟା।

"ହେ ରାମାବାପା...ଇୟୋ ମୋ ବୋଉ, ହେ ଧବଳେଶ୍ୱର..."

ଦୂରରୁ କାହାର କରୁଣ ଧ୍ୱନି ଭାସି ଆସିଲା। ଚାରିଆଡ଼ ନିସ୍ତବ୍ଧ। ଡର ଲାଗୁଚି। ପ୍ରତ୍ୟେକ ଘର ଯେପରି ଖୁଣୀ ଡକାୟତଙ୍କ ଆଡ୍‌ଡା ମନେ ହେଲା।

"ଧଡିଭାଇ, ଏ କଅଣ ?" କଡ଼କୁ ଲାଗିଯାଇ ପଚାରିଲି।

"ଡରୁଚୁ ନା କଅଣ ? ଚାଲ ଦେଖିବା ସେଠି କଅଣ ହେଲା।"

ଗୋଟିଏ ସୁନ୍ଦରୀ ଯୁବତୀକୁ ଘେରି ଅନେକ ଲୋକ। ଧଡ଼ିଭାଇ ଓ ମୁଁ ନୀରବରେ ସମସ୍ତଙ୍କ ପଛରେ ଛିଡ଼ା ହେଲୁ। ଯୁବତୀଟି ନିଶ୍ଚୟ ମଫସଲରୁ ଆସିଚି। ନାକରେ ଦଣ୍ଡି, ହାତରେ ଖଡ୍ଡୁ। ପାତଳ ଶାଢ଼ିତଳୁ ଫୁଟି ଦିଶୁଚି ଯୌବନର ଶୋଭା। ଚାରିଆଡୁ ଲୋଲୁପ ଦୃଷ୍ଟି। ମୁହଁରେ ସମସ୍ତଙ୍କର କିନ୍ତୁ ସମବେଦନା। ଯୁବତୀଟି କାନ୍ଦି କାନ୍ଦି କହିଲା ତାର କରୁଣ କାହାଣୀ। ରାମା ବାପା, ତାର ସ୍ୱାମୀ, ସହିତ ସେ ଧବଳେଶ୍ୱର ଯାଉଚି। ତାକୁ ଭୋକ କରିବାରୁ ତାର ସ୍ୱାମୀ ତାକୁ ସେଇଠି ବସାଇ ଯାଇଚି ପାଣି ଆଣି ପ୍ରାୟ ଘଣ୍ଟାଏ ହବ। ସେମାନେ କେବେହେଁ ଗାଁରୁ ପଦାକୁ ବାହାରି ନାହାନ୍ତି। "ମୋ ମନ ଉଚ୍ଛନ୍ନ ହଉଚି, ସେ କୁଆଡ଼େ ଗଲେ ଟିକେ ଦେଖିନି।" ଯୁବତୀଟି ମିନତି ଜଣାଇଲା ଲୁବ୍ଧ ଜନତା ପ୍ରତି ।

ଗୋଟିଏ ଲୋକ ଭିଡ଼ ଭିତରୁ ବାହାରି ଆସି କହିଲା "କାନ୍ଦନା କାନ୍ଦନା, ମୋ ସାଙ୍ଗେ ଆ, କାଲି ସକାଳୁ ଖୋଜି ଦେବି।"

"ଭଗବାନ ତୁମକୁ କଇଲାଣ କରନ୍ତୁ ଭାଇ। ଆଗେ ତାକୁ ଟିକିଏ ଖୋଜି ଆଣନି" ରାମାବୋଉ ଓଢ଼ଣା ଟାଣି କହିଲା।

ମୋ ପାଖରୁ ଅନ୍ୟ ଜଣେ କହିଲା "ଆବେ ଅନାଉଚୁ କଅଣ ? ମାଲ ଉଡ଼ିଯିବ", ଇସ୍ କି ବୀଭତ୍ସ କଥା। ବୁଝିଲି ଅଳ୍ପକ୍ଷଣ ଭିତରେ ଏଠି ନାରକୀୟ ଲୀଳା ଚାଲିବ। ଧଡ଼ିଭାଇକୁ ଟାଣି ମୁଁ ବାହାରି ଯିବାକୁ ବସିଲି।

ଧଡ଼ିଭାଇ କିନ୍ତୁ ନିଶ୍ଚଳ।

ସେଇ ଜଣକ କହିଲା "କାନ୍ଦନା, ଆ ମୋ ଘରକୁ..."

ଏହା ପରେ ଦୁଇଜଣ ଉପକାରୀଙ୍କ ଭିତରେ ଲାଗିଲା ବାକ୍‌ଯୁଦ୍ଧ। ଜନତା ଦୁଇଭାଗ ହୋଇଗଲେ। ହଠାତ୍ ଜଣେ ପାଖ ତାଟିରୁ ବାଉଁଶ କାଢ଼ିଆଣି ପିଟି ଦେଲା ପାହାରେ। ଭୟରେ ଅନାଇ ଦେଖିଲି ଧଡ଼ିଭାଇ ପାଖରେ ନାହିଁ। ଗହଳି ଭିତରୁ ବାହାରି ଆସି ଅସହାୟ ଭାବରେ ଚାରିଆଡ଼େ ଚାହିଁଲି।

ଏହି ସମୟରେ ଜଣେ ମଫସଲିଆ ଗହଳି ଆଡ଼େଇ ଆସି କହିଲା, "କିଲୋ,

ରାମା ବୋଉ, ତୁ ଏକା ! ! ରାମା ବାପା କୁଆଡ଼େ ଗଲା ? ମଲା, ମତେ ଚିହ୍ନିପାରୁ ନାହୁଁ କି ? ମୁଁ ପରା ତୁମ ହରିଆ । ଆ, ଆ ମୋ ସାଥିରେ..." ହରିଆ ଥରେ ମୋ ଆଡ଼େ ଚାହିଁ ହସିଲା । ବୁଝିଲି ଧଡ଼ିଭାଇ । ଇସ୍, ଧଡ଼ିଭାଇ ମଧ୍ୟ ଏଡ଼େ କଦର୍ଯ୍ୟ ! !

ଯୁବତୀଟି ଏତେବେଳେ ଯାଏ ଭୟରେ ଥରୁଥିଲା । ଏତେବେଳେ ସେ ବୁଝିପାରିଥିଲା ଏ ବୀଭତ୍ସ କଳହର କାରଣ । ଟିକିଏ ସାହସ ପାଇ ସେ ଧଡ଼ିଭାଇ ପାଖରେ ଛିଡ଼ା ହେଲା । ଧଡ଼ିଭାଇ ମୋତେ ଆଖିଠାରି ଆଗକୁ ଚାଲିଲା । ଜଣେ ପାଟି କରି କହିଲା "ଆବେ, ମାଡ଼ପିଟ ହେଉଥା, ଚିଡ଼ିଆ ଚଇଲ୍" ଅନ୍ୟ ଜଣେ ଦୌଡ଼ି ଆସି ଧଡ଼ିଭାଇର ହାତ ଧରି କହିଲା, "ଛାଡ଼ ତାକୁ; ଥୋ ମାଲ୍"

ଧଡ଼ିଭାଇ ଭୟବିହ୍ୱଳ ଭାବରେ କହିଲା "ଏ ପରା ଆମ ଗାଁ ଝିଅ ବାବୁ...ମୁଁ..."

"ରଖିବେ, ଗାଁ ଝିଅପୁଅ ଆମେ ଜାଣୁନା", ଲୋକଟା ଧଡ଼ିଭାଇକୁ ଗୋଟାଏ ପ୍ରଚଣ୍ଡ ଧକ୍କା ମାରିଲା ।

ଧଡ଼ିଭାଇ ହାତରେ ଛୁରା ଚକ୍ ଚକ୍ କରି ଉଠିଲା । ତା ପରେ କଅଣ ହେଲା ମୁଁ ଜାଣେନି । ଦେଖିଲି ଧଡ଼ିଭାଇ ଗହଳି ଭିତରେ ବାଡ଼ି ବୁଲାଇବାରେ ଲାଗିଛି । ମୁହୂର୍ତ୍ତକ ପାଇଁ ମୋ ପାଖକୁ ଆସି କହିଲା, "ନେଇ ଷ୍ଟେସନ ପଳା ମୁଁ ଯାଉଛି ।"

ଯୁବତୀଟିକୁ ଟାଣି ଟାଣି ମୁଁ ଷ୍ଟେସନ ଆଡ଼େ ଦୌଡ଼ିଲି । ଷ୍ଟେସନରେ ପହଞ୍ଚି ମୁଁ ଥକ୍କା ମାରି ବସି ପଡ଼ିଲି ।

କିଛିକ୍ଷଣ ପରେ ଧଡ଼ିଭାଇ ଫେରିଲା । ମୁଣ୍ଡରେ ତାଙ୍କର ପଟି ବନ୍ଧା ହୋଇଚି । ପଟି ଭେଦ କରି ରକ୍ତ ବାହାରି କାନ ପାଖରେ ଜମି ଯାଇଚି । ଧଡ଼ିଭାଇ ମୋତେ ଦେଖି ନିଶ୍ଚିନ୍ତ ହୋଇ ଡାକିବାକୁ ଲଗିଲେ "ଆବେ ରାମା ବୋପା ବେ" ଅନେକ କ୍ଷଣ ଡାକିବା ପରେ ଦୂରରୁ ଶୁଭିଲା "ଓ....ଓ...ଓ"

"ଆବେ ଜଲ୍ ଦି..."

ରାମା ବୋପା ଆସିଲା । ସମସ୍ତେ ଘଟଣା ଶୁଣି ସେ ଧଡ଼ିଭାଇ ଗୋଡ଼ ଧରିବାକୁ ଯାଉଥିଲା । ଧଡ଼ିଭାଇ ତାକୁ ଧକ୍କା ମାରି କହିଲେ, "ଏଇଠି ଥା । ସକାଳ ହେଲେ ଯିବୁ । ଚାଲ୍‌ରେ ।"

"ଧଡ଼ିଭାଇ ତୁମେ ଏଡ଼େ ମହତ !" ମୁଁ ନକହି ରହି ପାରିଲି ନାହିଁ ।

"ମହତ ନ ନା ଆଉ କିଛି ! ଧେତ୍, ସେମାନଙ୍କ ମନରେ ଯେଉଁ ଦୁର୍ବଳତା ଅଛି, ମୋ ମନରେ ବି ଅଛି । ତେବେ ଅସହାୟତାର ସୁବିଧା ନେବା କାପୁରୁଷତା ।"

ଷ୍ଟେସନ ଛାଡ଼ି ଚାଲିଲୁ କଲେଜ ଆଡ଼େ । ରାତି ତିନିଟା । ରାସ୍ତାର ଦୁଇକଡ଼ରେ ଶୋଇଛନ୍ତି ଅଖା ଘୋଡ଼ି ହୋଇ ଅସଂଖ୍ୟ ଭିକ୍ଷୁକ ।

ଜଣେ ବୃଦ୍ଧ ତାଙ୍କ ଭିତରେ ଚାଲିଚନ୍ତି। ପ୍ରତ୍ୟେକଙ୍କ ପାଖରେ ଛିଡ଼ା ହୋଇ ଏଣେତେଣେ ଚାହିଁ ସେ ନଇଁପଡ଼ି କଅଣ ଯେପରି ଗୋଟାଇ ନେଉଛନ୍ତି। ନିଶ୍ଚୟ ବଦମାସ୍‌। ଧଡ଼ିଭାଇ ଭଳି ମୋ ମନରେ ମଧ୍ୟ ପରୋପକାର ଇଚ୍ଛା ଜାଗିଲା। ଦୌଡ଼ିଗଲି ତାକୁ ଧରିବାକୁ। ବୃଦ୍ଧ ଦୌଡ଼ିବାକୁ ଆରମ୍ଭ କଲା। ଧଡ଼ିଭାଇ ମୋତେ ଅଟକାଇ କହିଲେ "ସବୁ ସାଇଲୁ, ଆରେ ବୋକା, ସେ ବଦମାସ ନୁହେଁ, ଜଣେ ଅଦ୍ଭୁତ ଲୋକ। ମୁଁ ମଧ୍ୟ ପ୍ରଥମେ ତୋ ପରି ଭାବିଥିଲି। କିନ୍ତୁ ଦେଖିଲି ସେ ପ୍ରାୟ ଏମିତି ଆସି ପ୍ରତ୍ୟେକଙ୍କ ପାଖରେ ଗୋଟିଏ ଲେଖାଏଁ ଆଠଅଣି ରଖି ଯାଆନ୍ତି ନୀରବରେ... ସେ କିଏ କିନ୍ତୁ ମୁଁ ଜାଣେନି। ବହୁତ ଅନୁନୟ କରି ମଧ୍ୟ ସେ ପରିଚୟ ଦେଲେ ନାହିଁ।"

ଅଭିଭୂତ ହୋଇ ଅନାଇ ରହିଲି।

"ଚାଲ, ସେଠି କିଏ କାନ୍ଦୁଚି ଦେଖିବା।"

ଗୋଟିଏ ଭିକ୍ଷୁକ ଶବ ପାଖରେ ତାର ଝୁଅ ବସି କାନ୍ଦୁଚି। ଧଡ଼ିଭାଇ ତାକୁ ବୁଝାଇ ତାର କ୍ରନ୍ଦନ ବନ୍ଦ କଲେ। ଅନ୍ୟାନ୍ୟ ଭିକ୍ଷୁକମାନଙ୍କୁ ଡାକିଲେ। ଶବଟି ବହି ଦେବାକୁ କେହି ଉଠିଲେ ନାହିଁ।

ଗୋଟିଏ ବାଉଁଶ ଆଣି ଶବଟିକୁ ବାନ୍ଧୁ ବାନ୍ଧୁ ଧଡ଼ିଭାଇ କହିଲେ, "ଗୋଡ଼ ପାଖରୁ ଧର୍‌।" ଦୁଇଜଣ ଶବଟିକୁ ବହି ବଜ୍ରକବାଟି ବାଟ ଦେଇ ଖାନ୍‌ନଗର ଶ୍ମଶାନ ଆଡ଼େ ଚାଲିଲୁ। ଏପରି ପରିସ୍ଥିତିରେ କେବେ ପଡ଼ି ନାହିଁ। ଡର ଲାଗୁଥାଏ। ସବୁ ଭୂତପ୍ରେତ ଯେପରି ମୋ ସାଙ୍ଗେ ସାଙ୍ଗେ ଚାଲିଚନ୍ତି। ସେମାନଙ୍କର ନିଶ୍ୱାସ ମୁଁ ପିଠି କାନ୍ଧରେ ଅନୁଭବ କରିବାକୁ ଲାଗିଲି। କିନ୍ତୁ ଉପାୟ ନାହିଁ।

"ବାବା, କବାଟ ଖୋଲ", ଶ୍ମଶାନରେ ଶବ ଥୋଇ ଧଡ଼ିଭାଇ ଡାକିଲେ। ଶ୍ମଶାନର ବାବାଜୀ ଟାଟି ଖୋଲି ବାହାରିଲେ। ରାତିରେ ସେ ରୂପ ଦେଖି ମୁଁ ଡରିଗଲି।

"କିଏ ?" ବାବାଜି ବିକଟ ସ୍ୱରରେ ପଚାରିଲେ।

"କେଜାଣି କିଏ ? ଭିଖାରିଟିଏ ! ନିଅ ଟଙ୍କା, କାଠ ଦିଅ ।"

"ଓ, ଧଡ଼ିଭାଇ, ମଲା କହୁନା।" ବାବାଜି ଉତ୍‌ଫୁଲ୍ଲ ହୋଇ କହିଲେ।

ଚାବି ଆଣି କାଠଘର ଖୋଲି ବାବା କହିଲେ, "ନିଅ। କାଠ ସଜାଡ଼ି ଦେବି ?"

"ସଜାଡ଼" ଧଡ଼ିଭାଇ କହିଲେ।

ବାବା ଗଞ୍ଜେଇ ଦଳିବାକୁ ଲାଗିଲେ।

"ଚିତା ସଜେଇ ଜାଣୁ ?" ଧଡ଼ିଭାଇ ମୋତେ ପଚାରିଲେ।

"ନାଇଁ, କେବେ କରିନାହିଁ।"

"ଛି, କଅଣ ଜାଣୁ ତେବେ ତୁ। ଦେଖ ମୁଁ କେମିତି କରୁଚି। ଶିଖି ରଖ। ପ୍ରଥମେ ଚୁଲି କରିବାକୁ ହେବ। ବେଶି ଗାତ ନୁହେଁ, ତା ହେଲେ କାଠ ଜଲଦି ଜଳିଯିବ। ଶବ ପଡ଼ିଥିବ।"

ଚୁଲି ଖୋଳି ଧଡ଼ିଭାଇ କାଠ ସଜାଡ଼ିବାକୁ ଲାଗିଲେ।

"ଏପରି ଶବ ଜଳିବାକୁ ଡେରି ଲାଗେ। ଦିହରେ ଚର୍ବି ନାହିଁ କି ନା। ଚର୍ବି ଥିଲେ ନିଆଁ ଧରାଇ ଦେଲେ ନିଶ୍ଚିନ୍ତ- ଶବ ଆପେ ଆପେ ଜଳିବ। ୟା କୁ ଜଗି ରହି ଜଳାଇବାକୁ ହେବ। କାଠ ବେଶି ଖର୍ଚ୍ଚ। ତେବେ ଚିତା ସଜାଇ ଜାଳିଲେ ଅନେକ ପରିଶ୍ରମ କମ ପଡ଼େ, କାଠ ମଧ୍ୟ କମ୍ ଖର୍ଚ୍ଚ ହୁଏ।"

"ଏହାର ଗୋଟାଏ ନିୟମ ଅଛି ନା କଅଣ?"

"ବାଃ, ନାହିଁ? କେଉଁଆଡୁ ପବନ ଆସୁଚି ଦେଖିବାକୁ ହେବ। ପବନ ବେଶି ହେଲେ କାଠ ହୁ ହୁ କରି ଜଳିଯିବ, ପୁଣି ଜଳାଇବା ବେଳେ ଯଦି ବେଶି ଧୂଆଁ ହୁଏ ତେବେ ଶବ କାଳିଆ ପଡ଼ିଯିବ- ପୋଡ଼ିବାକୁ ଭାରି କଷ୍ଟ ହେବ। ପୁଣି ଝୁଣା ପକାଇ କେଞ୍ଚି କଳା ଛଡ଼ାଇଲେ ଜଳିବ।"

ପ୍ରଥମେ ଦୁଇଟି ବଡ଼ ମୋଟାକାଠ ଆଣି ଚୁଲିର ଦୁଇପାଖରେ ରଖି ଧଡ଼ିଭାଇ କହିଲେ "ଏହାରି ଉପରେ ସବୁ ନିର୍ଭର କରେ। ଦେଖିବାକୁ ହେବ ଏ ଯେମିତି ଜଲଦି ଜଳି ନ ଯାଏ- ତା ହେଲେ ସବୁଚିଂତା ଭୁଶୁଡ଼ି ପଡ଼ିବ ତଳେ- ପୁଣି ଉଠାଅରେ, ଶବକୁ ଅଲଗା ରଖରେ, କାଠ ସଜାଅରେ, ପୁଣି ତା ଉପରେ ଶବକୁ ଥୁଅରେ..." ଚିତା ସଜାଇ ଧଡ଼ିଭାଇ ଶବକୁ ଟେକି ତା ଉପରେ ଥୋଇଲେ। ଶବ ଉପରେ ଦୁଇ ଚାରିଖଣ୍ଡ କାଠ ଥୋଇ ଦୁଇଟି ମୋଟ କାଠ- 'ଚାପୁଆଣି'-ଦୁଇ ପାଖରୁ ଡେରିଦେଲେ। ତା ପରେ କୁଟା ଆଣି ବାଉଁଶ ଅଗରେ ବାନ୍ଧି ସେଥିରେ ନିଆଁ ଲଗାଇ ଚିତାର ଚାରିପାଖ ତିନିଥର ବୁଲି ମୁଖାଗ୍ନି ଦେଲେ। ଜଳନ୍ତା କୁଟାକୁ ଚୁଲିରେ ଗେଞ୍ଜି ସେ ସାନ ସାନ କାଠ ଦେଇ ଚୁଲି ଜଳାଇଲେ। ବାବାଜିକୁ କହିଲେ ଉତ୍ତରପଟେ ଲୁଗା ମେଲାଇ ଧରିବାକୁ। ମୁଁ ଓ ବାବାଜି ଲୁଗା ମେଲାଇ ଧରି ପବନ ଅଟକାଇଲୁ। ଚିତା ଜଳିଲା।

"ଇସ୍, ବାବା, ଚିତା ରଙ୍ଗ ଠିକ୍ ଅଛି ନା?"

"ଠିକ୍ ଅଛି, ଆସ।" ବାବାଜି ସମଝଦାର ଭଳି କହିଲେ।

"ବୁଝିଲୁ, ନିଆଁର ରଂଗ ଓ ଢଙ୍ଗରୁ ଜଣାଯିବ ଚିତା ହଇରାଣ କରିବ କି ନାଇଁ।"

"କେମିତି?"

"ଚିତା ଯଦି ଧୂ ଧୂ ହୋଇ ଜଳେ, ନିଆଁର ଶିଖା ବେଶି ଉପରକୁ ଉଠେ, ତା ହେଲେ ଭାରି ଖରାପ। କାଠ ଆଗେ ଜଳିଯିବ...ଶବ ପଡ଼ିଥିବ। ନିଆଁ ଯଦି ବେଶି ଉପରକୁ ନ ଉଠେ, ରଂଗ ଯଦି ହଳଦିଆ ହୁଏ ତେବେ ଭଲ।"

ଚିତାରୁ ଟିକିଏ ନିଆଁ ଆଣି ବାବାଜି ଚିଲମରେ ନିଆଁ ଲଗାଇଲେ। ତାପରେ ଗୋଟାଏ ସୁଦୀର୍ଘ ଟାଣ ଦେଇ ଚିଲମ ଧଡ଼ିଭାଇ ହାତକୁ ବଢ଼ାଇଦେଲେ।

ଚିତା ଗରମରେ ମୋତେ ଆରାମ ଲାଗିଲା। ସକାଳୁ ଥଣ୍ଡା ବେଶି ପଡ଼ିଥିଲା। ଆଖିପତା ମୋର ଲାଗିଗଲା।

"ଶୋଇନୁ, ଶୁଅ ଏଇଠି।"

ଶୋଇବାକୁ ଡର ମାଡୁଥାଏ। ଚାରିଆଡ଼େ ବିଲୁଆ କୁକୁରଙ୍କ ଚିତ୍କାର। ରାତ୍ରର ନିଶ୍ୱାସ ଯେପରି ମୁଁ ଶୁଣିବାକୁ ପାଉଥାଏ।

"ଡର ମାଡୁଛି।" ବାଧ୍ୟ ହୋଇ ଧଡ଼ିଭାଇ କାନରେ କହିଲି।

"ପାଗଳ କିରେ, ଶ୍ମଶାନରେ ଡର କଅଣ। ସହର ଭିତରେ ଯେତେ ଡର ଡ଼ର-ଏଠି କାଇଁରେ- ଶୁଅ ମୋ କୋଳରେ।"

ଧଡ଼ିଭାଇ କୋଳରେ ମୁଣ୍ଡ ରଖି ଶୋଇ ପଡ଼ିଲି।

ଯେତେବେଳେ ଉଠିଲି ପୂର୍ବ ଆକାଶରେ ସୁନ୍ଦରା ଫାଟିଲାଣି। ଅପୂର୍ବ ସେ ଦୃଶ୍ୟ। କେତେଥର ସକାଳେ ଏ ଦୃଶ୍ୟ ଦେଖିଚି, କିନ୍ତୁ ଶ୍ମଶାନରେ ଏହାର ଦୃଶ୍ୟ ମହାନ୍ ମନେ ହେଲା।

ଚିତାର ନିଆଁ ଲିଭି ଆସିଲାଣି। ଧଡ଼ିଭାଇ ନିଆ ଭିତରେ ପାଉଁଶ କେଞ୍ଚି କଅଣ ଖୋଜୁଚି।

"କଅଣ ଖୋଜୁଚ ଧଡ଼ିଭାଇ?" ପଚାରିଲି।

"ସବୁ ଜଳିଯାଏ, କିନ୍ତୁ ଅଷ୍ଟା ହାଡ଼ଟା ଶେଷ ହେବାକୁ ଡ଼େରି ଲାଗେ। ସେଟା କଉଠି ଅଛି ଖୋଜୁଚି।"

"କେମିତି ପାଇବ ଏଡ଼େ ଟିକିଏ ହାଡ଼ ଏ ନିଆଁଗଦାରୁ!"

"ଦେଖିବୁ ଆ।"

ବାଉଁଶ ଦେଇ ସେ ନିଆଁ ଖେଞ୍ଚିବାକୁ ଲାଗିଲେ।

"ସବୁ ନିଆଁ ହଳଦିଆ ଦିଶୁଚି, କିନ୍ତୁ ସେ ଟିକକ ଯେଉଁଠି ଥିବ ନେଳି ଦିଶିବ।" କେଞ୍ଚୁ କେଞ୍ଚୁ ଟିକିଏ ନେଳି ନିଆଁ ଦେଖି ସେ କହିଲେ, "ଇରେ, ଏଇଠି, ରହ ମ କୁଆଡ଼େ ଯିବୁ। ସବୁ ଶେଷ କରିଯିବି।"

ସବୁ ଶେଷ କରି ଧଡ଼ିଭାଇ ଦାର୍ଶନିକ ଭଳି ବିଡ଼ି ଟାଣିବାକୁ ଲାଗିଲେ।

ଆଜି ମୋର ବି.ଏ. ପରୀକ୍ଷା। କିଛି ପଢ଼ି ନାହିଁ।

# ଅସୀମ

ଦୀନକୃଷ୍ଣ ବିରକ୍ତି ସହିତ ଖବରକାଗଜଟା ଫୋପାଡ଼ି ଦେଇ କହିଲେ, କଅଣ ସେ ହୋଇଚି ଆଜି କାଲି, କୌଣସି ଆଡ଼େ କିଛି ନାହିଁ। ସବୁ କେମିତି ମାନ୍ଦା ଧରି ଗଲେଣି। ଯୁଦ୍ଧ ବେଳେ ବେଶ୍ ଥିଲା। ରୋଜ କିଛି ନା କିଛି ଚାଞ୍ଚଲ୍ୟକର ଖବର। ଆହୁରି ଚାରିଟା ଷ୍ଟେସନ ଅଛି ମଣିଷ ସମୟ କଟାଇବ କିପରି ?

ନରହରି ଅନ୍ୟ ବେଞ୍ଚକୁ ଗୋଡ଼ ଲମ୍ୱାଇ ଦେଇ ନିବିଷ୍ଟ ମନରେ ଗୋଟିଏ ବହି ପଢୁଥିଲେ। ଦୀନକୃଷ୍ଣ ଆଡ଼େ ଚାହିଁ ଟିକିଏ ହସି କହିଲେ, ଦେ, ଏ ବହିଟା ପଢ଼, ଭାରି ଚମତ୍କାର ଲେଖିଚି !

ଦୀନକୃଷ୍ଣ ନିରୁପାୟ ଭାବରେ ବହିଟି ଟାଣିଦେଇ ଖଣ୍ଡେ ନିଆଁ ରଡ଼ ଧରି ପକାଇବା ଭଳି ବହିଟିକୁ ନରହରିଙ୍କ କୋଳକୁ ଛାଟି ଫୋପାଡ଼ି ଦେଇ କହିଲେ, ଧେତ୍, ବାଜେ ବହି, ପାଗଳର ପ୍ରଳାପ ଖାଲି। ସେ ଦର୍ଶନ ବହିଗୁଡ଼ାକ ଉପରେ ମୁଁ ଭାରି ଚିଡ଼େ। ଗୋଟିଏ ନୂଆଚିନ୍ତା ଦବା ମାନେ ଗୋଟିଏ ନୂଆ କଳିର ମଞ୍ଜି ପୋତିବା। ମାର୍କସ କଅଣ କଲେ ?  ଗୋଟିଏ ନୂଆ କଳିର ମଞ୍ଜି ପୋତି ଦେଇଗଲେ ସିନା।

ସେଥିରେ ବିଚଳିତ ହେବାର କଅଣ ଅଛି। ସେ ଚିନ୍ତାଧାରାର ମଧ୍ୟ ମୃତ୍ୟୁ ହେବ ଏବଂ ତା ସ୍ଥାନରେ ଉଦୟ ହେବ ଆଉ ଗୋଟିଏ ଚିନ୍ତାଧାରା। ମନୁଷ୍ୟର ଦେହର ବିକାଶ ସଂଗେ ସଂଗେ ଚିନ୍ତାର ବିକାଶ ମଧ୍ୟ ହେଉଚି। ହୁଏତ ଦେହର ବିକାଶ ବନ୍ଦ ହୋଇଗଲାଣି, ମନର ବିକାଶ ଆରମ୍ଭ ହେଉଚି। ଏ ସବୁ ନ ପଢ଼ିଲେ ଜାଣିବୁ କିପରି !

ଦୀନକୃଷ୍ଣ ଅସହିଷ୍ଣୁ ଭାବରେ କହିଲେ, ରଖ୍ ତୋ ବିକାଶ। ତୁ ପଢ଼ ତାକୁ। ମୁହଁରେ ଯେତେ ବଡ଼ ବଡ଼ କଥା କୁହ ବାପା, ମନ ଧାଇଁଥାଏ କ୍ଷମତା, ପ୍ରତିପତ୍ତି, ଉତ୍ତେଜନା ପାଇଁ। ହେଇ ଇଡ଼େନ ଗଲେ ବ୍ୟାଙ୍କକ୍। ସେଠି ରୁଷିଆ ବିରୁଦ୍ଧରେ ଦକ୍ଷିଣ ପୂର୍ବ ଏସିଆ ମେଣ୍ଟ ଗଢ଼ା ହେବ। ଡ୍ୟୁଲେସ୍ ଟଙ୍କା ଥଳି ମୁହଁ ଖୋଲି ଦେଇଛନ୍ତି। ନିଅ ଯିଏ ଯେତେ ପାରୁଚ, ଟଙ୍କା ଦେଇ ଅସ୍ତ୍ର କିଣି ରୁଷିଆ ସାଙ୍ଗରେ ଲଢ଼ିବାକୁ। ମଧ୍ୟ

ପ୍ରାଚ୍ୟରେ ତୁର୍କୀ-ଇରାକ ଚୁକ୍ତି ହୋଇଗଲା। ମିଶର ଓ ଅନ୍ୟାନ୍ୟ ଆରବ ଦେଶ ତାର ବିରୋଧ କରିବେ। ଚୀନ ଫର୍ମୋଜା ଅଧିକାର ପାଇଁ ସଜବାଜ ହେଲାଣି। ଆମେରିକା ଫର୍ମୋଜାକୁ ରକ୍ଷା କରିବାକୁ ମଧ୍ୟ ସଜବାଜ ହେଲାଣି। ଇସ୍, ହେ ଭଗବାନ, ଲାଗି ଯାଉ ଏ ଯୁଦ୍ଧ, ଲାଗିଯାଉ। ଏ ନିରୁଦ୍‌ବେଗ ଜୀବନ ଅସହ୍ୟ। ଦୀନକୃଷ୍ଣ ଉତ୍ତେଜିତ ଭାବରେ ଦୁଇ ହାତରେ ନଖ ପରସ୍ପର ଘଷି ବେଞ୍ଚ ଉପରେ ଏପାଖ ସେପାଖ ହଲିବାକୁ ଲାଗିଲେ।

ନରହରି ଆଶ୍ଚର୍ଯ୍ୟ ଓ ବ୍ୟଥିତ ଭାବରେ ତାଙ୍କୁ ଚାହିଁ ରହି କହିଲେ, ଏହାକୁ ହିଁ କୁହନ୍ତି ବିକୃତ ମନ। ବିକୃତ ନ ହେଲେ...

ସାମନାସ୍ଥିତ ମାରଓ୍ୱାଡ଼ି କହିଲେ, ନେହିଁ ବାବୁ। ହାମି ବି କହୁଚି ଯୁଦ୍ଧ ଲଗ୍‌ନା ଚାହିୟେ। ବଜାର ଭାର ଘାଟତି। ଯୁଦ୍ଧ ନେହି ଲଗ୍‌ନେସେ କାରୋବାର ବିଲ୍‌କୁଲ୍ ବରବାଦ ହୋଇଯିବ। ହାମ ବଞ୍ଚେଙ୍ଗେ କୈସେ। କଂଗ୍ରେସକୁ ଦଶ ହଜାର, ମଜ୍‌ଦୁର୍ କେ ଲିୟେ ବୋନସ୍, ନୟା ଘର ଏ ସବୁ କରି ବଞ୍ଚେଙ୍ଗେ କୈସେ।

ନରହରି ତଳକୁ ମୁହ ପୋତି ମୁରୁକି ହସି କହିଲେ, କାହିଁକି ଅଗରା ମଞ୍ଜି, ତେନ୍ତୁଳି ମଞ୍ଜି, ପଥର ଗୁଣ୍ଡ ଏ ସବୁ କଅଣ କମି ଗଲାଣି ? ଆପଣମାନଙ୍କ ପାଇଁ ତ ସମସ୍ତଙ୍କର ସ୍ୱାସ୍ଥ୍ୟ ଗଲା; ଧନ ଗଲା, ମାନ୍ ବି ଗଲା। ପଢ଼ି ନାହାନ୍ତି ଖବର କାଗଜରେ, ସେ ଦିନ ଦେଶମୁଖ କହୁଥିଲେ ଭାରତର ବ୍ୟବସାୟୀମାନଙ୍କର ଅସାଧୁତା ପାଇଁ ଭାରତ ବାହାରେ ଭାରତୀୟ ମାଲର ଚାହିଦା କମି ଯାଉଚି। ପଞ୍ଚ ବାର୍ଷିକ ଯୋଜନା ସଫଳ ହୋଇ ପାରୁନାହିଁ।

ଆରେ ବାବୁଜୀ, ଦୋଷ ହାମାରି ନାହିଁ। ସବ୍ ନେତାୟୌଁକୁ ମୁଁ ପୈଚାହ୍ନ ଛି। ସବ୍ ଜୋୟାଚୋର, ଘୁସ୍ ଖବୈୟା। ଯହାଁ ଯାଓ, ପୈସା ଡାଲୋ କାମ୍ ଲୋ। ତୋ ଫିର୍ ହାମ୍‌ଭି ଛୋଡ୍ରୁଁ କାହେ।

ନରହରି ନିରୁତ୍ତର ରହିଲେ। ଦୀନକୃଷ୍ଣ କହିଲେ, ଲୋକଙ୍କୁ ଠକି ନଉଚନ୍ତି ସତ, କିନ୍ତୁ ମାରଓ୍ୱାଡ଼ିମାନେ ତାହାର ସଦ୍‌ବ୍ୟବହାର ମଧ୍ୟ କରୁଚନ୍ତି। ଧର୍ମଶାଳା ତିଆରି କରିବା, ଦାନ ଖୈରାତ କରିବାରେ ସେମାନେ ଯଥେଷ୍ଟ ଖର୍ଚ୍ଚ କରୁଛନ୍ତି। ଦୟା, ଦାନ ଆଦି ମହତ୍ ଗୁଣ କେବଳ ସେମାନଙ୍କ ପାଖରେ ତ ଆଜିକାଲି ଦେଖାଯାଏ। ଭଗବାନ ମଣିଷ ସୃଷ୍ଟି କରିଚନ୍ତି ସତ, କିନ୍ତୁ ଦୟା, ଦାନ ଆଦି ଦ୍ୱାରା ଦେବତା ମଧ୍ୟ ହେଉଚି।

ନରହରି ବାବୁଙ୍କ ମୁହଁରେ ବିରକ୍ତି ଫୁଟି ଉଠିଲା। ସେ ଟିକିଏ ଉତ୍ତେଜିତ ଭାବରେ କହିଲେ, ଦେଖନ୍ତୁ, କେହି କେହି ମଣିଷ ଦେବତା ହେବାର ସୁବିଧା ପାଇଁ ଅଧିକାଂଶ ଦରିଦ୍ର ରହିବା ଉଚିତ ନା କେହି ଯେପରି ଦରିଦ୍ର ନ ହୁଅନ୍ତି ତାହାର ବ୍ୟବସ୍ଥା

ହେବା ଉଚିତ। ଦୟା, ଦାନ ଯେଉଁମାନେ କରନ୍ତି ସେମାନେ ହୁଅନ୍ତି ଭଗବାନଙ୍କ ଭୟରେ କିମ୍ବା ଢୋକେ ଢୋକେ ନ ଦେଲେ ବିପ୍ଲବ ହେବ ଏହି ଭୟରେ କରନ୍ତି, ଯେପରି ଇଂରେଜମାନେ କରୁଥିଲେ।

ଦୀନକୃଷ୍ଣ ବାବୁ ଉତ୍ତେଜିତ ହୋଇ ପାଟି କରି କହିଲେ, ଏହି ସବୁ ମତ ପାଇଁ ତ ପାଶ୍ଚାତ୍ୟ ଦେଶରେ ଯେତେ ବ୍ୟଭିଚାର ବ୍ୟାପୁଛି। ନାରୀ ହରଣ ସୁରାପାନ ଆଦି ବ୍ୟଭିଚାର...

ନରହରି ବାବୁ ତାଙ୍କୁ ଶାନ୍ତ ରହିବାକୁ ଇଙ୍ଗିତ କରି କହିଲେ, ଦେଖନ୍ତୁ, ନାରୀ ହରଣ କୁହନ୍ତୁ, ସୁରାପାନ ଆଦି ଯାହା କୁହାନ୍ତୁ ସେ ଗୁଡ଼ିକ ଏଇ ମଣିଷର ପ୍ରବୃତ୍ତି। ସେଗୁଡ଼ିକ କଲେ ସମାଜରେ ବିଶୃଙ୍ଖଳା ସୃଷ୍ଟି ହୁଏ ସ୍ୱୀକାର କରୁଚି। ସେଇ ବିଶୃଙ୍ଖଳା ବନ୍ଦ କରିବାପାଇଁ ମଣିଷ ନାନା ସାମାଜିକ ନିୟମ ସୃଷ୍ଟି କରିଚି। କିନ୍ତୁ ଗୋଳମାଳ ହୁଏ ସେତେବେଳେ ଯେତେବେଳେ ଏହି ସାମାଜିକ ନିୟମଗୁଡ଼ିକ ଆମ୍ଭେ ନୈସର୍ଗିକ ନିୟମ ବୋଲି ଆଖ୍ୟା ଦେଇ ମଣିଷ ମନରେ ଗୋଟାଏ ଆତଙ୍କ ସୃଷ୍ଟି କରିବା ପାଇଁ ନରକର ଭୟ, ଭଗବାନଙ୍କ ଅଭିଶାପ ଇତ୍ୟାଦି ଆବିଷ୍କାର କରୁ। ଏହି ଆତଙ୍କ ପାଇଁ ମଣିଷ ମନ ବିକୃତ ହୁଏ। ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ମଣିଷ ସେ ନିୟମକୁ ଫାଙ୍କି ଦେବାକୁ ସୃଷ୍ଟି କରେ। ଭଗବାନଙ୍କୁ ଘୁସ୍ ଦେବାକୁ ଚାହେଁ। ଦୟା, ଦାନ ଗୋଟାଏ ପ୍ରକାରର ଘୁସ୍। ପରିସ୍ଥିତି ଓ ଶାସନ ଏପରି ହେବା ଉଚିତ୍ ଯେପରି ଦୟା, ଦାନ ଆଦି ଗୁଣର ଆବଶ୍ୟକତା ରହିବ ନାହିଁ। ସାମାଜିକ ନିୟମ ସହିତ ନୈସର୍ଗିକ ନିୟମର କୌଣସି ସମ୍ବନ୍ଧ ନାହିଁ।

ଷ୍ଟେସନରେ ଗାଡ଼ି ପ୍ରବେଶ କଲା। ସମସ୍ତେ ନୀରବ ରହି ଷ୍ଟେସନ ଆଡ଼େ ଚାହିଁଲେ। ଷ୍ଟେସନରେ କେହି ଯାତ୍ରୀ ନାହାନ୍ତି କେବଳ ଦୁଇଜଣ ମହିଳାଙ୍କ ଛଡ଼ା। ଏମାନଙ୍କ ଡବାଟି ଠିକ୍ ତାଙ୍କ ସାମନାରେ ଛିଡ଼ାହେଲା। ସେମାନଙ୍କ ଭିତରେ ଜଣେ ସୁନ୍ଦରୀ, ବୟସ ପ୍ରାୟ ୩୫। ଶାଢ଼ିଟି ଅପୂର୍ବ ଭଙ୍ଗିରେ ପିନ୍ଧିଚି। ଶରୀରର ସମସ୍ତ ବକ୍ରରେଖା ପରିସ୍ଫୁଟ। ଦେଖିଲେ ହିଁ ମନେ ହୁଏ ଯାହା ଆଉ ବକ୍ର ନାହିଁ ତାହା ମଧ୍ୟ ସାଧନା ଦ୍ୱାରା ବକ୍ରୀକୃତ ହୋଇଚି।

ତାଙ୍କୁ ଦେଖି ସମସ୍ତେ ମୁଗ୍ଧ ଭାବରେ ଚାହିଁ ରହିଲେ। କେବଳ ନରହରି ବାବୁ ପୂର୍ବ ପରି ନିବିଷ୍ଟ ଭାବରେ ବହି ପଢ଼ି ଚାଲିଲେ। ଅନ୍ୟ ଜଣକର ବୟସ କେତେ କହିବା ଅସମ୍ଭବ, ୨୫ରୁ ୪୬ ଯେ କୌଣସି ବୟସ ହୋଇପାରେ। ସେ ପିନ୍ଧିଛି ଖଣ୍ଡେ ଅତି ମଇଳା ଲୁଗା, ତା ମଧ୍ୟ ଅନେକ ତାଳି। ମୁଣ୍ଡର ବାଳଗୁଡ଼ିକ ଫୁରୁଫୁରୁ ଉଡୁଛି। ମନେ ହୁଏ ଜାତିରେ ବାଉରି କି କେଉଟ କିଛି। ଦୁଇଜଣଯାକ ଗାଡ଼ିରେ ଉଠିଲେ। ସୁନ୍ଦରୀ ମହିଳାଟି ଏମାନଙ୍କ ସାମନାରେ ବସିଲେ। ଅନ୍ୟ ଜଣକ ମଧ୍ୟ ତାଙ୍କରି ନିକଟରେ

ବସିବାକୁ ଯାଉଥିଲେ; କିନ୍ତୁ ସେ ହାତ ଦେଖାଇ କହିଲେ, ଏଇ ଏଟା ଦେଢ଼ା ଡବା, ଅନ୍ୟ ଡବାକୁ ଯା। ସେ ଭୟରେ ଓହ୍ଲାଇ ଯାଉଥିଲା, କିନ୍ତୁ ଠିକ୍ ଏହି ସମୟରେ ଗାଡ଼ି ଛାଡ଼ିଦେବାରୁ ସେ ଦୁଆର ପାଖରେ ବସି ପଡ଼ିଲା ତାର ସାନ ପୁଟୁଳିଟି ରଖି।

ଗାଡ଼ି ଚାଲିଲା। ଦୀନକୃଷ୍ଣ ବାବୁ ମଧ୍ୟ ପୁଣି ତର୍କ ଚଳେଇବା ଇଚ୍ଛାରେ ଆରମ୍ଭ କଲେ, ଯାହା କୁହନ୍ତୁ ଦର୍ଶନ ପଢ଼ି କିଛି ଲାଭ ନାହିଁ। ଦର୍ଶନ କେବଳ ଧୂଆଁ...

ନରହରି ହସି କହିଲେ ଏବଂ ଧୂମାତ୍ ବହ୍ନି। ଭଗବାନ, ଭଗବାନ ଯଦି ହେଉଛନ୍ତି ଏବଂ ତାଙ୍କର ଅସ୍ତିତ୍ୱରେ ଯଦି ସତେ ବିଶ୍ୱାସ ଅଛି ତେବେ ତାକୁ କୁହନ୍ତୁ ଯେପରି କବୀନ୍ଦ୍ର କହିଛନ୍ତି, ଆଗୁନେଇ ପରଶ ମନି ଛୋଆଁ ଓ ପ୍ରାନେ।

ରଖନ୍ତୁ ସେ ସବୁ ଅଳୀକ କଥା। ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି...କିନ୍ତୁ ଜବାହରଲାଲ ମିଛରେ ଶାନ୍ତି ପାଇଁ ବ୍ୟସ୍ତ ହେଉଚନ୍ତି। ଲାଗିଯାଉ ଯୁଦ୍ଧ। ଡୁଲେସ୍ ତ ନାରଦ ଭଳି କଳି ଲଗାଇବା ପାଇଁ ଢେଙ୍କି ବାହନରେ ଯା ପାଖ ତା ପାଖ ହେଉଛନ୍ତି, ଦେଖାଯାଉ। ଏଇ ଫର୍ମୋଜା ନେଇ ନିଶ୍ଚୟ ବିଶ୍ୱଯୁଦ୍ଧ ଲାଗିଯିବ। ଦର୍ଶନ ଛାଡ଼ି ବର୍ତ୍ତମାନର ରାଜନୀତି ଚର୍ଚ୍ଚା କରନ୍ତୁ, ସବୁ ବିଷୟ ଟିକିଏ ଅନୁଧ୍ୟାନ କରନ୍ତୁ। ହିଟଲର୍ କଅଣ ମରିଚନ୍ତି ଆପଣ କହୁଛନ୍ତି ? କଦାପି ନୁହେଁ, ଆଉ ଗୋଟେ ଯୁଦ୍ଧ ଲାଗିଲେ ସେ ବାହାରିବେ।

ସୁନ୍ଦରୀ ମହିଳାଟି କହିଲେ, କେଉଁ କଥା ପଡ଼ିଥିଲା କି ?

ଦୀନକୃଷ୍ଣ ବୋଧହୁଏ ତାଙ୍କ ସହିତ ଆଳାପ କରିବାକୁ ମନେ ମନେ ଉଦ୍‌ଗ୍ରୀବ ହୋଇଥିଲେ। ମହିଳାଙ୍କ ପ୍ରଶ୍ନରେ ତାହାର ସୁବିଧା ପାଇ ତାଙ୍କ ମୁହଁଟି ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଲା। ତାଙ୍କ ପ୍ରଶ୍ନର ଉତ୍ତର ନ ଦେଇ ସେ ପଚାରିଲେ, ଆପଣଙ୍କ...ଆପଣ...

ମୋ ନା' ଦୁର୍ଗା ଦେବୀ। ମୁଁ ଯାଇଥିଲି ପୁରୀ। ମହିଳା କଲ୍ୟାଣ ସମିତିର ଗୋଟାଏ ସଭା ଥିଲା। ପୁରୀରୁ କାଲି ଆସି ଏହି ଗାଁକୁ ଯାଇଥିଲି ଗୋଟିଏ ମହିଳା କଲ୍ୟାଣକେନ୍ଦ୍ର ଖୋଲିବାକୁ।

ଦୀନକୃଷ୍ଣ ମୁଗ୍ଧ ଭାବରେ ତାଙ୍କୁ ଚାହିଁ କହିଲେ, ବାଃ ଆପଣ ମହିଳା କଲ୍ୟାଣ ସମିତିର... ?

ସେକ୍ରେଟେରୀ।

ବାଃ ! ଆପଣମାନେ ହିଁ ତ ପ୍ରକୃତ ଦେଶସେବା କରୁଛନ୍ତି। ପ୍ରକୃତ ଧର୍ମ କରୁଚନ୍ତି।

କିନ୍ତୁ କଲେ କଅଣ ହବ। ଚାରିଆଡ଼େ ତ ଠକେଇ। ମୁହଁରେ ବଡ଼ କଥା କିନ୍ତୁ ଅସଲ କାମ ବେଳକୁ ସେ ପଛ ଘୁଞ୍ଚା। କେତେ ବଡ଼ବଡ଼ିଆଙ୍କ ନେତାଙ୍କୁ ଦେଖିଚି

ସମସ୍ତଙ୍କୁ ପରଖି ଦେଇଚି। ଆରେ, ଖାଲି ହାତରେ କିଛି ହେଲାଣି ! ଟଙ୍କା ଦିଅ ତେବେ ନା କିଛି କାମ ହେବ। କହିଲି, ଅନ୍ତତଃ ପାଞ୍ଚୋଟି ହଜାର ଦିଅନ୍ତୁ ପୁରୀରେ ଗୋଟିଏ ଶିଶୁ ଚିକିତ୍ସା କେନ୍ଦ୍ର ଖୋଲିବାକୁ। ମୁହଁରେ କହିଲେ, ହଁ ହଁ ନିଶ୍ଚୟ। କିନ୍ତୁ ଫାଇଲ କାମ ତ ଚାଲିଚି ଆଜିକୁ ବର୍ଷେ ହେବ। ଟଙ୍କା ନଦେଲେ କିଛି ହେବ, କହିଲେ ?

ନା, ନା, ତା କେମିତି ହେବ।

କିନ୍ତୁ ଇୟାଡ଼େ ଦେଖନ୍ତୁ ନିଜ ବେଳକୁ, ବାସ୍, ଘଣ୍ଟାକରେ କାମ ହାସଲ। ସଂଗେ ସଂଗେ ଦରମା ବଢ଼ିଗଲା। ନିଜର ପୁଅ, ନାତି ପାଇଁ ସାଙ୍ଗେ ସାଙ୍ଗେ ଟଙ୍କା ଆସିଗଲା। ଯେତେ ସବୁ...ଗାଁରେ ଗୋଟିଏ ବାଳିକା ବିଦ୍ୟାଳୟ ଖୋଲିଚି। ଭଲ ଶିକ୍ଷୟିତ୍ରୀଟିଏ ମିଳୁନାହିଁ ଟଙ୍କା ନାହିଁ ବୋଲି। ନରିପୁର ଶାସନରେ ଗୋଟିଏ ମାତୃମଙ୍ଗଳ କେନ୍ଦ୍ର ଖୋଲିଚି, କିନ୍ତୁ ସେଠି ଗୋଟିଏ ଧାଈ ବି ରହିପାରୁନାହିଁ, ଟଙ୍କାନାହିଁ ବୋଲି। କେତେ ଆଡ଼େ କଅଣ କରିବ ମଣିଷ। ଏକା ମୁଁ ଧାଇଁ ଧାଇଁ...ଅଥଚ ପଦ୍ମଶ୍ରୀ ଉପାଧି ବେଳକୁ ..ଛାଡ଼...

ଦୀନକୃଷ୍ଣ ବାବୁ ଏହା ଉପରେ କିଛି ମନ୍ତବ୍ୟ ନ କରି ପଚାରିଲେ, ଆପଣ...ଆପଣ କଅଣ...

ହଁ ମୁଁ ବିବାହିତା।

ମୋର ସ୍ୱାମୀ ଆମ ଗାଁରେ ଗୋଟିଏ ଡାକ୍ତରୀ ଦୋକାନ ଦେଇଚନ୍ତି।

କାହିଁକି ? କଟକରେ...

ନା; ସେ ହୋମିଓପାଥି ଡାକ୍ତର।

ଦୀନକୃଷ୍ଣ ହଠାତ୍ ପଚାରିଲେ, ଆଚ୍ଛା, ଆପଣଙ୍କର ଏହି ଛାଡ଼ପତ୍ର ଆଇନ ସମ୍ବନ୍ଧରେ ମତ କଅଣ ?

ଦୁର୍ଗାଦେବୀ କହିଲେ, ଖୁବ୍ ଭଲ ହେବ। ମୋତେ ତ ଏ ବ୍ୟବସ୍ଥା ଭଲ ଲାଗେ ନାହିଁ। ମନ ମିଳିଲା ତ ଏକାଠି ରହିଲୁ, ନ ମିଳିଲା ତ ଅନ୍ୟ ବ୍ୟବସ୍ଥା କଲୁ, ଏଥିରେ ଲଜ୍ଜାର କାରଣ କଅଣ ଅଛି। ଆତଙ୍କିତ ହେବାର କଅଣ ଅଛି ମୁଁ ବୁଝିପାରେନା !

ଦୀନକୃଷ୍ଣ ବାବୁ ଉତ୍ସାହିତ ହୋଇ କହିଲେ, ନିଶ୍ଚୟ, ଏତ ଅତି ସରଳ କଥା। ଏ ବିଷୟରେ ଏତେ ଆଲୋଚନା ତା ପ୍ରୟୋଜନ କଅଣ। ଆପଣ ତ ସବୁ ବିଷୟରେ ବେଶ୍ ଚିନ୍ତା କରିଛନ୍ତି।

ନରହରି ବାବୁ ବହିରୁ ମୁହଁ ଟେକି ତଳେ ବସିଥିବା ସ୍ତ୍ରୀ ଲୋକଟି ଆଡ଼େ ଚାହିଁ କହିଲେ, ମାଉସୀ, ଏଇଠି ଆସି ବସ। ତଳେ କେତେ ବସିଥିବ।

ସ୍ତ୍ରୀ ଲୋକଟି ଓଢ଼ଣା ଟାଣି ନୀରବ ରହିଲା।

ତୁମ ନାଁ କଅଣ ।

ଦୁରୁଗା ।

କେଉଁଠିକି ଯାଉଚ ?

ଯାଉଚି ଭାଇ ଘରକୁ ।

କାହିଁକି ?

କିଛି ଟଙ୍କା ଆଣିବି । ଗେରସ୍ତ ଆଜିକି ଛ' ମାସ ହେବ ବାତ ବେମାରୀରେ ପଡ଼ିଚି । କାମ ଧନ୍ଦା ନାହିଁ । ଗୋଟିଏ ପୋଖରୀ ଜମିଦାରଙ୍କ ପାଖରୁ କିଛି ଟଙ୍କା ଦେଇ ଏ ବର୍ଷ ପାଇଁ ଧରିଚି । ଯାଉଚି ଭାଇ ପାଖରୁ କିଛି ଟଙ୍କା ଆଣି ଦଳ କଢ଼ାଇ ମାଛ ଛାଡ଼ିବି । ପୁଅଟିକୁ ପାଠ ପଢ଼ଉଚି ଯେ ତାହା ଖର୍ଚ୍ଚ ଦେଇ ପାରୁନାହିଁ ।

ଏତକ କହି ମହିଳାଟି ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ବାହାରେ ଆକାଶକୁ ଚାହିଁ ରହିଲା ।

ନରହରି ବାବୁ ଟିକିଏ ମୁରୁକି ହସି ଦୀନକୃଷ୍ଣ ବାବୁଙ୍କୁ ଚାହିଁ କହିଲେ, ଦେଖନ୍ତୁ ଏ ଦୁଇଜଣ ଭଦ୍ରମହିଳାଙ୍କ ସମସ୍ୟା ଭିତରେ ପ୍ରଭେଦ କେତେ । କେଉଁ ସମସ୍ୟାଟି ମହାନ୍ କହିବେ ? ଆଚ୍ଛା, ତାର ଛାଡ଼ପତ୍ର ବିଷୟରେ ମତ କଅଣ ଜଣାଯାଉ । ସେମାନଙ୍କର ମତ ହିଁ ତ ପ୍ରକୃତ ମତ । ଆମ ଭଳି ବିକୃତମନା ମଣିଷର ମତ ତ ବାସ୍ତବରେ ମତ ନୁହେଁ । ଆଚ୍ଛା, ମାଉସୀ, ତୁମେ କିଛି ମନେକରିବ ନାହିଁ, ଏ ଗେରସ୍ତକୁ ଛାଡ଼ି ଅନ୍ୟ ବିବାହ କରୁ ନା ।

ମହିଳାଟି ଘୃଣା ଓ ବିରକ୍ତିରେ ମୁହଁ ବୁଲାଇ ଦେଇ କହିଲା, ବାବୁ, କଅଣ, କହୁଚନ୍ତି !!

କାହିଁକି ? ଛାଡ଼ପତ୍ର ଆଇନ ତ ସରକାର କରିସାରିଲେଣି । ଆଉ ତା ବାଧା କିଛି ନାହିଁ ।

ସେ ସବୁ ମୁଁ ଜାଣେ ନା କିଛି । ହାତ ଯାର ଥରେ ଧରିଚି, ଚିରଦିନକୁ ଧରିଚି । ସେ ଯାହା ହେଉ ।

ଆଚ୍ଛା ଯଦି ତୁମ ଗେରସ୍ତ ତୁମକୁ ବାଡ଼େଉ ଥାଆନ୍ତେ, ମଦ ପିଉ ଥାଆନ୍ତେ, ଅନ୍ୟ ଗୋଟିଏ ସ୍ତ୍ରୀ ସହିତ ସମ୍ପର୍କ ରଖନ୍ତା ତେବେ ତୁମେ କଅଣ କରନ୍ତ ?

ସ୍ତ୍ରୀ ଲୋକଟି ଏଥର ଓଢ଼ଣା ଖୋଲି ଦେଖି ଚାହିଁ ହସି କହିଲା, ବାବୁ ମାଇକିନିଆର ବୁଦ୍ଧି ନ ଥିଲେ, ସେ ଖରାପ ହେଲେ ମରଦମାନେ ଏମିତି ହୁଅନ୍ତି । ନ ହେଲେ ମରଦଙ୍କ ମୁରଦ କେତେ ସେ ମାଇକିନିଆଙ୍କୁ ବଳିଯିବେ । ସତ କହିବାକୁ ଗଲେ, ବାବୁ, ଆମେ ତାଙ୍କ ଉପରେ ଯେତେ ଅତ୍ୟାଚାର କରୁ, ସେମାନେ ଆମ ଉପରେ ସେତେ ଅତ୍ୟାଚାର କରନ୍ତି

ନାହିଁ। ବିଧାତା ତାଙ୍କୁ ବଣପକ୍ଷୀ ପରି ସୃଷ୍ଟି କରିଛନ୍ତି। ଆମେ ତାଙ୍କୁ ପିଞ୍ଜରାରେ ପୋଷା ମନେଇ ରଖୁ। ଇଏ ଯୋଉଁ ଛାଡ଼ପତ୍ରର ଆଇନ୍ କଥା କହୁଚନ୍ତି ମୋ ମନେ ହେଉଛି ମରଦମାନେ ନିଜେ ଆମ କବଳରୁ ଖସିବାକୁ ସେ ଆଇନି କରୁଛନ୍ତି। ମାଇକିନିଆମାନେ ସେ ସଭାରେ ଥିଲେ କେବେହେଲେ ଆଇନି ହୁଅନ୍ତା ନାହିଁ।

ନରହରି ବାବୁ ସ୍ତ୍ରୀ ଲୋକଟିର କଥାରେ ଚମତ୍କୃତ ହୋଇ କହିଲେ, ନା ମାଉସୀ, ସେ ସଭାରେ ଅନେକ ସ୍ତ୍ରୀ ଲୋକ ଅଛନ୍ତି। ସେମାନେ ଏ ଆଇନ୍‌କୁ ଭଲ କହୁଚନ୍ତି। ସେମାନେ ମାଇକିନିଆଙ୍କ ସ୍ୱାଧୀନତା ଚାହାନ୍ତି।

ସ୍ତ୍ରୀ ଲୋକଟି ବିରକ୍ତିରେ ମୁହଁ ଛାଟି କହିଲା, ସେଗୁଡ଼ାକ ମାଇକିନିଆ ନୁହନ୍ତି, ଅଣ୍ଡିରାଚଣ୍ଡୀ। ସେମାନଙ୍କ ନିଜର ଶକ୍ତି ନାହିଁ। ଆମେ ତ ରାଣୀ। ମରଦମାନେ ତ ପରଜା। ଆମେ କଅଣ ସ୍ୱାଧୀନ ହେବା !

ଗାଡ଼ି ଆଉ ଗୋଟିଏ ଷ୍ଟେସନରେ ଛିଡ଼ା ହେଲା। ସ୍ତ୍ରୀ ଲୋକଟି ପୁଟୁଳିଟି ଧରି ଓହ୍ଲାଇ ଗଲା।

ନରହରି ବାବୁ କହିଲେ, ବୁଝିଲେ, ସମୂହ ମଙ୍ଗଳ ପାଇଁ ଗୋଟାଏ ଶାସନ ଦରକାର। ପ୍ରଜାମାନେ ନିଜର ମଙ୍ଗଳ ପାଇଁ ସେଇଥି ପାଇଁ କଡ଼ା ଶାସନ ଚାହାନ୍ତି। ନାରୀ ହେଲା ପୁରୁଷର ଶାସକ, ଭାରି ଜବରଦସ୍ତ ଶାସକ। ପୁରୁଷର ଲାଳସା, କାମ ପ୍ରବୃତ୍ତି ସବୁ ଭାରି ଦୁର୍ଦ୍ଦମନୀୟ। କେବଳ ନାରୀ ସେଗୁଡ଼ିକୁ ଶାସନ କରିପାରେ। ଛାଡ଼ପତ୍ର ହେଲେ ପୁରୁଷମାନେ ଉଚ୍ଛୃଙ୍ଖଳ ହୋଇଯିବେ। ସବୁବେଳେ ହାଣ କାଟ ଚାହିଁବେ। କ୍ଷମତାରେ ମାତିବେ। ତେଣୁ ଗୋଟିଏ ସ୍ଥାୟୀ ଗୃହ, ଗୋଟିଏ କେବଳ ଗୋଟିଏ ନାରୀ ଦରକାର। ପାଶ୍ଚାତ୍ୟ ଦେଶରେ ଏଇ ଛାଡ଼ପତ୍ର ପାଇଁ ଯେତେ ଯୁଦ୍ଧ ମଦ ମାତି ଉଠିଚି। ଆଉ ଏଇ ଗଣତନ୍ତ୍ର ଶାସନ, ଛାଡ଼ପତ୍ର ପରି ପାଞ୍ଚବର୍ଷରେ ଗୋଟିଏ ନୂଆ ଶାସକ, ଏ ମଧ୍ୟ ସେହିପରି ବ୍ୟଭିଚାର ସୃଷ୍ଟି କରିବ।

ଦୀନକୃଷ୍ଣ ବାବୁ ତାଚ୍ଛଲ୍ୟ କରି କହିଲେ, କଅଣ ପ୍ରଳାପ ବକୁଚନ୍ତି। ଗଣତନ୍ତ୍ର ଶାସନ ଖରାପ!! ଆଶ୍ଚର୍ଯ୍ୟ!! ଆପଣ ଦର୍ଶନ ପଢୁଛନ୍ତି ନା ପାଗଳ ହେଲେଣି!! ପୃଥିବୀର ଚାରିଆଡ଼େ ଗଣତନ୍ତ୍ର ଶାସନ ଅଥଚ...

ଗଣତନ୍ତ୍ର ଶାସନ ନୁହେଁ, ତାରି ନାଁ'ରେ ନିଜର କ୍ଷମତା ପ୍ରସାର। ଲୋକଙ୍କୁ ଭୁଲେଇ...

ଧେତ୍ ଛାଡ଼ନ୍ତୁ ସେ କଥା। ଦୀନକୃଷ୍ଣ ବାବୁ ଘୃଣା ସହକାରେ ଖବରକାଗଜଟି ଗୋଟାଇ ପଢ଼ିବାକୁ ଲାଗିଲେ।

ଦୁର୍ଗାଦେବୀ ପଚାରିଲେ, ଖବର କଅଣ ?

କିଛି ନାହିଁ ଆଜ୍ଞା। ସବୁ ମାନ୍ଦା ଧରି ଗଲାଣି। ଖାଲି ମେଣ୍ଟ ହେଉଚି। ଦକ୍ଷିଣ-ପୂର୍ବ ଏସିଆ ମେଣ୍ଟ। ତୁର୍କୀ-ଇରାକୀ ମେଣ୍ଟ। ମଧ୍ୟପ୍ରାଚୀ ମେଣ୍ଟ। ଏସିଆ-ଆଫ୍ରିକା ମେଣ୍ଟ ଉତ୍ତର ଆଟଲାଣ୍ଟିକ ମେଣ୍ଟ। ଖଣ୍ଡାର ବେଣ୍ଟ ନାହିଁ ଆଉ, ତେଣୁ ଖାଲି ମେଣ୍ଟ। ଇଡ଼େନ୍, ଡୁଲେସ୍ ଖାଲି ଧାଁ ଧପଡ଼ କରୁଛନ୍ତି ପୃଥିବୀର ଏ ପାଖରୁ ସେ ପାଖ। ସାଇବିରିୟାର ଭାଲୁ-ସାହିତ୍ୟ ପ୍ରସଂଗରେ ପଢ଼ିଚନ୍ତି ନା ? ତାଙ୍କର ଗାଡ଼ି ପଛରେ ବସି ଆନନ୍ଦରେ କୋଳି ଖାଉଚି। ସେ ଧାଁ ଧପଡ଼ କରୁନାହିଁ।

ନରହରି ବାବୁ ତନ୍ମୟ ହୋଇ ଟିକିଏ ପାଟିକରି ପଢ଼ିବାକୁ ଲଗିଲେ।

ମନୁଷ୍ୟ ନିଜେ ହିଁ ନିଜ ପାଖରେ ସବୁଠୁ ବେଶି ଦୁର୍ବୋଧ। ସେ ବିଶ୍ୱର ନିୟମ ଜାଣି ପାରୁନାହିଁ କାରଣ ସେ ନିଜେ ନିଜକୁ ହିଁ ଜାଣିପାରୁ ନାହିଁ। ଆଇନ୍‌ଷ୍ଟାଇନ୍ କହିଚନ୍ତି, ଏହା ମହା ସୃଷ୍ଟି, ହିନ୍ଦୁମାନେ ଯାହାକୁ ପରମବ୍ରହ୍ମ କୁହନ୍ତି, ତାହାଙ୍କୁ ଜାଣିବାରେ ଯେଉଁ ଅମର ଆନନ୍ଦ ଅଛି ତାହା ହିଁ ବିଜ୍ଞାନର ବୀଜ। ବସ୍ତୁ ପ୍ରତିଦିନ ଶକ୍ତିରେ ପରିଣତ ହେଉଅଛି। ଦିନ ଆସିବ ଯେଉଁ ଦିନ ଆଉ ବସ୍ତୁ ରହିବ ନାହିଁ। ଏ ମହା ସୃଷ୍ଟି କେବଳ ନିଜର ଶକ୍ତିରେ ପରିବ୍ୟାପ୍ତ ହୋଇଯିବ। ପୁଣି ସେଇ ଶକ୍ତିର ଅନ୍ତର୍ନିହିତ ଇଚ୍ଛାରେ ସେହି ଶକ୍ତିର ନାନା ପ୍ରକାର ସଂମିଶ୍ରଣରେ ବସ୍ତୁ ସୃଷ୍ଟି ହେବ, ପୁଣି ଜୀବ ସୃଷ୍ଟି ହେବେ...

ଗରମ ଆଳୁଦମ୍, ପାନବିଡ଼ି ସିଗାରେଟ୍, ଗରମ ଚା...

ଆରେ, ଉଠନ୍ତୁ, ଉଠନ୍ତୁ, ଷ୍ଟେସନ ହୋଇଗଲା...

ନରହରି ବାବୁ ଉଦ୍‌ଭ୍ରାନ୍ତ ଭଳି ଚାହିଁ ରହିଲେ...

ଦୀନକୃଷ୍ଣ ବାବୁ ଦୁର୍ଗାଦେବଙ୍କ ମାଲପତ୍ର ଧରି କହିଲେ, ନା, ନା, ଆପଣଙ୍କୁ କଷ୍ଟ କରିବାକୁ ଦେବି ନାହିଁ...

ଦୁର୍ଗାଦେବୀ ପଚାରିଲେ, ଆପଣ ପରା କଟକ ଯିବେ, ଟିକଟ କିଣିଛନ୍ତି ?

ନା, ଆଜି ଏଠି ଟିକିଏ କାମ ଅଛି। ଆପଣଙ୍କର ଅତିଥି ହେବି।

# ମିମିର ସାହିତ୍ୟ ଶିକ୍ଷା

ଜୀବନ ବାବୁଙ୍କ ମନରେ ଭାରି କଷ୍ଟ । ତାଙ୍କର ଏକମାତ୍ର ସନ୍ତାନ, କନ୍ୟା ମିମି ହୋଇଛି ଭାରି ବୋକୀ । ପଢ଼ାରେ ତାର ମନ ନାହିଁ, ବହି ଧରି ବସିଲେ ଢୋଳାଏ । କିଛି ପ୍ରଶ୍ନ ପଚାରିଲେ ବୋକାଙ୍କ ଭଳି ଚାହିଁ ରହିଥାଏ ।

ଅଧଘଣ୍ଟାଏ ଧରି ବକର ବକର ହୋଇ ଜୀବନ ବାବୁ ପ୍ରାଣପଣେ ଚେଷ୍ଟା କରୁଚନ୍ତି ବୁଝାଇବାକୁ- "ଏ ହୃଦୟ ମୋର ଢାଳିଦେଲି ଆଜି ତୁମରି ପାଦେ ହେ ନାଥ ।" ମିମି ପାଟିଟାକୁ ମେଲା କରି ବଡ଼ ବଡ଼ ଆଖିରେ ସବୁ ଯେମିତି ଗିଳି ଯାଉଚି, ସବୁ ଯେମିତି ବୁଝିପକାଉଚି ଏମିତି ଭାବରେ ଚାହିଁ ରହିଚି । ମଝିରେ ମଝିରେ ତାର କୁଞ୍ଚୁକୁଞ୍ଚିଆ ବାଳଗୁଡ଼ିକ ପବନରେ ଉଡ଼ି ଆସି ଆଖି ଉପରେ ପଡ଼ିବାରୁ ମିମି ବିରକ୍ତ ହୋଇ ସେଗୁଡ଼ିକ ଉପରକୁ ଠେଲିଦେଇ ପୁଣି ସେମିତି ଚାହିଁ ରହୁଚି। ସତେ ଯେପରି ବାଳଗୁଡ଼ିକ ତାର ବୁଝିବାରେ ବ୍ୟାଘାତ ଜନ୍ମାଇବାରୁ ସେ ଭାରି ବିରକ୍ତ। ମିମିର ଭାବ ଦେଖି ଜୀବନ ବାବୁ ଅଧିକ ଉତ୍ସାହରେ ବୁଝାଇ ଚାଲିଛନ୍ତି। କିଛି ସମୟ ପରେ ମିମିର ବିସ୍ଫାରିତ ବଡ଼ ବଡ଼ ଆଖି ଯୋଡ଼ିକ କ୍ରମେ ଛୋଟ ହୋଇ ଆସିଲା । ପ୍ରାଣପଣେ ସେ ଉପର ପତାକୁ ଟେକି ରଖିବାକୁ ଚେଷ୍ଟା କରୁଚି । ଘଣ୍ଟାଏ ଧରି ଉକ୍ତ ପଙ୍‌କ୍ତିଟିକୁ ବୁଝାଇବା ପରେ ଜୀବନ ବାବୁ ମନରେ ସନ୍ତୋଷ ଲାଭ କଲେ ଯେ ମିମିକୁ ତାହାର ସରଳାର୍ଥ ଓ ଭାବାର୍ଥ ହୃଦୟଙ୍ଗମ କରାଇ ପାରିଚନ୍ତି । ସନ୍ତୋଷରେ ହସି ହସି ସେ ଏଥର ପଚାରିଲେ,- "ବୁଝିଲୁ ମା ?"

ମିମି ପୁଣି ଥରେ ମୁଣ୍ଡବାଳ ଟେକି ଦେଇ ବାଁ ଆଡୁ ଡ଼ାହାଣକୁ ମୁଣ୍ଡକୁ ଯଥା ସମ୍ଭବ ନୁଆଁଇ ମୁହଁରେ ହସ ଫୁଟାଇ ଜଣାଇଲା, ସେ ସବୁ ସଂପୂର୍ଣ୍ଣ ରୂପେ ହୃଦୟଙ୍ଗମ କରିପାରିଚି । କିନ୍ତୁ ଆଖିରେ ତାହାର ଭୟ ଫୁଟି ଉଠିଲା । ଘୁମନ୍ତ ଆଖିଯୋଡ଼ିକ ଭୟରେ ବଡ଼ ବଡ଼ ହୋଇଗଲା ।

ଜୀବନ ବାବୁ ରାଗିଯାଇ କହିଲେ, "ବୁଝିଚୁ ତ ବୋକାଙ୍କ ଭଳି ଚାହିଁ ରହିଚୁ କିଆଁ ? ବୁଝା କଅଣ ବୁଝିଲୁ, ବୁଝା !"

ମିମି ଦୁଇ ଚାରି ଢୋକ ଛେପ ଗିଳି ଆରମ୍ଭ କଲା - "ନାଥ ବୋଇଲେ ସ୍ୱାମୀ କି ଭଗବାନ୍, ଯିଏ ଆମକୁ ସୁରୁଷ୍ଟି କରିଚନ୍ତି। ସିଏ ଭାରି ଭଲଲୋକ, କାହାରିକୁ କିଛି କହନ୍ତି ନାହିଁ, କାହାରି ଉପରେ ରାଗନ୍ତି ନାହିଁ, ଭା-ଆ-ଆ-ରି ଭଲ ଲୋକ ଜଣେ।"

"ଛେନାଟା ବୁଝିଚୁ, ବଦମାସ କାହିଁକା। ଘଣ୍ଟାଏ ଧରି ବଜର ବଜର ହେଲି। ଶେଷକୁ କହିଲୁ ଭଗବାନ୍ ଜଣେ ଭଲ ଲୋକ। ସୃଷ୍ଟି ମୁହଁରେ ପଶୁ ନାହିଁ, କହୁଚି 'ସୁରୁଷ୍ଟି'। ଆହୁରି ପିଲା ହୋଇଯା ମ! ଆଠ ବର୍ଷର ଝୁଅ ହେଲାଣି, ପଞ୍ଚମ ଶ୍ରେଣୀରେ ବର୍ଷେ ଫେଲ୍ ହେଲାଣି...ଲାଜ ନାହିଁ ଟିକେ..."

ମିମି ଭୟରେ ପଛକୁ ଘୁଞ୍ଚିଯାଇ କହିଲା, "ନା, ନା, ଭଗବାନ୍ ଜଣେ....ଭଗବାନ ଜଣେ..."

"କଅଣ ଭଗବାନ ଜଣେ ?" ଜୀବନ ବାବୁ ସଗର୍ଜନେ ପଚାରିଲେ।

ଦୋହରାଇ ତେହେରାଇ ମିମି ମନେ ମନେ ନିଜେ ନିଜକୁ ପଚାରିଲା, ଭଗବାନ୍ କଅଣ ? ବାପା କଅଣ କହିଲେଟି ? ଭଗବାନ୍ କଅଣ ? ଏହି ସମୟରେ ମିମିର ଗେଲବସର ଝୁଅ ଶଙ୍କି ଦୌଡ଼ି ଆସି ମିମିର କୋଳକୁ ଚଢ଼ିଯାଇ କହିଲା, ମ୍ୟାଉଁ ମ୍ୟାଉଁ—

ମିମିର ପାଟିରେ ପଶିଗଲା, "ଭଗବାନ ଜଣେ ମ୍ୟାଉଁ।"

ଜୀବନ ବାବୁଙ୍କର ଭୟଙ୍କର କ୍ରୋଧ ଜାତ ହେଲା। ସେ ଶଙ୍କିର ବେକକୁ ଧରି ଛାଟିଦେଇ ରୋଷେଇଶାଳଆଡ଼କୁ ଚାହିଁ ପାଟି କରି କହିଲେ, "ପଚାଶ ଥର କହିଲିଣି ଯେ ଘରେ ବିରାଡ଼ି ଫିରାଡ଼ି ରଖ ନା, ପଢ଼ାରେ ଗୋଳମାଳ ହବ...ଦିନରାତି ସେଇ ବିରାଡ଼ି ସାଙ୍ଗରେ ଖେଳ!! ଇସ୍କୁଲରୁ ଆସି ଘରେ ପାଦ ଦେବା ମାତ୍ରକେ ବହିପତ୍ର ଫୋପାଡ଼ିଦେଇ ଆଗେ ଖୋଜା ହେବ ଶଙ୍କି କାହିଁ! ହ୍ୟାପ୍, ମାତୃ ଗୁଣେ ଦୁହିତା ହୋଇଚି ! ମିଲୁ ନାହିଁ, ଦେଖିଲୁ ଶଶଧର ବାବୁଙ୍କ ଝୁଅକୁ, କେମିତି ପାଟି କରି ପଢୁଚି। ଦେଖିଲୁ ଲିଙ୍ଗରାଜ ବାବୁଙ୍କ ଝିଅକୁ କେମିତି କ୍ଲାସ୍‌ରେ ପ୍ରଥମ ହେଉଚି।ମୋର କପାଳକୁ ତୁ ଆସିଲୁ। ଏ ବଂଶରେ କେହି ଗୋଟାଏ ହେବେ ନାହିଁ, କେହି ଗୋଟାଏ ନାଁ' ରଖିବେ ନାହିଁ। ଗୋଟାଏ ପୁଅ ହୋଇଥିଲେ...ଛାଡ଼ୁଃ। କପାଳ, କପାଳ ! ହ୍ୟାପ, ଆଉ ପରୀକ୍ଷାରେ ଖାତାସବୁ ଚିରି ଡଙ୍ଗା କରି ଭସେଇ ଦେଇ ଚାଲି ଆସିଲା। ମଲୁ ନାହିଁ ଯା ତୁ..."

ଗତ କ୍ଲାସ ଉଠା ପରୀକ୍ଷାରେ ପରୀକ୍ଷା ଦେବାକୁ ମିମି ଇସ୍କୁଲରେ ବସିଚି, ଏହି ସମୟରେ ଘୋର ବର୍ଷା ହେଲା। ପାଣି ଇସ୍କୁଲରେ ବାରନ୍ଦା ଟପି ଘର ଦୁଆର ମୁହଁ ପର୍ଯ୍ୟନ୍ତ ଚାଲି ଆସିଲା। ମିମିର ମନ ଆଉ ଠିକ୍ ରହିଲା ନାହିଁ। ପରୀକ୍ଷା ଦେଉଚି- ସେ ଏକଥା ଏକଦମ୍ ଭୁଲିଗଲା। ସେ ଧୀରେ ଧୀରେ ପରୀକ୍ଷା ଘରୁ ବାହାରି ଚାଲି ଆସିଲା।

ପରୀକ୍ଷା ଖାତା ପତର ପତର କରି ଚିରି ଡଙ୍ଗା କରି ଭସେଇ ଦେଲା । ଡଙ୍ଗାଗୁଡ଼ିକୁ ଚାହିଁ ବର୍ଷାରେ ଭିଜି ଘରକୁ ଫେରି ଆସିଲା । ଘରକୁ ଆସି ତାର ମନେ ପଡ଼ିଲା ବାପାଙ୍କ କଥା । ବାପାଙ୍କ ଭୟରେ ତାର ଜର ଆସିଲା । ସେ ଜର ଛାଡ଼ିବାକୁ ଲାଗିଲା ଅନେକ ଦିନ । ମିମି ସେ ଥର ଫେଲ୍ ହେଲା ସତ, କିନ୍ତୁ ତାର ଜର ଯୋଗୁଁ ସେଥର ସେ ତ୍ରାହି ପାଇଗଲା । ପରେ ଜୀବନ ବାବୁ ସବୁ ଜାଣିପାରି ଭାରି ରାଗିଯାଇ ବାଡ଼େଇ ଥିଲେ । ଆଜି ସେଇ କଥାମନେ ପଡ଼ିଯିବାରୁ ତାଙ୍କର ରାଗ ଦ୍ୱିଗୁଣିତ ହେଲା । ଠାଏ କରି ଗୋଟାଏ ଚଟକଣି ଲଗେଇ ଦେଇ ସେ କହିଲେ, "ତୁ ନ ବୁଝାଇଲେ ତୋତେ ଛାଡୁ ନାହିଁ ମୁଁ । ଯେତେ ରାତି ହଉ । ଆଜି ତୋର ଦିନେ କି ମୋର ଦିନେ, ଖାଇବା ଆଜି ବନ୍ଦ । ବୁଝା, ବୁଝା ବୁଝା ମ, କାନ୍ଦଣା ଥାଉ ।"

ରୋଷେଇଶାଳରୁ ପାଟି ଶୁଭିଲା, "ତମେ ଝୁଅକୁ ପାଠ ପଢ଼େଇବ ନାହିଁ ଆଉ । ଯେତେବେଳେ ପଢ଼େଇ ବସିଲ ମାଡ଼ ଛଡ଼ା ଆଉ କିଛି ନାହିଁ । ଆମେ କଅଣ ଝୁଅକୁ ଖାଇବାକୁ ପିନ୍ଧିବାକୁ ଦେଉଚୁ ଯେ ତା'ଠୁଁ ଏତେ ଆଶା କରିବା ? ପଢ଼େଇ ତ ଜାଣ ନାହିଁ..."

ଜୀବନ ବାବୁ ଉତ୍‌କ୍ଷିପ୍ତ ହୋଇ କହିଲେ, "କଅଣ ହେଲା, ମୁଁ ପଢ଼େଇ ଜାଣେ ନାହିଁ ? ଘଣ୍ଟାଏ ଧରି ଟିକିନିଖି ବୁଝେଇଲି । ସବୁ ବୁଝିଯିବାଭଳି ମୁଣ୍ଡ ଟୁଙ୍ଗାରିଲା...ମୁଁ ଜାଣେ ନାହିଁ, ନା ମାତୃଗୁଣେ ଦୁହିତା ହୋଇଚି ମ, ଶ୍ୱେଃ, ଗେହ୍ଲା କରି କରି ଝୁଅଟାର ମୁଣ୍ଡ ଖାଇ ସାରିଲଣି ତମେ ।"

ରୋଷାଇଶାଳୁ ପୁଣି ଦୃଢ଼ କଣ୍ଠରେ ଡକରା ଆସିଲା- "ହଉ, ଥାଉ ଆଜି ସେତିକି । ଆ ମିମି ଖାଇବୁ ଆ ।

ମିମି ଆଣ୍ଠୁ ଟେକୁଥିଲା ଉଠିବାକୁ । ଜୀବନ ବାବୁ ଗର୍ଜନ କରି ଉଠିଲେ- "ଖବର୍‌ଦାର, ସେତକ ନ ବୁଝାଇ ତୁ ଆଜି ଯାଇପାରିବୁ ନାହିଁ, ବୁଝା, ଭଗବାନ୍ କଅଣ ? ଏତେ ବୁଝାଇଲି ମୁଁ, ବୁଝା !"

ସରଳାର୍ଥ ବୁଝାଇବାରେ ଭଗବାନ୍ ଆସି ସବୁ ପ୍ରଥମରୁ ଅଡୁଆ ପୂରାଇ ଦେବାରୁ ମିମି ଲୁହ ପୋଛି ଭଗବାନ୍‌ଙ୍କୁ ଗାଳିଦେଇ ମନେ ମନେ କହିଲା, "ଭଲ ଲୋକ, ନା ପୋଡ଼ାମୁହାଁଟା, ମୋତେ ବାପାଙ୍କ ଠୁଁ ଏତେ ମାଡ଼ ଖୋଇଲାଣି । ଏତେ ଅଡୁଆକୁ ନଯାଇ ଭଗବାନ୍ କଥାଟାକୁ ବାଦ୍ ଦେଇ ସେ ବୁଝାଇବାକୁ ଯାଉଥିଲା । କିନ୍ତୁ ମନେ ମନେ ପୋଡ଼ମୁହାଁ ଗାଳି ଦେବାପରେ ତାର ମନେ ପଡ଼ିଗଲା ପୁରୀ ମନ୍ଦିରରେ ଜଗନ୍ନାଥଙ୍କ କଥା । ଜଗନ୍ନାଥଙ୍କୁ ଦେଖି ସେ ଆଈକୁ କାନେ କାନେ ପଚାରିଥିଲା, "ଆଈ ମ, ଜଗନ୍ନାଥଙ୍କ ମୁହଁ କଅଣ ପୋଡ଼ା ?" ନାତୁଣୀର ପ୍ରଶ୍ନରେ ଆଈର ଆଖିରେ ଲୁହ ଝରି ପଡ଼ିଥିଲା । ସେ

ନାତୁଣୀକୁ ଚୁମ୍ବନ ପରେ ଚୁମ୍ବନ ଦେଇ କହିଥିଲେ, "ହଁ ସେ ପୋଡ଼ାମୁହାଁ ଭଗବାନ୍।" ସେଇକଥା ମନେ ପଡ଼ିଯିବାରୁ ମିମି ଯେପରି ଅନ୍ଧକାର ମଧ୍ୟରେ ଆଲୋକ ପାଇଲା । ଆଖି ତାର ଉଜ୍ଜ୍ୱଳ ହୋଇ ଉଠିଲା। ଜଗନ୍ନାଥ ଯେପରି ତାର ଆଖି ଆଗରେ ଉଭା ହେଲେ। ସେ ଭଲ କରି ଥରେ ସେ ଚେହେରା ଦେଖି ନେଇ କହିଲା, "ଭଗବାନ୍ ହେଉଛନ୍ତି ଜଗନ୍ନାଥ।" କିନ୍ତୁ ଆଈ କଥା ମନେ ପଡ଼ିଯିବାରୁ ମିମିର ଆଖିଯୋଡ଼ିକ ଛଳ ଛଳ ହୋଇଗଲା। ସେ ସବୁ ଭୁଲି ଯାଇ କହିଲା, "ବାପା ମ, ବାପା, ଆଈ ମୋତେ ଲେଖିଚି ଗାଁରେ ରହି ତାର ମୋ କଥା ମନେପଡ଼ି ମନ ଭାରି ଖରାପ ହେଉଚି। ତାକୁ ନେଇ ଆସ ମ ବାପା!"

"ରଖ ତୋ ଆଈ। ହୁଁ, ଭଗବାନ୍ ହେଉଛନ୍ତି ଜଗନ୍ନାଥ। ତା ପରେ କଅଣ ହେଲା ?"

ଆଈ ବିରହବିଧୁରିତ ମନକୁ ପୁଣି ସରଳାର୍ଥକୁ ଫେରାଇ ଆଣିବାକୁ ମିମିର କିଛି ସମୟ ଚାଲିଗଲା। ଉଦ୍ଗତ ଅଶ୍ରୁରୋଧ କରି ମିମି କହିଲା, "କବି ଏଠାରେ କହୁଚନ୍ତି, କହୁଚନ୍ତି...କହୁଛନ୍ତି ଯେ...ଆଈ ମ, ଆଈ ଲୋ...!" ମିମି ଏଥର ଆଉ ସମ୍ଭାଳି ନ ପାରି ଭେଁ କରି କାନ୍ଦି ପକାଇଲା।

ଜୀବନ ବାବୁ ଦୁମ୍ ଦୁମ୍ କରି ପିଠିରେ ଦି'ଟା ନଦି ଦେଇ କହିଲେ, "ଧେତ୍ ମୋ କପାଳରେ, ଦେଖ ଯାକୁ। ଏତେ ବୁଝାଇଲି ଘଣ୍ଟାଏ ଧରି, ସବୁ କୁଆଡ଼େ ଭୁଲିଗଲୁ। ଇସ୍କୁଲ ମାଷ୍ଟ୍ରେ କାଲି କହୁଥିଲେ ଯେ ମିମି କ୍ଲାସରେ ମୋଟେ ମନ ଦେଉନାହିଁ। ଯେତେ ଅଦ୍ଭୁତ ଉତ୍ତର ଦେଉଛି। ହଇ ଲୋ ହୋଏ, ବିପରୀତ ଶବ୍ଦମାନେ କଅଣଏ, ବିପରୀତ ଶବ୍ଦମାନେ କଅଣ ବା? କହୁଚି ନା ସକେଇ ହଉଚି ବେହିୟା, ଲାଜ ନାହିଁ, କାନ୍ଦୁଚି ପୁଣି ! ଛିଃ, ଛିଃ ମୋ' ଝିଅ ହେଇ ତୁ ଏଇୟା କହିଲୁ। ଏତେ ବୁଝାଇଲି ସେ ଦିନ, ତୁ କହିଲୁ, 'ସୁଖ'ର ବିପରୀତ ଶବ୍ଦ 'ଖସୁ'! କାନ୍ଦଣା ରଖି କହ ମୁଁ କଅଣ ବୁଝାଇଲି। କବି କହୁଚନ୍ତି ଯେ...ହୁଁ....।"

ମିମି ଲୁହ ପୋଛୁ ପୋଛୁ ପୁଣି କହିବାକୁ ଚେଷ୍ଟା କଲା, "କବି କହୁଚନ୍ତି ଯେ..."

ଏତିକି କହିବା ପରେ ସେ ମନେ ମନେ ପୁଣି ନିଜେ ନିଜକୁ ପଚାରିଲା, କବି କିଏ ମ? ସେ କାହିଁକି କଅଣ କହିବାକୁ ଗଲେଟି? ସବୁ ତାର ପୁଣି ଗୋଳମାଳ ହୋଇଗଲା। ଆଉ ପାଖ ଘରେ ଶଙ୍କି ମ୍ୟାଉଁ ମ୍ୟାଉଁ କରି ଉଚ୍ଛନ୍ନ ଭାବରେ ଡାକିଲାଣି। ଇୟାଡ଼େ କବି କିଏ ଆଉ ସେ କଅଣ କହିଲେ ଓ କାହିଁକି କହିବାକୁ ଗଲେ ମିମିର ମନେ ପଡୁନାହିଁ। ମନେମନେ ଶଙ୍କି କୁ ତାନେ ଗାଳି ଦେବାକୁ ଲାଗିଲା। "ପୋଡ଼ାମୁହିଁ, ପଢ଼ା

ସରୁ, ଦଉଡ଼ି ତଡେ ଟାଙ୍କେ ଛେଚି । ପଢ଼ା କଅଣ ସରିବ ଆଜି ସତେ ? ହେ ମହାପ୍ରଭୁ, ହେ ଜଗନ୍ନାଥ, ଏ କବି ପୋଡ଼ାମୁହାଁ କଅଣ କହିଚି ମନେ ପକେଇ ଦିଅ ।"

ଏହି ସମୟରେ ବାହାରେ କିଏ ଡାକିଲା, "ବାବୁ ଅଛନ୍ତି ?"

ଜୀବନ ବାବୁ ଚିଡ଼ି ଉଠି ଉତ୍ତର ଦେଲେ, "ନାଇଁ ବାବୁ ନାହାନ୍ତି ।"

ବାହାରୁ ଉତ୍ତର ଆସିଲା, "ବଡ଼ବାବୁ ଡାକୁଚନ୍ତି ଶୀଘ୍ର ଆସନ୍ତୁ କଚେରି । କଅଣ ଜରୁରୀ କାମ ଅଛି ।"

ଜୀବନ ବାବୁ ବିରକ୍ତ ହୋଇ କମିଜ ପିନ୍ଧୁ ପିନ୍ଧୁ କହିଲେ, "ମୁଁ ଯାଉଚି, ଅଧଘଣ୍ଟା ଭିତରେ ଫେରିବି । ମୁଁ ଯାହା ବୁଝାଇଲି ତାହା ଲେଖିଥିବୁ ଆଉ ଦ୍ୱିତୀୟ ଉଦାହରଣମାଳାର ପାଞ୍ଚ ନମ୍ବର ଅଙ୍କଟି କଷି ରଖିଥିବୁ । ଯଦି ନ ହେଇଚି ଏତିକି ତ ଦେଖିମୁ ମୁଁ ତୋର' କି ଅବସ୍ଥା କରିବି ।"

ଜୀବନ ବାବୁ ତରତର ହୋଇ ଚାଲିଗଲେ । କଚେରୀରେ ବଢ଼ି ସଂକ୍ରାନ୍ତ ଜରୁରୀ କାମ କରୁ କରୁ ତାଙ୍କର ଘଣ୍ଟାଏ ଲାଗିଗଲା । ଘରର ଦାଣ୍ଡ ଦୁଆର ମୁହଁ ପାଖରେ ଧୀରେ ପାଦରୁ ଜୋତା କାଢ଼ି ହାତରେ ଧରି ଝରକା କବାଟେ ଉଙ୍କି ମାରି ଦେଖିଲେ ମିମି ଶୋଇଚି ନା ପାଠ ପଢ଼ୁଚି । ଝରକା ବାଟେ ଯାହା ଦେଖିଲେ ସେଥିରେ ସେ କିଛି ବୁଝି ପାରିଲେ ନାହିଁ । ତାଙ୍କର ବଡ଼ ଭାଇ ଓ ସାନ ଭାଇ ଦୁହେଁ ଖାତା ଉପରେ ଲଇଁ ପଡ଼ି କଅଣ ଲେଖି ଚାଲିଚନ୍ତି । ଅନେକ ଲେଖି ସାରିଲେଣି । ଅନେକ କାଗଜ ଚିରା ହୋଇ ତଳେ ପଡ଼ିଚି । ମିମି ଦୁଇଗୋଡ଼ ଲମ୍ବେଇ ଦେଇ ଶଙ୍କିକୁ କୋଳରେ ବସାଇ ତାକୁ ଥାପୁଡ଼ାଇ ଥାପୁଡ଼ାଇ ଗୀତ ଗାଉଚି- "ଧୋରେ ବାୟା ଧୋ, ଯେଉଁ କିଆରିରେ ଗହଳ ମାଣ୍ଡିଆ ସେଇ କିଆରିରେ ଶୋ ।"

ଘର ଭିତରକୁ ପଶି ଆସି ଜୀବନବାବୁ ପଚାରିଲେ, "ମିମି ତୋର ଏହି ପଢ଼ା ହଉଚି ?"

ମିମି ଚମକି ପଡ଼ି ବାପାକୁ ଚାହିଁ ଶଙ୍କିକୁ ଛାଟିଦେଲା । ଭୟରେ ମୁହଁ ତାର ଏତେ ଟିକିଏ ହୋଇଗଲା, କଳାକାଠ ପଡ଼ିଗଲା ।

"ଇଯେ କଅଣ ହେଉଚି ଭାଇ ?" ଜୀବନ ବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଅଙ୍କ କଷୁଚୁଁ ଆମେ । ଛି, ଛି, ଏହି ଟିକେ ପିଲାକୁ ଏମିତିକା ଅଙ୍କ ? 'ସରଳ ଗଣିତ ଇୟା ନାଁ ? ଲେଖକ ନିଜର ପାଣ୍ଡିତ୍ୟ ଦେଖେଇଚି ନା ପିଲାର ବୁଦ୍ଧି କେତେ ବିବେଚନା କରିଚି ଟିକିଏ ? ଦେଇତ ଗଲୁ ଅଙ୍କ, କଲୁ ତୁ ନିଜେ ଏକୁ ?"

ଜୀବନ ବାବୁ ଅଙ୍କ ଖଣ୍ଡକ ପଢ଼ିଲେ...ମୁଁ ମୋ ଘରୁ ଡେଲାଙ୍ଗରେ ଗୋଟିଏ ସଭାକୁ ପାଦରେ ଚାଲି ଯିବି । ସଭାରେ ଠିକ୍ ସନ୍ଧ୍ୟା ୭ଟା ବେଳେ ପହଞ୍ଚିବା କଥା । ମୁଁ

ଯଦି ଘଣ୍ଟାକୁ ୩ମାଇଲ୍ ବେଗରେ ଯାଏଁ ତେବେ ଠିକ୍ ସମୟର ଅଧ ଘଣ୍ଟାଏ ଆଗରୁ ପହଞ୍ଚିବି। ଯଦି ଘଣ୍ଟାକୁ ୨ମାଇଲ୍ ବେଗରେ ଯାଏଁ ତେବେ ଠିକ୍ ସମୟର ଘଣ୍ଟାକ ପରେ ପହଞ୍ଚିବି। ତେବେ ମୋ ଘରୁ ସଭାସ୍ଥାନ କେତେ ଦୂର। ଅଙ୍କଟି ପଢ଼ି ଜୀବନ ବାବୁ ବଙ୍କେଇ ତେଢ଼େଇ ଦୁଇ ତିନିଥର ଅଙ୍କଟିକୁ ଚାହିଁଲେ। କେମିତି ଭାବରେ ଆରମ୍ଭ କରିବେ କିଛି ବୁଝି ପାରିଲେ ନାହିଁ।

ବଡ଼ଭାଇ କହିଲେ, "ଆରେ ଅଙ୍କ କଷିବା ଦୂରେ ଥାଉ, ମିମି ଆଗେ ପଚାରି ବସିଲା ସଭା କଅଣ ? ସେଠାକୁ ନ ଗଲେ କଅଣ ହେବ ? ବୁଝା, ସଭା କଅଣ ବୁଝା। କୌଣସି ମତେ ସଭା କଅଣ ବୁଝାଇଲୁ ଆମେ। ସଭାରେ ପୁଣି ବୁଝାନ୍ତି କାହିଁକି ? ଏ ସବୁ ଗୋଳମାଳିଆ ପ୍ରଶ୍ନର ଉତ୍ତର ଦେଉଁ ଦେଉଁ ତ ଗଲା ଅଧ ଘଣ୍ଟାଏ। ତା ପରେ ଅଙ୍କ ଧରି ତ ଆମେ ଦୁହେଁ ବସିଚୁ। ଗନୁର ଦେଢ଼ ଖଣ୍ଡ ଖାତା ଶେଷ ହେଲାଣି, ମୋର ଖଣ୍ଡେ ଶେଷ ହେବାକୁ ବସିଚି।"

ସମସ୍ତେ ହସିଲେ। ଜୀବନ ବାବୁ କହିଲେ, "ହଉ ଥାଉ, ଅଙ୍କ ଥାଉ। ମିମି ଏ ମିମି, ସାହିତ୍ୟ ହେଇଚି ?"

"ନା ମୁଁ ଅଙ୍କ କରୁଥିଲି। ବଡ ବାପା ଓ ସାନ ବାପା ମୋତେ ଖାଇବାକୁ ଡାକିଲେ। ମୁଁ କହିଲି- 'ପଢ଼ା ନ ସାରି ଯିବି ନାହିଁ। ପଢ଼ା ନ କଲେ ଭଗବାନ୍ ରାଗିବେ।' ସେଇଠୁ ସେମାନେ ଅଙ୍କ ଦେଖି କଷିବାକୁ ବସିଲେ, ମୁଁ..."

"ତୁ ଶଙ୍କିକୁ ଶୋଇଦେବାକୁ ବସିଲୁ! ନାଃ ତୋ ଦେଇ ହବ ନାହିଁ। କିନ୍ତୁ ତୋତେ ଆଜି ନ କୁହାଇ ମୁଁ ଛାଡ଼ିବି ନାହିଁ। କହ, 'ଏ ହୃଦୟ ମୋର ଢାଳିଦେଲି ଆଜି ତୁମର ପାଦେ ହେ ନାଥ' ଏହାର ସରଳାର୍ଥ କହ।"

ମିମି ଏଥର ସହାସ ଭରି କହିଲା, "ନାଥ ବୋଇଲେ ଜଗନ୍ନାଥ, ଯାହାଙ୍କର ମୁହଁଟି କାଳିଆ, ବଡ଼ ବଡ଼ ଆଖି, ନେଫଡ଼ା ମୁହଁ..."

ଜୀବନ ବାବୁ କଟମଟ କରି ଚାହିଁଲେ ମିମିକୁ। କିନ୍ତୁ ବଡ଼ ଭାଇ ଥିବାରୁ ସେ ତାଙ୍କ ଭୟରେ ମିମିକୁ କିଛି କହି ପାରିଲେ ନାହିଁ।

କିନ୍ତୁ ବାପାଙ୍କର ବଡ଼ ବଡ଼ ଆଖି ଦେଖି ମିମିର ମୁହଁଟି ଶୁଖିଗଲା। ସବୁ ଉତ୍ସାହ ତାର ମରିଗଲା।

ବଡ଼ଭାଇ ବୁଝିପାରି କହିଲେ, "ହଁ ଲୋ ମା' ତୁ ଠିକ୍ କହିଚୁ। ବାଃ ବେଶ୍ ସୁନ୍ଦର ବୁଝିଚି, ହଁ ତା ପରେ—"

"ତା ପରେ, ସେଇ ଜଗନ୍ନାଥଙ୍କୁ ଚାହିଁ କବି ବୋଲି ଜଣେ ଲୋକ କହିଲେ, କହିଲେ..."

"ହଁ, ହଁ, କହିଲେ..." ବଡ଼ ଭାଇ ଉତ୍ସାହ ଦେଇ ପଚାରିଲେ; ମିମି ସାହସ ପାଇ ତାର ବଡ଼ ବାପାର କାନେ କାନେ କହିଲା, "ଜଗନ୍ନାଥଙ୍କର ପାଦ ନାହିଁ ମୁଁ ଦେଖିଚି। ହୃଦୟକୁ ଢାଳିଦେଲେ କେମିତି ମୁଁ ବୁଝିପାରୁ ନାହିଁ।"

ବଡ଼ ଭାଇ ମିମିକୁ କୋଳକୁ ଆଉଜାଇ ନେଇ କହିଲେ, "ମା, ତୋ ପଢ଼ା ସେତିକି ଥାଉ ଆଜି। ତୁ ଯାହା ପଚାରିଲୁ ତୋତେ ସେ କଥା କେହି ବୁଝାଇ ଦେଇ ପାରିବେ ନାହିଁ। ହୃଦୟକୁ କେମିତି ଢାଳନ୍ତି, ସେ କଥା ମୁଁ ବୁଝିପାରି ନାହିଁ; ତୋତେ କଅଣ ବୁଝାଇବି!!"

# କଷ୍ଟେ ପୁତ୍ରଃ

ବଜାରରୁ ଦୁଇପଇସାର ଶାଗ କିଣିବାଠାରୁ ଆରମ୍ଭ କରି ରାଜ୍ୟଗୋଷ୍ଠୀ ପର୍ଯ୍ୟନ୍ତ ସବୁଠି ସଂଗ୍ରାମ। ପ୍ରତ୍ୟେକେ ଜୀବନ ପାଇଁ ସଂଗ୍ରାମ କରୁଛନ୍ତି। କିନ୍ତୁ ଗୋଟିଏ ଗୋଟିଏ ଲୋକ ଥାଆନ୍ତି, ଜୀବନ ଯେଉଁମାନଙ୍କ ପକ୍ଷରେ ଗୋଟାଏ ପରିହାସ। ସଂଗ୍ରାମକୁ ଏମାନେ ଏଡ଼ାଇ ଯାଆନ୍ତି। ମାରିବାକୁ ଆସିଲେ କୁହନ୍ତି, ମାରନା ମୁଁ ମଲିଣି। ଆମ କାହ୍ନୁବାବୁ ଏଇ ଧରଣର ଲୋକ। ଆମ କଚେରୀରେ କାହ୍ନୁବାବୁ ଆବାଳବୃଦ୍ଧ ସମସ୍ତଙ୍କ ଅଜା। ଯିଏ ଆଜି ବି ଚାକିରିରେ ଯୋଗ ଦେଇଚି, ଅଳ୍ପ ସମୟ ଭିତରେ ସେ କାହ୍ନୁବାବୁଙ୍କର ନାତି ହୋଇପଡ଼େ। ଥଟ୍ଟା ପରିହାସ କରେ, କାହ୍ନୁବାବୁ ଚୌକି ଛାଡ଼ି ଉଠିଗଲେ ତାଙ୍କର କଛା ଧରି ଟାଣି ଦିଏ। କିମ୍ବା ତାଙ୍କ ପିଠିରେ 'ଗଧ' ଲେଖି ଦିଏ। କାହ୍ନୁବାବୁ ସେଥିରେ କ୍ଷୁଣ୍ଣ ନ ହୋଇ ଅମୋଦ ପାଆନ୍ତି। ତାଙ୍କ ପ୍ରତି କାହାରି ଆକ୍ରୋଶ ନଥାଏ। କାରଣ ସେ ନିଜର ଦକ୍ଷତା ଦେଖାଇ କାହାରି ପଦୋନ୍ନତି ପଥରେ କଣ୍ଟକ ନୁହନ୍ତି। ଚାକିରି ତାଙ୍କର ପ୍ରାୟ ଚାଳିଶ ବର୍ଷ ହେଲାଣି, କିନ୍ତୁ ସେ ଯେଉଁଠି ପ୍ରଥମେ ଆରମ୍ଭ କରିଥିଲେ ଆଜି ବି ସେଇଠି। ତାଙ୍କର କର୍ତ୍ତବ୍ୟ ପ୍ରତି ଅବହେଳା ଓ ଅପାରଗତା ଯୋଗୁଁ କେତେଥର ବାର୍ଷିକ ଦରମା ବୃଦ୍ଧି ବନ୍ଦ ରଖା ହୋଇଚି, କେତେଥର ସସ୍‌ପେଣ୍ଡ ହୋଇଛନ୍ତି, ରୋଜ କେତେ ଗାଳି ଖାଆନ୍ତି, ତଥାପି ସେ ସେଇ ଦରପୋଡ଼ା କାଠ। ନିଜର ଆର୍ଥିକ ଅବସ୍ଥା ଉନ୍ନତି କରିବାରେ କୌଣସି ଚେଷ୍ଟା ନାହିଁ। କୌଣସିମତେ ସେ ଅଶିଟି ଟଙ୍କାରେ ଚଳାଇ ନିଅନ୍ତି। ସଂସାର ଭିତରେ ସ୍ତ୍ରୀ ଓ ଗୋଟିଏ ପୁତ୍ର। ସ୍ତ୍ରୀଙ୍କୁ ପାଖରେ ରଖିବାର କ୍ଷମତା ତାଙ୍କର କଦାପି ହୋଇନାହିଁ। ପୁଅଟି ପାଖରେ ରହି ପାଠ ପଢ଼େ, ଏ ବର୍ଷ ମ୍ୟାଟ୍ରିକ୍ ପାସ୍ କରିଚି। ତାକୁ ନିଜ କାମରେ ମୁତଏନ୍ କରି ସାରିଲେ ସେ ଚାକିରିରୁ ଅବସର ନେବେ, ଏହି ତାଙ୍କର ଆଶା।

ଚାକିରି କଲାଦିନୁ ସେ ଗଳାବନ୍ଦ କୋଟ ଓ ତାହା ଉପରେ ଖଣ୍ଡେ ଅଧମଇଳା ଚାଦର ପିନ୍ଧି ଝୁଲି ଝୁଲି ଆସନ୍ତି। ଘରୁ ବାହାରି ଜୁହାର ହେଉହେଉ ତାଙ୍କର ଚାଲିଯାଏ

ଅଧଘଣ୍ଟାଏ । ତା ପରେ ରାସ୍ତାରେ ଯେତେ ମନ୍ଦିରସ୍ଥ ବା ତରୁତଳସ୍ଥ ଦେବାଦେବୀ ଅଛନ୍ତି ପ୍ରତ୍ୟେକଙ୍କୁ ଜୁହାର କରିବାରେ ଅନ୍ତତଃ ଦଶମିନିଟ ଲେଖାଏଁ ଚାଲିଯାଏ । କଚେରିରେ ପହଞ୍ଚିବା ବେଳକୁ ହୋଇଯାଏ ଦିନ ବାରଟା । ଇତି ମଧ୍ୟରେ ହାକିମଙ୍କର ଦୁଇ ତିନିଥର ଡକରା ସରି ଯାଇଥାଏ । କଚେରିରେ ପହଞ୍ଚି ଗୋଟାଏ ଦୀର୍ଘଶ୍ୱାସ ପକେଇ ଚୌକିରେ ବସିବା ବେଳକୁ ସାମନାରେ ଟେବୁଲ ଉପରେ ନାଲି ପେନ୍‌ସିଲରେ ଲେଖା ଗୋଟିଏ କାଗଜ ଦୃଷ୍ଟି ଆକର୍ଷଣ କରେ । ସେ ଖଣ୍ଡିକ ହେଡ୍‌କିରାଣିଙ୍କ ଆଦେଶପତ୍ର, କାହ୍ନୁବାବୁ ପହଞ୍ଚିବା ମାତ୍ରେ ସାହେବଙ୍କୁ ଦେଖା କରିବେ । ଏହା ନିତ୍ୟ ନୈମିତ୍ତିକ ବ୍ୟାପାର । କାହ୍ନୁବାବୁ ସେ ଖଣ୍ଡିକ ଦେଖି ନ ଦେଖିଲା ପରି ଚାଦରରେ ମୁଣ୍ଡଝାଳ ପୋଛି, ଚାଦର ସଞ୍ଚାଳନ କରି ଟିକିଏ ବିଞ୍ଚି ହଉ ହଉ ଡୋଳାଇ ପଡନ୍ତି । ହାକିମଙ୍କର ଚପରାସୀ ବା ହେଡକିରାଣି ନିଜେ ଆସି ତାଙ୍କୁ ଉଠାଇ ଦେଇ କୁହନ୍ତି, ଯାଆନ୍ତୁ ସାହେବ ସଲାମ ଦେଇଛନ୍ତି ।,

କାହ୍ନୁବାବୁ ଆଉ ଗୋଟିଏ ଦୀର୍ଘଶ୍ୱାସ ପକାଇ ପାଟିରୁ ପାନ ବାହାର କରି ପକାଇ ଦେଇ କୋଟ୍‌ଟା ଟିକିଏ ସଜାଡ଼ି ନେଇ ଧୀରେ ଧୀରେ ଉଠିଯାଆନ୍ତି ସାହେବଙ୍କ ଦପ୍ତରକୁ । ସେଠି ପ୍ରାୟ ଅଧଘଣ୍ଟାଏ ଧରି ଗାଳିମିଶ୍ରିତ ଆଶ୍ୱାସ ଓ ଉପଦେଶ ବାଣୀ ନିର୍ବିକାର ଚିତ୍ତରେ ମୁଣ୍ଡପୋତି ଛିଡ଼ା ହୋଇ ଶୁଣି ଅନେକଗୁଡ଼ିଏ କାମ କରିବାର ତାଲିକା ଧରି ଫେରି ସିଧା ଚାଲି ଯାଆନ୍ତି ରେକର୍ଡ଼ ଘରକୁ । ରେକର୍ଡ଼ ଘରଟି ଅନ୍ଧାରୁଆ । ସେ ଘରକୁ ପ୍ରାୟ କେହି ଯାଆନ୍ତି ନାହିଁ । ଖୁବ୍ ଉଚ ଘର, ଘର ବଡ଼ ବଡ଼ ଥାକରେ ଭର୍ତ୍ତି । ସବୁ ରେକର୍ଡ ଏହି  ଘରେ ଥାଏ । ସବା ପଛ ଥାକଟିରେ କେତେଗୁଡ଼ିଏ ରେକର୍ଡ ଘୁଞ୍ଚାଇ ଗୋଟିଏ ମଣିଷ ଶୋଇବା ଭଳି ଗୋଟିଏ ସ୍ଥାନ ହୋଇଚି । ତା ଉପରେ ପଡ଼ିଚି ଖଣ୍ଡିଏ ଛିଣ୍ଡା ମଶିଣା । କେତେଗୁଡ଼ିଏ ମୋଟା ଖାତା ସ୍ତୂପାକାର କରି ତକିଆ ଭଳି ରଖା ହୋଇଚି । କାହ୍ନୁବାବୁ ସାହେବଙ୍କ ପାଖରୁ ଗାଳି ଖାଇ ଆସିବା ପରେ ସେଗୁଡ଼ିକ ହଜମ କରିବାପାଇଁ ସେଇଠି ଶୋଇ ପଡନ୍ତି । ତାଙ୍କର ଏ ଗୁପ୍ତ ଶୟନ ଶିବିର ତାଙ୍କର କେତେଜଣ ବିଶ୍ୱାସୀ ନାତି ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଇତି ମଧ୍ୟରେ ଚାରିଆଡ଼େ ତାଙ୍କୁ ଖୋଜା ଚାଲିଥାଏ । ତାଙ୍କର କେଉଁ ନାତି କୁହେ, ସେ ଯାଇଛନ୍ତି ଅମକ ଅଫିସ୍‌କୁ କଅଣ କାମରେ; କିଏ କୁହେ ଯାଇଛନ୍ତି ତମୁକ୍ ଅଫିସ୍‌କୁ କଣ ନଥି ଆଣିବା ପାଇଁ, ହେଡ୍‌କିରାଣି ବାବୁ ଚଷମା ଉପର ବାଟେ କିଛିକ୍ଷଣ କାହ୍ନୁବାବୁଙ୍କ ଖାଲି ଚୌକିକୁ ବଡ଼ ବଡ଼ ଆଖିରେ ଅନାଇ ଟେବୁଲ ଗୋଡ଼ରେ ସୂତାରେ ବନ୍ଧା ହୋଇଥିବା ପୁଳାଏ କାଗଜରୁ ଟାଣି ଆଣି ରାଗରେ ଗୁଡ଼ାଏ କଅଣ ଲେଖି ପକାଇ ଡାକନ୍ତି ଚପରାସୀକୁ ।

ଆଇଜ୍ଞା !

– ଯାଓ, ସାହେବଙ୍କୁ ଏଖଣ୍ଡ ଦେଇ ଆସ, ଯାଆଓ

ବୁଢ଼ା ଚପରାସୀ ଧନୁର ତୋଳାଇବାରେ ବ୍ୟାଘାତ ପଡ଼େ। ସେ କାହ୍ନୁବାବୁଙ୍କର ଭାରି ବନ୍ଧୁ। ଦୁହେଁ ଗୋଟିଏ ଚାଳଘରେ ପାଞ୍ଚ ଟଙ୍କା ଭଡ଼ାରେ ରହନ୍ତି। ଚାକିରି କଲାଦିନ ଠାରୁ ଦୁହେଁ କେବେହେଁ ସ୍ତ୍ରୀ ପୁତ୍ର ସହ କଟକରେ ରହି ନାହାନ୍ତି କିମ୍ବା ଛୁଟି ନେଇ କେବେ ହେଁ ଘରକୁ ଯାଇ ନାହାନ୍ତି। ବର୍ଷକୁ ଥରେ ମାତ୍ର ପୂଜାଛୁଟିରେ ଯଦି ଯିବାକୁ ଅନୁମତି ମିଳେ ତେବେ ଯାଆନ୍ତି। ଗାଁ ତାଙ୍କର କଟକଠାରୁ ବହୁ ଦୂରରେ, ଯିବା ଆସିବାପାଇଁ ଅନ୍ତତଃ ପନ୍ଦରଟି ଟଙ୍କା ଆବଶ୍ୟକ ହୋଇ ପଡ଼େ। ଏତେ ଟଙ୍କା କେବେ ହେଁ ଏକା ସାଙ୍ଗରେ ଜୁଟେ ନାହିଁ, ଜୁଟିଲେ ମଧ୍ୟ ଛୁଟି ମିଳିବା ତାଠାରୁ ଦୁଃସାଧ୍ୟ ହୋଇପଡ଼େ; ଅଗତ୍ୟା ମୁହଁ ମାଡ଼ି ସେମାନେ କଟକରେ ପଡ଼ିଥାଆନ୍ତି ସେଇ ଗୋଟିଏ ଅଣଓସାରିଆ ସନ୍ତସନ୍ତିଆ କୁଡ଼ିଆଟିରେ।

ଏଇ ହେଲା କାହ୍ନୁବାବୁଙ୍କର ନିତ୍ୟନୈମିତ୍ତିକ ଜୀବନ। ଏହାର ବ୍ୟତିକ୍ରମ କଦାପି ହୋଇନାହିଁ। ଥରେ ଅତ୍ୟନ୍ତ ବିରକ୍ତ ହୋଇ ହାକିମ ତାଙ୍କୁ ବୁଝାଇ ବାଟକୁ ଆଣିବାକୁ ଚେଷ୍ଟା କରି କହିଥିଲେ, ଦେଖନ୍ତୁ କାହ୍ନୁବାବୁ, ସମୟ ଥିଲା, ଯେତେବେଳେ ଇଂରେଜ ଶାସନ ଚାଲିଥିଲା, ସେତେବେଳେ ହୁଏତ ଆପଣଙ୍କର କର୍ତ୍ତବ୍ୟ ପ୍ରତି ଅବହେଳା କ୍ଷମଣୀୟ ଥିଲା। କିନ୍ତୁ ଦେଶ ବର୍ତ୍ତମାନ ସ୍ୱାଧୀନ ହୋଇଚି। ଆମେ ଯଦି ଏତେବେଳେ କାମରେ ଫାଙ୍କି ଦେଉଁ ତେବେ ଆମେଇ ମରିବା, ଏଟା କଣ ବୁଝିପାରୁ ନାହାନ୍ତି !

କାହ୍ନୁବାବୁ ନିରବରେ ଛିଡ଼ା ହୋଇ ରହିଲେ। ତାଙ୍କର ଏହା ହିଁ ସ୍ୱଭାବ, ଯେତେ ଗାଳି ଦିଅ ବା ଯେତେ ଉପଦେଶ ଦିଅ ବା ଯେତେ ପ୍ରଶ୍ନ ପଚାର ସବୁଥିରେ ସେ ନିରବ। ହାକିମ ତାଙ୍କର ନିରବତାରେ ଆହୁରି ରାଗିଯାଇ ଟେବୁଲ ଉପରେ କଲମ କଚାଡ଼ି କହିଲେ, ଏ କଅଣ ଢଙ୍ଗ ଆପଣଙ୍କର ? ପଚାରିଲେ ଉତ୍ତର ଦିଅନ୍ତି ନାହିଁ କାହିଁକି ?

ହାକିମଙ୍କ ଆଡ଼କୁ ଟିକିଏ କଣେଇ ଚାହିଁ କାହ୍ନୁବାବୁ କହିଲେ, ଆଜ୍ଞା, ବୁଝୁ ନାହିଁ କି ସବୁ ବୁଝୁଚି। କିନ୍ତୁ କାମକୁ ତ ମୋତେ ଇଚ୍ଛା ହେଉନାହିଁ; କଣ କରିବି।

– କାହିଁକି ?

– ମୁଁ କାମ କଲେ ଦେଶର ଉନ୍ନତି ହେବ, ଦେଶର ଉନ୍ନତି ହେଲେ ଆମର ହେବ,  ଏ କଥା ମୁଁ ବୁଝୁଚି; କିନ୍ତୁ ସାର୍ ମୋର ଜୀବନଟା ଗଲା ଟିକିଏ ସାମାନ୍ୟ ସୁଖ କରିପାରିଲି ନାହିଁ। ଦିନକ ପାଇଁ ପିଲାପିଲି ପାଖରେ ରହି ଆନନ୍ଦ ପାଇ ପାରିଲି ନାହିଁ.....

ହାକିମ ନୀରବ ରହିଲେ। କିଛିକ୍ଷଣ ପରେ କହିଲେ, ହଉ ଯାଆନ୍ତୁ। ପେନ୍‌ସନ୍ କେବେ ନେବେ ?

– ଆଉ ଅଳ୍ପଦିନ ଅଛି ସାର୍। ପୁଅ ଏଇ କଚେରିରେ ରହିବାପାଇଁ ଖଣ୍ଡେ

ଦରଖାସ୍ତ  କରିଚି। ଦୟାକରି ଯଦି ଆପଣ ତାକୁ କାମରେ ଲଗାଇ ଦିଅନ୍ତେ ତେବେ ପେନ୍‌ସନ୍ ନେଇ ମୁଁ ଚାଲିଯାଆନ୍ତି।

-ହଉ ଯାଆନ୍ତୁ।

ହାକିମଙ୍କ ପିତା କିରାଣି ଥିଲେ। ସେ କି କଷ୍ଟରେ ତାଙ୍କୁ ଓ ତାଙ୍କର ଭାଇମାନଙ୍କୁ ପାଠ ପଢ଼ାଇ ମଣିଷ କରିଛନ୍ତି ସେ ଜାଣନ୍ତି।

କାହ୍ନୁବାବୁଙ୍କ ପୁଅ ଅଜୟ ଚାକିରି ପାଇ ରହିଲେ। କିନ୍ତୁ କହ୍ନୁବାବୁ ଆଉ କିଛିଦିନ ଚାକିରିରେ ରହିବାପାଇଁ ପୁଣି ଦରଖାସ୍ତ କଲେ। ହେଡ଼ କିରାଣି ସେ ଦରଖାସ୍ତ ଉପରେ କାହ୍ନୁବାବୁଙ୍କ ବିପକ୍ଷରେ ଗୁଡ଼ାଏ ଲେଖି ମତ ଦେଲେ ଯେ କାହ୍ନୁବାବୁଙ୍କ ଭଳି ଅକର୍ମଣ୍ୟଙ୍କୁ ଚାକିରିରେ ଆଉ ରଖିବା ଅନ୍ୟାୟ ହେବ।

ହାକିମ ଦରଖାସ୍ତ ପଢ଼ି ଆଶ୍ଚର୍ଯ୍ୟ ହୋଇ କାହ୍ନୁବାବୁଙ୍କୁ ଡକାଇଲେ। ବୁଢ଼ା ଚପରାସୀ ଧନୁ ଡକାଇବାର କାରଣ ବୁଝିପାରି କାହ୍ନୁବାବୁଙ୍କୁ ତାଙ୍କର ଶିବିରରୁ ଉଠାଇ ସାହେବଙ୍କ ପାଖକୁ ପଠାଇଲେ। କାହ୍ନୁବାବୁ ତରବର ହୋଇ ମୁହଁ ଧୋଇ ସାହେବଙ୍କ ପାଖରେ ହାଜର ହୋଇ ଛିଡ଼ା ହେଲେ।

- କି କାହ୍ନୁବାବୁ, ଇୟେ କଅଣ ? ଏ ଦରଖାସ୍ତ କଅଣ ! କାହ୍ନୁବାବୁ ନିରବ ।

- ଆପଣ ପରା କହୁଥିଲେ ସେ ପୁଅ ଚାକିରି କଲେ ଅବସର ନେବେ। ଫେର ଏ କଅଣ !

- ଆଜ୍ଞା, ତା ତ ଭାବିଥିଲି। କିନ୍ତୁ ମନ ବଳିଲା ନାହିଁ।

-ନା, ନା, ଆପଣଙ୍କ ବୟସ ଅନେକ ହେଲାଣି, ଚାକିରି ବି ଚାଳିଶ ବର୍ଷରୁ ବେଶି ହେଲାଣି, ଏଥର ଘରେ ବସି ଧର୍ମ କର୍ମରେ ମନ ଦିଅନ୍ତୁ। ପୁଅ ତ ଚାକିରି ପାଇଲା, ଏଥର ପୁଅକୁ ବାହାଦେଇ ଆନନ୍ଦରେ ବୋହୂ ନେଇ ଘରେ ରହନ୍ତୁ, ଆଉ ଲୋଭ କାହିଁକି ?

- ଆଜ୍ଞା, ଏ ଲୋଭ ନୁହେଁ, ଅବସର ନେଲେ ଅଳ୍ପ କେତୁଟା ଦିନରେ ମରିଯିବି, ଘରେ ଜମିବାଡ଼ି ନାହିଁ ଯେ ଚାଷବାସ କରି କାଳ କଟିଯିବ, କଅଣ କରିବି ?

- କାହିଁକି, ଏତେ ଦିନ ଏକା ଏକା କାଳ କଟେଇଲେ, ଏଥର...

- ଆଜ୍ଞା, ଯେଉଁ ବୟସରେ ତା ହବାର କଥା ତ ହେଲା ନାହିଁ। ଆଉ ଏ ବୟସରେ...ସାର୍, ସତ କହୁଚି, ବିବାହ କରିଚି ସତ....କିନ୍ତୁ କିନ୍ତୁ...

- କଅଣ କିନ୍ତୁ।

- ସାର୍ ଏତେଦିନ ଅଲଗା ଏକା ଏକା ରହି ରହି ଏ ଜୀବନଟା ଅଭ୍ୟାସରେ ପଡ଼ି ଗଲାଣି। ସ୍ତ୍ରୀ ତ ଅପରିଚିତା ଜଣେ ନାରୀ...ତା ସହିତ ବା ମୋର ସମ୍ପର୍କ କଅଣ

ଅଛି, ଆଜି ପର୍ଯ୍ୟନ୍ତ କେବଳ ମାସକୁ ଥରେ ମନିଅର୍ଡର ରସିଦରେ ତାର ଦସ୍ତଖତ ଦେଖିବା ଛଡ଼ା ? ଥରେ କେବଳ ଏଇ ପୁଅର ଅନ୍ନପ୍ରାଶନକୁ ଦିନେ ଯାଇଥିଲି, ଆଉ ଚାରିପାଞ୍ଚଥର ପୂଜା ଛୁଟିରେ ତିନିଚାରିଦିନ ପାଇଁ ଗାଁକୁ ଯାଇଥିଲି । ଏତିକି ତ ସମ୍ପର୍କ; ସରକାର ଆଉ ବେଶୀ ସମ୍ପର୍କ ରଖିବାକୁ ଦେଇ ନାହାନ୍ତି ।

ହାକିମ ବୁଝିପାରିଲେ ପ୍ରସଂଗଟା କ୍ରମେ କାହ୍ନୁବାବୁଙ୍କ ମନଗହନକୁ ପ୍ରବେଶ କରୁଚି । ସେଇଠି ସେ ପ୍ରସଂଗ ବନ୍ଦ କରି, ଆଉ ବର୍ଷେ ଚାକିରି ସମୟ ବଢ଼ାଇ ଚିଠି ଲେଖିଦେଲେ ଉପର ମହଲାକୁ ।

ଏହାର ଅଳ୍ପଦିନ ପରେ କାହ୍ନୁବାବୁ ପୁଣି ଦୁଇଖଣ୍ଡ ଦରଖାସ୍ତ ନେଇ ଛିଡ଼ା ହେଲେ ହାକିମଙ୍କ ପାଖେ; ଭୟରେ ନିରବରେ ଦରଖାସ୍ତ ଦିଓଟି ସାହେବଙ୍କୁ ବଢ଼ାଇ ଦେଇ ସେ ଛିଡ଼ାହୋଇ ରହିଲେ । ହାକିମ ଦରଖାସ୍ତ ଦିଓଟି ପଢ଼ି କହିଲେ- ବେଶ୍, ବେଶ୍, ଅଜୟର ବାହାଘର କରୁଚ, ନା, କେଉଁଠି ହେଉଚି ?

– ଆଜ୍ଞା, ଆମ ଚପରାସୀ ଧନୁର ଝିଅ ସହିତ ।

– ଭଲ, ଭଲ । କିନ୍ତୁ ତିନି ଦିନରୁ ବେଶୀ ଛୁଟି ଦେଇ ପାରିବି ନାହିଁ । ବଢ଼ି ସମୟ । ଚାରିଆଡ଼େ ହାହାକାର, ଭୀଷଣ କାମ ପଡିଚି; କେବଳ ତୁମପାଇଁ ମୁଁ ତିନିଦିନ ଦେଇପାରେ ।

– ହଉ ସାର୍, ଯାହା ଆପଣଙ୍କର ଦୟା ।

ଅଜୟର ବିବାହ ହୋଇଗଲା । ବୋହୂକୁ ଶାଶୂ ପାଖରେ ରଖି ଅଜୟ, ଧନୁ ଓ କାହ୍ନୁବାବୁ ତିନିଦିନ ପରେ ଚତୁର୍ଥଦିନ ଚାକିରିରେ ଯୋଗଦେଲେ ।

ଏହାର ପ୍ରାୟ ବର୍ଷକ ପରେ ଦିନେ କାହ୍ନୁବାବୁ ଚିଠି ପାଇଲେ ତାଙ୍କର ଗୋଟିଏ ନାତି ହୋଇଚି । ସେଦିନ କାହ୍ନୁବାବୁଙ୍କ ଆନନ୍ଦ ଦେଖେ କିଏ । ଆନନ୍ଦରେ ସେ ସେଦିନ ସମ୍ବାଦଟି ଚାରିଆଡ଼େ କହି ବୁଲିଲେ । ହାକିମଙ୍କୁ ମଧ୍ୟ କହି ଆସିଲେ । ହାକିମ ସମ୍ବାଦଟି ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । କାହ୍ନୁବାବୁ ଦୀର୍ଘନିଶ୍ୱାସ ପକାଇ କହିଲେ, ସାର୍ ଅଜୟକୁ ଓ ମୋତେ ଆଉ ଗୋଟିଏ ଦିନ ଛୁଟି ଦବାକୁ ହେବ ସାର୍, ଥରେ ବଂଶଧରକୁ ଦେଖି ଆସିବା ପାଇଁ ।

– ହଉ ଯାଆନ୍ତୁ ।

ଅଜୟ ଏପର୍ଯ୍ୟନ୍ତ ଏ ସମ୍ବାଦ ପାଇନାହିଁ । କାହ୍ନୁବାବୁ ହାକିମଙ୍କ ପାଖରୁ ଛୁଟିର ଅନୁମତି ଆଣି ଅଜୟ ପାଖକୁ ଗଲେ । ଅଜୟ ସେତେବେଳେ ତାର ଚୌକିରେ ନ ଥିଲା । ଅନୁକୁ ପଚାରିବାରୁ ଅନୁ କହିଲା, ହେଁ, ହେଁ, କୋଇଁ ଠିକ୍ ତୁମରି ପରି, ସେ

ପରା ତୁମ ଜାଗାରେ ଶୋଇଛି। ତୁମେ ସେ ଜାଗାକୁ ଯିବା ପୂର୍ବରୁ ସେ ଟିକିଏ କର ଲେଉଟାଇଦିଏ ସେଠି।

ଦୁହେଁ ଯାକ ହୋ ହୋ ହସି ଗଲେ ଶୟନକକ୍ଷ ଶିବିରକୁ। ଅଜୟକୁ ପେଲି ଉଠାଇ କାହ୍ନୁବାବୁ କହିଲେ, ଚାଲ୍, ବସାକୁ ଯିବା।

ଅଜୟ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କାହିଁକି ? ଏତେବେଳେ ?

- ଚାଲ, ବସାରେ କହିବି। ଏ ଆନନ୍ଦପୂର୍ଣ୍ଣ ସମ୍ବାଦଟି ଧୀରେ ସୁସ୍ଥେ କହିବା ତାଙ୍କ ଉଦ୍ଦେଶ୍ୟ।

ବସାକୁ ଯିବା ବାଟରେ କାହ୍ନୁବାବୁ ବଜାର ସୌଦା କଲେ। ଚାରିଟା ବେଳକୁ ବସାରେ ପହଞ୍ଚି କାହ୍ନୁବାବୁ ପୁଅକୁ କହିଲେ, ନେ, ଚୁଡ଼ା ଚିନି, କିଣି ଆଣିଚି, ଶୀଘ୍ର ଖାଇଦେଇ ଜିନିଷପତ୍ର ସବୁ ବନ୍ଧାବନ୍ଧି କରି ରଖିଥା । ମୁଁ ବଜାରକୁ ଯାଉଚି, ତୋ ବୋଉ ପାଇଁ ଗୁଡ଼ାଖୁ କିଣି ଆଣିବାକୁ ଭୁଲି ଯାଇଚି, ଆଣିବାକୁ।

- କିନ୍ତୁ ଏ ଛୁଟି ! ଏତେ ଜିନିଷ ପତର ! କଥା କଅଣ ?

- ନେ, ଏ ଚିଠି ପଢ଼। ସବୁ ସଜାଡ଼ି ରଖିଥା। ମୁଁ ଏଇନେ ଆସୁଚି।

ବଜାରକୁ ଯାଇ କାହ୍ନୁବାବୁ ଗୁଡ଼ାଖୁ, ନାତି ପାଇଁ ରଂଗିନ୍ ଜାମା, କଣ୍ଢେଇ କିଣି ଫେରି ଦେଖିଲେ ଅଜୟ ଚିଠିଟି ଧରି ସେମିତି ବସିଚି ଖଟ ଉପରେ। ଆଖିରୁ ତା'ର ଦୁଇଧାର ଲୁହ ଗଡ଼ି ଯାଉଚି, ତାର ହୋସ ନାହିଁ।

କାହ୍ନୁବାବୁ ତାକୁ ଠେଲି ଦେଇ ଚିତ୍କାର କରି କହିଲେ- କିରେ, ଇଏ କଅଣ, ଗାଡ଼ି ଆସିବାକୁ ଆଉ ମୋଟେ ଅଧ ଘଣ୍ଟାଏ ଅଛି, ତୁ ବସିଛୁ। ଜିନିଷପତର ସେମିତି ପଡ଼ିଚି ! କିରେ କାନ୍ଦୁଚୁ କିଆଁ ?

- ବାପା, ଏ ନାତି ହେବାରେ ତୁମେ ମନରେ ଆନନ୍ଦ ପାଉଚ କେମିତି ?

- କାହିଁକି, କଅଣ ହେଲା ?

- ବାପା, ମୁଁ ତେବେ ଖୋଲି କହୁଚି। ବାହା ହେବା ପରେ ଥରେ ମାତ୍ର ମୁଁ ଗୋଟିଏ ରବିବାରରେ ସେ ଗାଁକୁ ଯାଇଥିଲି। କିନ୍ତୁ ସେତେବେଳେ ସେ ମାରୁ ହୋଇଥିଲା। ଏ ପୁଅ ତେବେ ହେଲା କେମିତି ?

- ଓହୋ, ଏଇ କଥା। ରାମ, ରାମ। ଆମର ଏତେ ଧଇଲେ ଚଳେ ? କିରେ, ତୁ କେମିତି ହୋଇଥିଲୁ ? ମୁଁ ମୋ ଜୀବନରେ ପରା ମୋଟେ ତିନି ଚାରିଥର ଗାଁକୁ ଯାଇଚି, ପ୍ରତିଥର ବି ସେମିତି କିଛି ଗୋଟାଏ ଅସୁବିଧା ଥାଏ। ଆମେ ଚାକିରିଆ ଲୋକ, ଆମର ଏତେ ଧଇଲେ ଚଳେ ! ଆଜିକାଲି ତ କମ୍ୟୁନିଷ୍ଟ ଚିନ୍ତା ଆସିଲାଣି। ପୁରୁଣା ପୁଞ୍ଜିବାଦୀ ନୈତିକତାର ମୂଲ୍ୟ ବଦଳି ଗଲାଣି, ଆଉ କେହି କାହାର ସ୍ତ୍ରୀ ବା

ସନ୍ତାନ ବୋଲି ପରିଚିତ ହେବେ ନାହିଁ, ସମସ୍ତେ ସମାଜର, ରାଜ୍ୟର; ଯେ କେହି ଜଣେ ନିମିତ୍ତ ମାତ୍ର ହେଲେ ହେଲା, ତାର ବି ଦରକାର ରହିବ ନାହିଁ। ବିଜ୍ଞାନ ଯେଉଁ ଆଡ଼କୁ ଗତି କରୁଚି, ରଜ ଓ ବୀର୍ଯ୍ୟ ଅଲଗା ଅଲଗା ବୋତଲରେ ଥୁଆ ହୋଇଥିବ, ମିଶାଇ ଦେଇ କାଚ ବୋତଲରେ ସନ୍ତାନ ଜନ୍ମ ହେବ।

– ବାପା, ତେବେ ମୁଁ ବି ଏମିତି ଜନ୍ମ ହୋଇଥିଲି ?

– ଆରେ ହଁ, ହଁ। ଚାଲ; ଉଠ, ବେଳ ହୋଇଗଲାଣି। କିଏ କାହାର ପୁଅରେ ! ହଁ, ମୋହମୁଦ୍‌ଗର ପଢ଼ିନାହୁଁ? କା ତବ କାନ୍ତା, କସ୍ତେ ପୁତ୍ରଃ; ସଂସାରାୟମତୀବ ବିଚିତ୍ରଃ।

–ହଁ ବାପା, ଅତୀବ ବିଚିତ୍ର ! !

ଅବାଧ ପ୍ରଣୟ କୁଆଡ଼େ ଉଚ୍ଚ ଶିକ୍ଷାର ମାନଦଣ୍ଡ ହେଲାଣି ! ଚାଲ୍ ଯିବା।

# ବଟ ମହାପୁରୁଷ

ପଶୁ ହିଂସ୍ର ହୁଏ ତା'ର କ୍ଷୁଧାପାଇଁ। କ୍ଷୁଧାର ତୃପ୍ତି ହେବା ପରେ ସେ ହୁଏ ଶାନ୍ତ; କିନ୍ତୁ ମଣିଷ ହିଂସ ହୁଏ ପ୍ରଧାନ୍ୟ ପାଇବା ପାଇଁ। ସେଥିରେ ତୃପ୍ତି ନାହିଁ, ତେଣୁ ତ ତା'ର ହିଂସାର ସୀମା ନାହିଁ। ପୁଣି ପଶୁ ତା'ର କ୍ଷୁଧାର ତୃପ୍ତିପାଇଁ ପ୍ରୟୋଗ କରେ ଶାରୀରିକ ଶକ୍ତି, ତେଣୁ ତା'ର ଶକ୍ତି ସୀମିତ; କିନ୍ତୁ ମଣିଷ ପ୍ରୟୋଗ କରେ ମାନସିକ ଶକ୍ତି, ତେଣୁ ତା'ର ସୀମା ନାହିଁ। ମଣିଷ ତେଣୁ ହୁଏ ପଶୁଠାରୁ ହଜାର ହଜାର ଗୁଣ ହିଂସ୍ର, କ୍ରୂର, ପିଶାଚ। କେବଳ ଗୋଟାଏ କଥାରେ ପଶୁ ଆଉ ମଣିଷ ସମାନ। ଇତର ପ୍ରାଣୀମାନେ ଯେପରି ଶିକାର ଉଦ୍ଦେଶ୍ୟରେ ନିଜକୁ ଘୋଡ଼ାଇ ଲୁଚାଇ ରଖନ୍ତି ପାରିପାର୍ଶ୍ୱିକ ଅବସ୍ଥା ସାଙ୍ଗରେ ଖାପ ଖୁଆଇ, ମଣିଷ ସେମିତି ଗୋଟିଏ ଆଦର୍ଶ ଭିତରେ ଲୁଚାଇ ରଖେ ତା'ର କ୍ରୂରତା। ବାହାରେ ବଡ଼ ବଡ଼ କଥା କହି ଲୋକଙ୍କୁ ଭୁଲାଇ ରଖି ସେ ଭିତରେ ଭିତରେ ମଣିଷ ଶିକାର କରେ, ନିଜ କବଳକୁ ଆଣେ। ଜାଲ୍, ଜୁଆଚୋରି, କିଳାପୋତେଇ କରି ଅର୍ଥ ଉପାର୍ଜନ ଭିତରେ ଭିତରେ ଚାଲିଥାଏ; ବାହାରେ କିନ୍ତୁ ଚାଲିଥାଏ ଅନ୍ୟକୁ ଧର୍ମୋପଦେଶ, ସ୍କୁଲ କଲେଜ ଦେବମନ୍ଦିର ଧର୍ମଶାଳା ତିଆରି, ଦାନ। ଲୋକେ ବୁଝିପାରିଲେ ମଧ୍ୟ କିଛି କହନ୍ତି ନାହିଁ। କାରଣ ସେଇ ବାଟ ପ୍ରତ୍ୟେକେ ଅନୁସରଣ କରନ୍ତି। ମହାକାଳ ହସୁଥାଆନ୍ତି। ଜଣେ ଦୁଇଜଣ ଏପରି ହେଲେ ହୁଏତ ଚଳି ଯାଆନ୍ତା। କିନ୍ତୁ ଜଣକୁ ଅନୁସରଣ କରି ପ୍ରତ୍ୟେକେ ଯେତେବେଳେ ସେଇ ପନ୍ଥା ଅନୁସରଣ କରିବାରେ ଲାଗି ପଡ଼ନ୍ତି, ଅବସ୍ଥା ପ୍ରତ୍ୟେକଙ୍କ ପକ୍ଷରେ ସଙ୍ଗିନ୍ ହୋଇଯାଏ। ଦିନେ ଭୁଷକିନା ନିଆଁ ଉଠେ ଦେଶସାରା। ସମସ୍ତେ ଧ୍ୱଂସ ପାଇ ଯାଆନ୍ତି ସେଥିରେ, ଆଉ କେହି ରୋଧ କରି ପାରେ ନା ସେ ନିଆଁକୁ। ତା'ପରେ କିଛି କାଳ ପାଇଁ ସବୁ ଶୁନ୍‌ଶାନ୍। ମନୀଷୀମାନେ ସତ୍ୟ ପ୍ରଚାର କରି ଯାଆନ୍ତି; କିନ୍ତୁ ତାକୁଇ ପାଣ୍ଠି କରି ଶିଷ୍ୟପ୍ରଶିଷ୍ୟମାନେ ଅନୁଷ୍ଠାନ ଗଢ଼ି ଯେତେବେଳେ ନିଜର ଦଳ ପ୍ରାଧାନ୍ୟ ପାଇଁ ପ୍ରଚାର କରି ବୁଲନ୍ତି ସେତେବେଳେ ସତ୍ୟଟି ଅଡୁଆତଡୁଆ ହୋଇଯାଏ। ମିଥ୍ୟା ବି ସରଳ ସଳଖ ମିଥ୍ୟା

ରହେ ନାହିଁ, ସତ୍ୟ ସାଙ୍ଗରେ ଗୁଡ଼େଇ ତୁଡ଼େଇ ସିଏ ବି ହୋଇଯାଏ ଅଡୁଆତଡୁଆ। ମାରିଖିଆ ମହାପାତ୍ରମାନଙ୍କୁ, ଅର୍ଥାତ୍ ତଥାକଥିତ ବୁଦ୍ଧିମାନ୍‌ମାନଙ୍କୁ, କଙ୍କଡ଼ାକୁ ଗୋଳିପାଣି ପରି, ଏଇଟା ହୁଏ ସୁବର୍ଣ୍ଣ ସୁଯୋଗ; କିନ୍ତୁ ସେ ସୁଯୋଗ ବି ବେଶୀ ଦିନ ରହେ ନାହିଁ। ଆସିଯାଏ ମହାପ୍ଲାବନ। ସମସ୍ତେ ସେଥିରେ ଭାସି ଯାଆନ୍ତି। ତା' ପରେ କିଛି ଦିନ ଶୁନ୍‌ଶାନ୍। ଇଯେ ହେଲା ମଣିଷର ଇତିହାସ, ଯେଉଁ ଇତିହାସ ପାଇଁ ମଣିଷ ଆଜି ଗର୍ବ କରେ!

ମଣିଷ ଦାଉରେ ପଡ଼ି ଗଛ, ମୂକ ଗଛ ବି, କମ୍ ହଟହଟାରେ ପଡ଼େ ନାହିଁ। ପଶୁ ପକ୍ଷୀଙ୍କ କଥା ତ ଛାଡ଼, ଯୁଦ୍ଧରେ କେତେ ପଶୁଙ୍କର ବୃଥା ଯେ ପ୍ରାଣ ଯାଏ ତା'ର ଇୟତ୍ତା ନାହିଁ। ଅଥଚ ସେମାନେ କିଛି ଜାଣନ୍ତି ନାହିଁ, କେଉଁଥିପାଇଁ ସେମାନେ ହତ ହେଉଛନ୍ତି।

ଆପଣ କେବେ ଯେବେ ନରିପୁର ଆଡ଼େ ଯାଇଥିବେ ତେବେ ନିଶ୍ଚୟ ବଟ ମହାପୁରୁଷଙ୍କ ଛାୟାତଳେ ବସି ବିଶ୍ରାମ ନେଇଥିବେ (ହାୟ! ସେ ମହାପୁରୁଷ ଆଉ ନାହାନ୍ତି। ମଣିଷମାନଙ୍କ ଦାଉରେ ପଡ଼ି ତାଙ୍କୁ ଇହଧାମ ଛାଡ଼ିବାକୁ ପଡ଼ିଚି!)

ନରିପୁର ଗାଁ ମୁଣ୍ଡରେ ବଟ ମହାପୁରୁଷଙ୍କ ଆସ୍ଥାନ । ପ୍ରକାଣ୍ଡ ମହୀରୁହ। ଅସଂଖ୍ୟ ଓହଳ ସବୁ ଓହଳି ପ୍ରକାଣ୍ଡ ପ୍ରକାଣ୍ଡ ଖମ୍ବ ପାଲଟି ଗଲାଣି। ପ୍ରାୟ ମାଣେ ଜମି ମାଡ଼ି ବସିଚନ୍ତି ବଟ ମହାପୁରୁଷ। ତଳଟି ପରିଷ୍କୃତ ପରିଚ୍ଛନ୍ନ, ଯେପରି ପକ୍‌କା ଚଟାଣ। ମହାପୁରୁଷଙ୍କ ତଳଦେଇ ସଡ଼କ ଚାଲି ଯାଇଛି ପଶ୍ଚିମରୁ ପୂର୍ବକୁ। ପୂର୍ବକୁ ଡିହସାହି, ଦୈତାପୁର, ଧାନୁଆ, ଗମରା ଇତ୍ୟାଦି ଗାଁମାନ। ପଶ୍ଚିମକୁ ନୂଆଗାଁ, ନୂଆପାଟଣା, ଅହମ୍ମଦପୁର ଇତ୍ୟାଦି। ଏ ସବୁ ଗାଁ ନରିପୁରଠାରୁ ଅଳ୍ପ ଦୂରରେ।

ସଡ଼କ ଉତ୍ତର ପଟକୁ ଲାଗି ନରିପୁର ଗାଁ ମଶାଣି। ସେଠି ସାନବଡ଼ କେତେ ମଣିଷ ମୁଣ୍ଡ, କେତେ ଛିଣ୍ଡା ମସିଣା ତକିଆ ଆଦି ପଡ଼ିଛି, ଆହୁରି ପଡ଼ିବ। ମଝିରେ ମଝିରେ ବୋଲ ହରି, 'ହରିବୋଲ' କୁହାଟରେ ମଶାଣି କମ୍ପି ଉଠେ, ଦାଉଦାଉ ଚିତା ଜଳି ଉଠେ। ତା' ପରେ ଶୁନ୍‌ଶାନ୍ କିଛିକ୍ଷଣ ପାଇଁ। ପୁଣି ଗାଁ ମାଇପିମାନେ କାନ୍ଦ ବୋବାଳି ଛାଡୁଛାଡୁ ହାଣ୍ଡି ମାଠିଆ ଧରି ସେଠି ରୁଣ୍ଡ ହୁଅନ୍ତି। ହାଣ୍ଡି ଫାଣ୍ଡି ମଶାଣିରେ ଫୋପାଡ଼ି ଦେଇ ପାଖ ପୋଖରୀରେ ଗାଧୋଇପାଧୋଇ ପୁଣି କାନ୍ଦିକାନ୍ଦି ଫେରିଯାଆନ୍ତି ଯେ ଯାହା ଘରକୁ। ଦିନେ ଦିଦିନ କାନ୍ଦନ୍ତି। କାନ୍ଦଣା ଥମି ଆସେ। କିଛି ଦିନ ପରେ ପୁଣି ହସଖୁସି। ଯିଏ ମଲା ସିଏ ଗଲା। ତା'ର ଦେହ ନରିପୁର ମଶାଣିରେ ମାଟି ହୋଇ ମିଶି ଘାସ ବା ଗଇସ ଗଛକୁ ସାର ଯୋଗାଇଲା। ଆଉ ତା'ର ଆତ୍ମା? କିରସ୍ତାନମାନେ କହିବେ "ସବୁ ଆତ୍ମାଯାକ ଯାଇ ପ୍ରକାଣ୍ଡ ଗୋଟାଏ ଘରେ ଅପେକ୍ଷା କରି ରହିଥାଆନ୍ତି।

କଛ ଶେଷରେ ସେମାନଙ୍କ ବିଚାର ହୁଏ, ତା'ପରେ କେହି କେହି ନରକକୁ ଯାଆନ୍ତି, କେହି ବା ସ୍ୱର୍ଗକୁ।" ନାସ୍ତିକମାନେ କହିବେ "ଭସ୍ମୀଭୂତସ୍ୟ ଦେହସ୍ୟ ଆତ୍ମା କୁଆଡୁ ଆସିଲା ?" ଗୀତା କହେ "ଆତ୍ମା ଅମର !" ପଣ୍ଡିତେ ଯିଏ ଯାହା କହନ୍ତୁ ନରିପୁରର ଲୋକେ ପ୍ରତ୍ୟକ୍ଷ ପ୍ରମାଣ ପାଇଛନ୍ତି ଯେ ଅନେକ ଭସ୍ମୀଭୂତ ଦେହ ଭୂତ ହୋଇ ନିଜ ଘର ବା ଘର ଲୋକର ମାୟା ଛାଡ଼ି ନପାରି ଏଇ ବଟ ମହାପୁରୁଷଙ୍କ ଦେହରେ ଆଶ୍ରା କରି ରହି ଯାଆନ୍ତି, ସ୍ୱର୍ଗକୁ ଯିବାକୁ ବି ଇଚ୍ଛା କରନ୍ତି ନାହିଁ।

ଏଇ ତ ସେଦିନ ଅନ୍ତା, ଗଜା ଟୋକାଟା, ଗଜାଟୋକୀ ବୋହୂଟାକୁ ଛାଡ଼ି ଗୋଟାଏ ଝାଡା ପରେ ଚାଲିଗଲା। ଏଇ ଶ୍ମଶାନରେ ତା ବୋହୂ କାନ୍ଦି କାନ୍ଦି ମୂର୍ଚ୍ଛା ଯାଇଥିଲା। ତା ଶବ ଦାହ କରି ଲୋକେ ଫେରୁଥିବାବେଳେ ଦେଖିଲେ ବଟ ମହାପୁରୁଷଙ୍କ ଗୋଟାଏ ମୋଟା ଡାଳ ମଚ ମଚ କରି ଭାଙ୍ଗି ପଡ଼ିଗଲା, ଅଥଚ ବତାସ ଫତାସ କିଛି ନାହିଁ। ସମସ୍ତେ ଜାଣିଲେ ବୋହୂ-ମାୟା ଛାଡ଼ି ନପାରି ଅନ୍ତା ବଟ ମହାପୁରୁଷଙ୍କ ଗୋଟାଏ ଡାଳରେ ବସା ବାନ୍ଧି ରହିଲା। ମାସେ ନ ପୂରୁଣୁ ଅନ୍ତା ବୋହୂ ରାମ ପ୍ରଧାନ ସାଙ୍ଗରେ କଲିକତା ପଳେଇଲା। ଅନେକେ କୁହାକୁହି ହେଲେ, କଥାଟି ବି ଜଣାପଡ଼ିଗଲା। ରାମ ପ୍ରଧାନ କୁଶିକ୍ଷାରେ ଅନ୍ତା-ବୋହୂ ଅନ୍ତାକୁ ବିଷ ଦେଇ ମାରି ଦେଇଚି। ତଥାପି ଏ ପର୍ଯ୍ୟନ୍ତ ଅନ୍ତା ବଟ ମହାପୁରୁଷଙ୍କ ଡାଳେ ଅଛି, ଲୋକେ ଦେଖୁଛନ୍ତି। ଏମିତି କେତେ ଯେ ଭୂତ ବଟ ମହାପୁରୁଷଙ୍କ ଦେହରେ ରହିଲେଣି - କିଏ ତା'ର କଳନା କରିବ ! କେହି କେହି ଦେଖିଚନ୍ତି ରାତିଅଧରେ ଅସଂଖ୍ୟ ଭୂତ ସେ ଗଛରୁ ଓହ୍ଲାଇ ସଡ଼କେ ସଡ଼କେ କୁଆଡ଼େ ଯାଆନ୍ତି। ଖାଲି ସେ ନରିପୁରର ଭୂତମାନେ ବଟ ମହାପୁରୁଷଙ୍କଠି ଅଛନ୍ତି ତା ନୁହଁ, ଆଖ ପାଖ ପଚିଶଖଣ୍ଡ ଗାଁର ଭୂତମାନେ ମଧ୍ୟ ସେଠି ରହନ୍ତି ଏମିତି ଶୁଣାଯାଏ।

ବଟ ମହାପୁରୁଷଙ୍କ ତଳେ ବର୍ଷା ଟୋପାଏ କି ଖରା ଚେନାଏ ବି ପଡ଼େ ନାହିଁ। ଶୀତଦିନରେ ମଧ୍ୟ ତାଙ୍କ ତଳଟି ଉଷୁମ, ମା କୋଳ ଭଳି। ଘୋର ବର୍ଷା ଆସିଲେ ଗାଈଆଳ ପିଲାଏ ଗାଈ ଗୋଠକୁ ବିଲରୁ ବା ଦାଣ୍ଡରୁ ଘଉଡ଼େଇ ନେଇ ଆସନ୍ତି ବଟ ମହାପୁରୁଷଙ୍କ ତଳକୁ। ଗାଈ ଛେଳି ମେଣ୍ଢା ଆଦି ଶହ ଶହ ପଶୁ ନିରାପଦରେ ଶୁଖିଲାରେ ଗଛତଳେ ଚାରିକାତ ମେଲେଇ ଦେଇ ଦେହକୁ ଦେହ ଲଗେଇ ଦେଇ ଅଳସ ଭାଙ୍ଗନ୍ତି, ପାକୁଳି କରନ୍ତି। ଗାଈଆଳ ପିଲାଏ ବଟ ମହାପୁରୁଷଙ୍କ ରାସ୍ତାପରି ଲମ୍ବା ଚଉଡ଼ା ଡାଳମାନଙ୍କରେ ଦୌଡ଼ାଦୌଡ଼ି କରନ୍ତି ଆନନ୍ଦରେ, କେହି କେହି ଗୋଟାଏ ଡାଳରେ ଶୋଇ ଆନନ୍ଦରେ ଗୀତ ଛାଡ଼େ "କହ କହ ବାଳା କାହାର ଅବଳା, କିମ୍ବା ଏକା ବସି କାନ୍ଦୁଚୁରେ, କହ କହ ବାଳା..." ଆଉ କେହି ବା ଗୋଟାଏ ଓହଳରେ ଦୋଳି ଖେଳେ। ଖରା ଦିନର ଉଦୁଉଦିଆ ଖରାବେଳେ ବାଟୋଇ ଦୌଡୁଥାଏ ବଟ ମହାପୁରୁଷଙ୍କୁ

ଲକ୍ଷ୍ୟ କରି । ପାଖ ହୋଇଗଲା ମାତ୍ରେ ବଟ ମହାପୁରୁଷଙ୍କ ଦେହରୁ ଝଲକାଏ ହେମାଳ ପବନ ବାଟୋଇକୁ ପାଛୋଟି ଆଣେ । ବାଟୋଇ ମୁଣ୍ଡରୁ ଠେକାଟି ଫିଟାଇ ଦେଇ ଝାଳ ପୋଛି ଥକାମାରି ଗୋଟାଏ ଓହଳକୁ ଡେରି ବସିଯାଏ ଦଣ୍ଡେ । ତା'ପରେ ପାଣିଛତ୍ରରୁ ଲଙ୍କାମରିଚ ଗୋଳା ହୋଇଥିବା ଥଣ୍ଡା ତୋରାଣିରୁ ଏକ ନିଶ୍ୱାସକେ ପେଟେ ପିଇ ବଟ ମହାପୁରୁଷଙ୍କ ଗୋଟାଏ ପାଦରେ ମୁଣ୍ଡ ରଖି ବେହୋସ୍ ହୋଇ ଶୋଇଯାଏ, ଉଠେ ଛାଇ-ନୋଉଟାଣି ବେଳକୁ, ଆଉ ମହାପୁରୁଷଙ୍କ ପାଦ ଛୁଇଁ ଜୁହାର ହୋଇ ଚାଲିଯାଏ ବାଟେ ବାଟେ । ଶୀତଦିନ ରାତିରେ ମହାଜନମାନଙ୍କ ୩୦/୪୦ ଖଣ୍ଡ ମାଲବୁହା ବଳଦଗାଡ଼ିର କେଁ କଟର ବନ୍ଦ ହୋଇଯାଏ ବଟ ମହାପୁରୁଷଙ୍କ ଆସ୍ଥାନ ତଳେ । ବଳଦମାନଙ୍କୁ ଫିଟାଇ ଦେଇ ଓହଳମାନଙ୍କରେ ବାନ୍ଧି ଦେଇ ରୋଷେଇ କରିବାରେ ଲାଗି ଯାଆନ୍ତି, ଖିଆପିଆ ପରେ ବଳଦମାନଙ୍କୁ ଖାଇବାକୁ ଦେଇ ଆରାମରେ ଶୋଇ ଯାଆନ୍ତି ବଟ ମହାପୁରୁଷଙ୍କ ତଳେ, ବାହାରର ଥଣ୍ଡା ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ, ବଟ ମହାପୁରୁଷ ଖଣ୍ଡେ ଅଦୃଶ୍ୟ ଉଷୁମ କମ୍ବଳ ସମସ୍ତଙ୍କୁ ଘୋଡ଼ାଇ ଦିଅନ୍ତି । ସକାଳୁ ଉଠି ସେମାନେ ମହାପୁରୁଷଙ୍କ ଆସ୍ଥାନ ପରିଷ୍କୃତ କରି ଦେଇ ଜୁହାର ହୋଇ ଚାଲି ଯାଆନ୍ତି ।

ଏ ମହାପୁରୁଷଙ୍କୁ ଆଣିଥିଲେ ରାମଚନ୍ଦ୍ର । ସେ ଚାରିପୁରୁଷ ଆଗ କଥା । ରାମଚନ୍ଦ୍ର ଥିଲେ ଅତି ଧାର୍ମିକ, ସତ୍ୟବାନ, ନିଷ୍ଠାବାନ୍ ଅଥଚ ନୀରବ ମୌନୀଲୋକ । ଗାଁ ଗାଁ ଭିତରେ ଯେତେବେଳେ କନ୍ଦଳ କ୍ରମେ କ୍ରମେ ବୃଦ୍ଧି ପାଇବାକୁ ଲାଗିଲା, ସେତେବେଳେ ସେ ବ୍ୟଥିତ ହୋଇ ଚାଲିଗଲେ ହିମାଳୟକୁ ତପସ୍ୟା କରିବାକୁ । ସେ ଯୁଗରେ ସମାଜରେ ପାପବୃଦ୍ଧି ହେଲେ ନେତା ଗୋଷ୍ଠୀବାଦ, ସମାଜବାଦ, କୂଟନୀତି, ରାଜନୀତି, ପେଞ୍ଚ ପ୍ରୟୋଗ କରୁ ନଥିଲେ, ସମସ୍ତ ପାପକୁ ନିଜର ପାପ ବୋଲି ଧରିନେଇ ତାକୁ ଦୂର କରିବାକୁ ତପସ୍ୟା କରୁଥିଲେ, ଉପବାସ କରୁଥିଲେ ଏବଂ ତପସ୍ୟା ପରେ ଫେରି ଆସି ପୁଣି ଧର୍ମ, ଆଧ୍ୟାତ୍ମିକତା ସଂସ୍ଥାପନ କରୁଥିଲେ । ବର୍ତ୍ତମାନ ଯୁଗରେ ନେତାଏ ପ୍ରଚାର କରିଛନ୍ତି, ଧର୍ମ ଆଧ୍ୟାତ୍ମିକତା ଫିଙ୍ଗିଦିଅ, ବିଜ୍ଞାନଯୁଗରେ ସେ ସବୁର ସ୍ଥାନ ନାହିଁ, ଶିଳ୍ପ ବ୍ୟବସାୟଦ୍ୱାରା ଅର୍ଥ ଉପାର୍ଜନ ବଢ଼ାଅ, ତାହା ହିଁ ଜୀବନର ଏକମାତ୍ର ଲକ୍ଷ୍ୟ । ଧର୍ମ ଅଳୀକ କଳ୍ପନା, ଅର୍ଥ ବାସ୍ତବ ସତ୍ୟ । କିଏ ଭଲ, କିଏ ଠିକ୍ ମହାକାଳ କେବଳ ଜାଣନ୍ତି ! ହୁଏତ ମିଥ୍ୟାଟା ହିଁ ସତ୍ୟ, ସତ୍ୟଟା ହିଁ ମିଥ୍ୟା ! ! ହୁଏତ ସେ କଳ୍ପନା ମଣିଷକୁ କରାଏ ଦେବତା, ଆଉ ସେ ସତ୍ୟ କରାଏ ରାକ୍ଷସ ! ! ବର୍ଷେକାଳ ହିମାଳୟରେ ତପସ୍ୟା କରିବା ପରେ ରାମଚନ୍ଦ୍ର ଫେରିଲେ ନଟିପୁର, ସାଙ୍ଗରେ ବରଗଛର ଚାରା ଧରି । ଆଖପାଖ ପଚିଶିଖଣ୍ଡ ଗାଁର ଲୋକେ ମହାଉତ୍ସାହରେ ଓ ସମ୍ଭ୍ରମରେ ବଟ ମହାପୁରୁଷଙ୍କୁ ସ୍ଥାପନ କଲେ । ସାତଦିନ ଧରି ଧୁମ୍‌ଧାମ୍‌ରେ ଖିଆପିଆ ଚାଲିଲା । ସେଇ ଚାରା ଆଜି ବିରାଟ

ବଟ ମହାପୁରୁଷ। ତାଙ୍କରି ଯୋଗୁଁ ସମସ୍ତ ବାଦବିବାଦ ଭୁଲି ପୁଣି ମିଳିତ ହେଲେ ତାଙ୍କର ଶତ ଶତ ବାହୁଛାୟା ତଳେ। ରାମଚନ୍ଦ୍ର ଦେହତ୍ୟାଗ କଲା ପରେ ସ୍ୱର୍ଗ ନ ଯାଇ ରହିଗଲେ ବଟ ମହାପୁରୁଷଙ୍କ ଦେହରେ। ଏ ପର୍ଯ୍ୟନ୍ତ ତାଙ୍କ ବଂଶରୁ କେହି ହେଲେ ଜଣେ ଖରାଦିନରେ  ବଟ ମହାପୁରୁଷ ତଳେ ପାଣିଛତ୍ର ଦିଅନ୍ତି, ପ୍ରତିଦିନ ବଟେଶ୍ୱରଙ୍କ ପୂଜା କରନ୍ତି। ବୀଣାକର ଯେତେବେଳେ ମନ୍ଦିର ଭିତରେ ଶିବାଷ୍ଟକ ବୋଲୁଥିଲେ-

"ଗିରିରାଜସୁତାନ୍ୱିତବାମତନୁ, ତନୁନିନ୍ଦିତରାଜିତକୋଟିବିଧୁମ୍,
ବିଧୁ ଖଣ୍ଡବିମଣ୍ଡିତଭାଲତଟମ୍, ପ୍ରଣମାମି ଶିବମ୍ ଶିବକଳ୍ପତରୁମ୍।"

କିମ୍ବା ରାବଣଙ୍କ ଶିବତାଣ୍ଡବ ବୋଲୁଥିଲେ-

"ଜଟାଟବୀଗଲଜ୍ଜଳପ୍ରବାହପ୍ଲାବିତସ୍ଥଳେ,
ଗଳେଽବଲମ୍ବ୍ୟଲମ୍ବିତାମ୍ ଭୁଜଙ୍ଗତୁଙ୍ଗମାଳିକାଂ,
ଡମଡମ ଡମଡମ ନିନାଦ ବଡଡ୍ମର୍ବୟଂ,
ଚକାରଚଣ୍ଡତାଣ୍ଡବମ୍ ତନୋତୁ ନଃ ଶିବଃ ଶିବମ୍ ।"

ସେତେବେଳେ ମନ୍ଦିର ଭିତରେ ଗମଗମ ହୋଇ ଉଠୁଥିଲା। ବଟ ମହାପୁରୁଷ ମଧ୍ୟ ଆବେଗରେ କମ୍ପି ଉଠୁଥିଲେ। ବୀଣାକରଙ୍କ ମରକଳେବର ନରିପୁର ମଶାଣିରେ ମିଶି ଯାଇଚି; କିନ୍ତୁ ସେ ବି ନରିପୁର ମାୟା ନ ଛାଡ଼ି ରହିଯାଇଚନ୍ତି ବଟ ମହାପୁରୁଷଙ୍କ ଦେହରେ।

ପ୍ରତ୍ୟେକ ବର୍ଷ ଦ୍ୱିତୀୟା ଓଷା ଦିନ ବଟ ମହାପୁରୁଷଙ୍କ ମାର୍ଜନା, ସ୍ନାନ ହୁଏ। ପୂଜା ହୁଏ। ଢୋଲ ମହୁରି ବାଜେ। ଗୁଡ଼ପଣା ଭୋଗ ହୁଏ। ଗାଁ  ମାଇପିମାନଙ୍କ ଶଙ୍ଖ ହୁଳହୁଳି ଶବ୍ଦରେ ବଟ ମହାପୁରୁଷ ଆନନ୍ଦରେ କମ୍ପି ଯାଆନ୍ତି। ସ୍ନାନ ହୁଏ। ତା'ପରେ ବଟ ମହାପୁରୁଷ ପିନ୍ଧନ୍ତି ନୂଆ ଲୁଗା। ତା'ଙ୍କର ପ୍ରତ୍ୟେକ ଓହଳରେ ଓ ମୂଳରେ ସିନ୍ଦୂର ଲାଗିହୁଏ। ଧୂପଝୁଣା ବାସନାରେ ବଟ ମହାପୁରୁଷଙ୍କ ଆସ୍ଥାନ ମହକି ଉଠେ। ତା'ପରେ ଚାଲେ ଭୋଜିଭାତ। ପଚିଶ ଖଣ୍ଡ ଗାଁର ଲୋକେ, ଏପରି କି ଅହମ୍ମଦପୁରର ପଠାଣମାନେ ବି, ଏକାଠି ବସି ଖାଆନ୍ତି। ଦିନରାତି ବଟ ମହାପୁରୁଷଙ୍କ ତଳେ ଯାତ୍ରା, ବାଦି ପାଲା, ଦୋକାନପତ୍ର ବସେ। ଇୟେ ହେଲା ତାଙ୍କର ବାର୍ଷିକ ପୂଜା; କିନ୍ତୁ କାହାରି ପିଲା ହେଲେ, ବା କାହାରି ମନସ୍କାମନା ପୂର୍ଣ୍ଣ ହେଲେ, ପୁଅ ଚାକିରି ପାଇଲେ ବା ବାହାଘର ହେଲେ ସେ ପୂଜା କରାଏ। ଏମିତି ପୂଜା ଲାଗିଥାଏ ବର୍ଷସାରା, ବଟ ମହାପୁରୁଷଙ୍କୁ କେନ୍ଦ୍ରକରି ପଚିଶିଖଣ୍ଡ ଗାଁ ଭେଦାଭେଦ ଦୂର କରି ମିଳିମିଶି ଚଳନ୍ତି।

ହିମାଳୟର ଏ ମହୀରୁହ ହିମାଳୟ ପରି ନରିପୁର ସୀମାରେ ଏବଂ ପଚିଶ ଖଣ୍ଡ ଗାଁର କେନ୍ଦ୍ର ସ୍ଥଳରେ ବିରାଜମାନ ଚାରିପୁରୁଷ ହେବ।

ନରିପୁର ଗାଁ ମଶାଣିକୁ ଲାଗି ଉତ୍ତରପଟେ ହଳଦିଆ ଗାଁ। ବଡ଼ ଗାଁଟାଏ। ହଳଦିଆର ଲୋକେ ନରିପୁରିଆମାନଙ୍କ ଠାରୁ ଅଧିକ ଶିକ୍ଷିତ ଓ ଥିଲାବାଲା। ନରିପୁରରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ମାଇନର ସ୍କୁଲରେ ପରିଣତ ହୋଇପାରେ ନାହିଁ। ତା'ର ଦରକାର ପଡ଼ିନାହିଁ, କାରଣ ପିଲାଏ "କଳା କଳେବର କହ୍ନାଇ ସଂଗେ ରୋହେଣୀ ସୁତ..." ବୋଲି ଶିଖୁ ନ ଶିଖୁଣୁ ବଳଦଲାଙ୍ଗୁଡ଼ ମୋଡ଼ି ହେଃ ହେଃ ଶଳା ବଳଦ ମୋର...କହୁ କହୁ ବିଲକୁ ଦୌଡ଼ନ୍ତି ସକାଳୁ; କିନ୍ତୁ ହଳଦିଆର ମାଇନର ସ୍କୁଲ ଉଚ୍ଚ ବିଦ୍ୟାଳୟରେ ପରିଣତ ହେଲାଣି ଅନେକ ଦିନୁ, ଆଉ ଅଳ୍ପଦିନ ଭିତରେ ସେ କଲେଜରେ ପରିଣତ ହେବ। ହଳଦିଆର ଅଧିକାଂଶ ଚାକିରିଆ ଓ ବଡ଼ ବ୍ୟବସାୟୀ। ସେମାନଙ୍କ ଭିତରୁ ଅନେକ ବଡ଼ବଡ଼ ଚାକିରିଆ ବି ଅଛନ୍ତି। ବିଧାନସଭାର ସଭ୍ୟ, ସରପଞ୍ଚ, ପଞ୍ଚାୟତ ସମିତି ଚେୟାରମେନ୍ ମଧ୍ୟ ହଳଦିଆର ଲୋକେ। ନରିପୁରରେ ଖାଲି ନୁଆଣିଆ ଅନ୍ଧାରୁଆ ଚାଳଘର, ମଣିଷ ରହିବା ଘରଠାରୁ ଗାଈଗୋରୁ ରହିବା ଘର ବଡ଼। କିନ୍ତୁ ହଳଦିଆରେ ଅନେକ କୋଠାଘର।

ହେଲେ, ନରିପୁରର ଗର୍ବ ତା'ର ବଟ ମହାପୁରୁଷ। ଯେତେ ବଡ଼ ଗାଁ ହେଉନା ପଛକେ ତାକୁ ମୁଣ୍ଡ ନୁଆଇଁବାକୁ ହେବ। ନରିପୁରର ବଟ ମହାପୁରୁଷଙ୍କ ତଳେ କଳ୍ପତରୁ। ସେ ପ୍ରତ୍ୟକ୍ଷ ଦେବତା।

କିନ୍ତୁ ହେଲେ କଅଣ ହେଲା, ଯୁଗ ବଦଳୁଛି। ପଞ୍ଚାୟତରାଜ ଚାଲିଚି। ଲୋକେ ଶିକ୍ଷିତ ହେଲେଣି। ଦେଶର ଭଗୀରଥ ବିଦେଶମାନଙ୍କରୁ ଟଙ୍କାସ୍ରୋତ ସବୁ ମୁହାଁଇ ଦିଲ୍ଲୀକୁ ଆଣିଲେଣି। ସେଠି ସବୁ ଠୁଳ କରି ପୁଣି ମୁହେଇଁ ଦିଆ ହେଉଚି ସବୁ ରାଜ୍ୟକୁ। ପୁଣି ରାଜ୍ୟରୁ ପ୍ରତ୍ୟେକ ଗାଁକୁ ସୁଅ ଚାଲିଛି। କେଉଁ କେଉଁ ରାଜ୍ୟର ଭଗୀରଥମାନେ ପୁଣି ସିଧାସଳଖ ବିଦେଶରୁ ସେ ସୁଅକୁ ନିଜ ନିଜ ରାଜ୍ୟକୁ ଆଣିବାକୁ ଚେଷ୍ଟା କରିଛନ୍ତି। ଅନେକ କପଟ ମହାଦେବ ବା ଜାହ୍ନୁମୁନି ସେ ସୁଅକୁ ଜଟରେ ଛପାଇ ନେଉଛନ୍ତି ବା ଚଲୁ କରି ଦେଉଚନ୍ତି; କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ। ସୁଅତ ମାଡ଼ି ଆସୁଛି, କିଏ କେତେ ଛପାଇ ରଖୁଛି, କିଏ କେତେ ଚଲୁ କରୁଚି କରୁ! ଦେଖାଯିବ ପରେ। କ୍ୟା ପରୱା।

ହେଲେ ଗୋଳମାଳ ହେଲା । ଫାଇଦା ଉଠାଇ ନପାରିବା ଲୋକେ ଯେତେବେଳେ ହଠାତ୍ ଦେଶପ୍ରେମୀ କର୍ମୀ ହୋଇ ଉଠିଲେ, ମୁଣ୍ଡରେ ଧଳା ଟୋପି ନାଇଲେ, କାନ୍ଧରୁ ମୁଣା ଝୁଲାଇଲେ ଓ ଆଣ୍ଠୁ ଉପରକୁ ମୋଟ ଧୋତି ପିନ୍ଧିଲେ। ନରିପୁରର ବଟକୃଷ୍ଣ ଦିନେ ଏମିତି ବେଶ ବଦଳେଇଲେ। ସେ କଲିକତାରେ ଝୋଟ କଳରେ କଣ କାମ କରୁଥିଲେ। ଶାଗୁଣାମଢ଼ ଗନ୍ଧ ପାଇ ଛୁଟିଲା ପରି ସେ କଲିକତା ଛାଡ଼ି ଗାଁକୁ ଆସି

ଆସ୍ଥାନ ଜମାଇଲେ। ନିମିଷେକେ ସେ ଅବସ୍ଥାଟା ହୃଦୟଙ୍ଗମ କଲେ ଯେ ଯେଉଁ ସୁଅ ହଳଦିଆକୁ ଚାଲିଚି ତା'ର ଗୋଟାଏ ଧାର ନରିପୁରକୁ ଆଣିବାକୁ ହେଲେ ବେଶ୍ କିଛି ବୁଦ୍ଧି ଖରଚ କରିବାକୁ ପଡ଼ିବ।

ତେଣୁ ସେ ପ୍ରଥମେ ସ୍ଥାପନ କଲେ 'ବଟ ମହାପୁରୁଷ ଉନ୍ନତି ସମିତି'। ସଭା ବସିଲା, ପଚିଶିଖଣ୍ଡ ଗାଁ ଲୋକେ ସଭାରେ ଯୋଗ ଦେଲେ। ନିୟମ ହେଲା ପ୍ରତ୍ୟେକ ଗାଁବାଲା ମାସକୁ ଅଣାଏ ଚାନ୍ଦା ଦେବେ। ଯିଏ ବଟ ମହାପୁରୁଷଙ୍କ ସ୍ପେସିୟାଲ୍ ପୂଜା କରାଇବ ସେ ଦୁଇଟଙ୍କା ଦେବ। ପ୍ରତ୍ୟେକ ଚୈତ୍ରରେ ବଟ ମହାପୁରୁଷଙ୍କ ନୂତନ କଳେବରବେଳେ ଯେଉଁ ହିମାଳୟ ପ୍ରମାଣ ପତର ଝଡ଼େ ତାକୁ ଆଉ ଧୋବଣୀ ପାଲୁଣୀମାନେ ମାଗଣା ନେଇ ପାରିବେ ନାହିଁ, ଟେକେଇକୁ ଏକ ନୂଆ ପଇସା ମାସୁଲ ଦେବେ, ଇତ୍ୟାଦି। ବଟକୃଷ୍ଣ ସମିତି ସେକ୍ରେଟେରି ହେଲେ। ଖୁବ୍ ଟଙ୍କା ଆଦାୟ ହେଲା। ବଟ ମହାପୁରୁଷଙ୍କ ମୂଳ ଚାରିପଟେ ବି ସାନ ସାନ ଚଉତରା ଗଢ଼ା ହେଲା। ତା ସଂଗେ ସଂଗେ ବଟକୃଷ୍ଣଙ୍କ ଆଶ୍ରମ ମଧ୍ୟ ପକା ହେଲା। ବଟକୃଷ୍ଣ ବଟ ମହାପୁରୁଷଙ୍କ ଆୟ ଆହୁରି ଏକ ଅଭିନବ ଉପାୟରେ ବଢ଼ାଇବାକୁ ଲାଗିଲେ। ଅହମ୍ମଦପୁରର ଜାନ୍‌ମହମ୍ମଦ ହେଉଚନ୍ତି ଗଣକବି। 'ଶାଶୂ-ବୋହୂ କଳି', 'କଟକିଆଣୀ' ଆଦି କବିତା ଲେଖି ଛପାଇ ସେ ଗ୍ରାମେ ଗ୍ରାମେ ବୁଲି ବିକନ୍ତି। ଅନ୍ତାବୋହୂ ଅନ୍ତାକୁ ବିଷ ଦେଇ ମାରି ରାମ ପ୍ରଧାନ ସହିତ କଲିକତା ପଳେଇଯିବା କାହାଣୀ ସେ କବିତାରେ ଲେଖି ଛପାଇ ଗ୍ରାମେ ଗ୍ରାମେ ବୁଲି ପ୍ରଚାର କରିଥିଲେ। ସେ ବହି ତାଙ୍କର ଭାରି କାଟତି ହୋଇଥିଲା, ପ୍ରତ୍ୟେକ ଗାଁର ବୋହୂମାନେ ତାକୁ କିଣି ପଢ଼ିଚନ୍ତି। ବଟକୃଷ୍ଣ ତାଙ୍କୁ ଧରିଲେ 'ବଟ ମହାପୁରୁଷ ମାହାତ୍ମ୍ୟ' ଲେଖି ପ୍ରଚାର କରିବାକୁ। 'ବଟ ମହାପୁରୁଷ ମାହାତ୍ମ୍ୟ' ଲେଖା ହେଲା, ସେଥିରେ ଭଣିତା ହେଲା 'ଦୀନ ସେବକ ବଟକୃଷ୍ଣ'। ବଟ ମହାପୁରୁଷଙ୍କ ନାନା ଅଲୌକିକ କାହାଣୀ ଶୁଣି ଯାତ୍ରୀ ବଢ଼ିଲେ, ସେ ଦିଗରୁ ବେଶ୍ କିଛି ଅର୍ଥ ବଟକୃଷ୍ଣଙ୍କ ହାତପୈଠ ହେଲା ଏବଂ ବଟମହାପୁରୁଷଙ୍କ ମାହାତ୍ମ୍ୟ ସହିତ ବଟକୃଷ୍ଣଙ୍କ ମାହାତ୍ମ୍ୟ ମଧ୍ୟ ପ୍ରଚାରିତ ହେଲା।

ବଟକୃଷ୍ଣ ଅଙ୍ଗୁଳି ପ୍ରବେଶ କରାଇଲେ ପଞ୍ଚାୟତରେ ସାମାନ୍ୟ ମେମ୍ବର ହୋଇ। କିଛି ଦିନ ପରେ ଜନରବ ହେଲା ଯେ ସରପଞ୍ଚଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସିବ। ସରପଞ୍ଚ ହେଉଚନ୍ତି ହଳଦିଆର ବଟୁକ। ତାଙ୍କ ଦୋତାଲାର ମୁଣ୍ଡି ମରା ହୋଇ ନାହିଁ, ସେ ପ୍ରମାଦ ଗଣିଲେ। ବଟୁକ ମାମଲାବାଜ ଲୋକ। ସେ ଦାଉ ସାଧନ୍ତି ଆଇନ୍ ଅଦାଲତ ଜରିଆରେ। ତାଙ୍କ ହାତମୁଠାରେ ଅନେକ ସାକ୍ଷୀ ଅଛନ୍ତି, ଯେଉଁମାନେ ଅଦାଲତରେ 'ନିୟମ କରୁଚି ଯାହା କହିବି ସତ କହିବି, କିଛି ମିଛ କହିବି ନାହିଁ, କିଛି ଲୁଚାଇବି

ନାହିଁ' ଶପଥ ନେଲା ପରେ ମଧ୍ୟ 'ଆମେ କାହିଁକି ମିଛ କହିବୁ, ଆମେ ମିଛ କହିଲାବାଲା ନହୁଁ' ଯୋଡ଼ି ଦେଇ ଅନର୍ଗଳ ମିଛ କହିଯାଆନ୍ତି, ଆଉ ଜେରାରେ ଧରା ପଡ଼ିଲେ ମଧ୍ୟ ନିର୍ଲଜ୍ଜ ଭାବରେ ମିଛ କହିଯାଆନ୍ତି ଓ ସାକ୍ଷୀ ଦେଇ ସାରିବା ପରେ ଦୁଇଟଙ୍କା ପାରିଶ୍ରମିକ ନେଇ ହୋଟେଲରେ ମାଗଣା ଖାଇ ଘରକୁ ଫେରନ୍ତି ।

"ଚନ୍ଦ୍ର ନ ଦିଶେ ମେଘାଛନ୍ନେ,
ମିଥ୍ୟା ବଚନେ ସତ୍ୟ ଯେହ୍ନେ ।"

ବଟୁକକୁ ତେଣୁ ସମସ୍ତେ ଭୟ କରନ୍ତି । ପଞ୍ଚାୟତ ସଭା ବସିବା ଆଗରୁ ସେ ବଟକୃଷ୍ଣଙ୍କ ନାମରେ ନାରୀ ଧର୍ଷଣ, ଚୋରି, ଠକେଇ ଆଦି ପିଙ୍ଗଳ କୋର୍ଡର ବଡ଼ ବଡ଼ ଦଫାରେ ଚାରିପାଞ୍ଚଟା ମାମଲା ଯୋଡ଼ି ଦେଲେ । ବଟକୃଷ୍ଣ ବଟ ମହାପୁରୁଷଙ୍କ ପାଖରେ ଅଧିଆ ପଡ଼ିଲେ, ଆହୁରି ଜୋରସୋରରେ 'ବଟ ମହାପୁରୁଷ ମାହାତ୍ମ୍ୟ' ପ୍ରଚାର ଚଳାଇଲେ । ବଟ ମହାପୁରୁଷ ପାଣ୍ଠିରୁ ମକଦ୍ଦମା ଖରଚ ଚଳେଇଲେ, ବଟକୃଷ୍ଣ ସରପଞ୍ଚ ହେଲେ । ବଟକୃଷ୍ଣ କିନ୍ତୁ କହିଲେ ବଟ ମହାପୁରୁଷ ଜିଣିଲେ । ନରିପୁର ଆଉ ହଳଦିଆ ଗାଁ ଭିତରେ ବିବାଦ ତେଜି ଉଠିଲା । ଖାଲି ସେତିକି ନୁହଁ, ସବୁ ଗାଁ ଭିତରେ ଫାଟ ଦୁଶିଲା ।

ବଟୁକ ଏଥର ଭଲକରି ଅଣ୍ଟା ଭିଡ଼ିଲେ । ସେ ମଧ୍ୟ ଅନାସ୍ଥା ପ୍ରସ୍ତାବ ଆଣିବା ପାଇଁ ଯୋଗାଡ଼ ଚଳାଇଲେ । ମେମ୍ବରମାନଙ୍କୁ ଟଙ୍କା ପଇସା ଦେଇ ହାତ କରି ରାତାରାତି ଗୋଟାଏ ଟ୍ରକରେ ଭୁବନେଶ୍ୱର ନେଇ ମନ୍ତ୍ରୀଙ୍କ ପାଖରେ ଶପଥ କରାଇ ପୁଣି ଲିଙ୍ଗରାଜଙ୍କ ପାଖରେ ମହାପ୍ରସାଦ ଛୁଆଁଇ ଶପଥ କରାଇ ରାତି ନ ପାହୁଣୁ ଫେରି ଆସିଲେ । କିନ୍ତୁ ଲିଙ୍ଗରାଜଙ୍କ ପ୍ରଭାବ ନରିପୁର ପର୍ଯ୍ୟନ୍ତ ପଡ଼େ ନାହିଁ ବୋଧହୁଏ । ଏଠି ବଟ ମହାପୁରୁଷ ସର୍ବେସର୍ବା । ଦାସକାଠିଆ ଦଳ, ପାଲାବାଲା, ଜାନ୍ ମହମ୍ମଦ ସମସ୍ତେ ଗାଁ ଗାଁ ବୁଲି ବଟ ମହାପୁରୁଷଙ୍କ ମାହାତ୍ମ୍ୟ ଓ ତା ସହିତ ବଟକୃଷ୍ଣ ମାହାତ୍ମ୍ୟ ପ୍ରଚାର ଚଳାଇଚନ୍ତି । ସେ ପ୍ରଚାର ପ୍ରାଚୀର ଭେଦ କରି ଲିଙ୍ଗରାଜ ପଶି ପାରିଲେ ନାହିଁ, କି ମନ୍ତ୍ରୀଙ୍କ ମନ୍ତ୍ରୀତ୍ୱ ମଧ୍ୟ କାଟୁ କଲାନାହିଁ । ବଟକୃଷ୍ଣ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ପ୍ରଚାର କରି ବରଗଛ ସଂକେତ ଧରି ପଞ୍ଚାୟତ ସମିତି ଚେୟାରମେନ୍ ପଦକୁ ଆଖୋଉ ଆଖୋଉ ପାଖେଇଲେଣି ।

ଏତେଦିନକେ ବଟୁକଙ୍କ ଚେତା ପଶିଲା । ସେ ବୁଝିଲେ ଯେ ପ୍ରଥମେ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ଖର୍ବ କରିବାକୁ ହେବ ।

ଦିନେ ହଠାତ୍ ଦେଖାଗଲା ହଳଦିଆ ଗାଁ ମଶାଣିରେ ଏକ ବାବାଜି ଆସ୍ଥାନ ଜମାଇ ବସିଚନ୍ତି । ତାଙ୍କ ନାଁ ବଟିଆ ବାବାଜି । ପ୍ରଚାର ହୋଇଗଲା ବଟିଆ ବାବାଜି ଜଣେ ଭାରି କାଳିସାଧକ । ପ୍ରତି ଅମାବାସ୍ୟା ରାତିରେ ସେ ଶବ ସାଧନା କରନ୍ତି, ବୀର

ପେଷି ଜାଣନ୍ତି ବି। ଆଉ ତାଙ୍କ ବଟୁଆରୁ ଟିକିଏ ଟିକିଏ ହୋମ ପାଉଁଶ ଦେଇ ସବୁ ରୋଗ ଭଲ କରି ଦେଇ ପାରନ୍ତି। ଅଳ୍ପଦିନ ଭିତରେ ପଚିଶି ଖଣ୍ଡ ଗାଁରେ ଏ ସମ୍ବାଦ ବିଜୁଳି ଭଳି ଖେଳିଗଲା। ଲୋକ ସୁଅ ଲାଗିଲା ବଟିଆ ବାବାଜି ପାଖକୁ।

କେତେକ ଦିନ ପରେ ଗାଁ ଗାଁରେ ଏକ ନୂଆ ଆତଙ୍କ ସୃଷ୍ଟି ହେଲା। ରାତି ଅଧରେ ଅନେକ ଘରେ ଟେକା ଭୁଷା ଘୁଅ ପଡ଼ିବାକୁ ଲାଗିଲା। କେଉଁଠୁ ପଡୁଚି କେହି ଧରି ପାରିଲେ ନାହିଁ। ଲୋକେ ବଟିଆ ବାବାଜିକୁ ଧରିଲେ ଏହାର କାରଣ ଜାଣିବାକୁ ଓ ପ୍ରତିକାର କରିବାକୁ। ବଟିଆ ବାବାଜି ପୂଜା କଲେ। ପୂଜାରୁ ଉଠି ସେ କାରଣ ଜଣାଇଲେ। ଲୋକେ ଶୁଣି ତାଟକା। କାରଣ କଣ ! କାରଣଟା ହେଉଚି ଏଇଆ, "ଆଜି ପର୍ଯ୍ୟନ୍ତ ପଚିଶ ଖଣ୍ଡ ଗାଁର ଭୂତମାନେ ବଟ ମହାପୁରୁଷଙ୍କ ଦେହରେ ଏକାନ୍ନବର୍ତ୍ତୀ ପରିବାର ପରି ରହି ଭୋଗ ଦଖଲ କରି ଆସୁଥିଲେ। ଏଥିକୁ ନରିପୁରିଆ ଭୂତମାନେ ଗୁଣ୍ଡା ଓ ଦୁଷ୍ଟ ପ୍ରକୃତିର ଓ ଦଙ୍ଗାବାଜ୍ ଓ ମାମଲାବାଜ ଥିବାରୁ ବେଆଇନ୍‌ଭାବେ ଦଳବଦ୍ଧ ହୋଇ ଏକାଏକା ବଟ ମହାପୁରୁଷଙ୍କୁ ଭୋଗ ଦଖଲ କରିବା କୁଇଚ୍ଛାରେ ଓ ଅହମ୍ମଦପୁରର ଖବିସ୍‌ମାନଙ୍କ କୁପରାମର୍ଶରେ ଅନ୍ୟାନ୍ୟ ଗ୍ରାମର ଭୂତମାନଙ୍କୁ ବଟ ମହାପୁରୁଷଙ୍କ ଦେହରୁ ବେଦଖଲ କରିବା ସତ୍ତ୍ୱେ ଅନ୍ୟାନ୍ୟ ଗ୍ରାମର ଭୂତମାନେ ଅନାଥ ହୋଇ ସ୍ଥାନ ଅଭାବରୁ ଉପଦ୍ରବ କରୁଅଛନ୍ତି।" ଉପାୟ ? ପ୍ରତ୍ୟେକ ଗ୍ରାମରେ ବରଗଛ ରୋପି ଭୂତମାନଙ୍କୁ ରଖିବାକୁ ହେବ।

ଠିକ୍ ଠିକ୍। ସମସ୍ତଙ୍କ ମନକୁ କଥାଟା ପାଇଲା । ବଟୁକଙ୍କ ପ୍ରଧାନ ସାକ୍ଷୀ ଓ ସହକର୍ମୀ ଧୂଳିଆ ନିଭୃତରେ ବଟୁକଙ୍କୁ ପଚାରିଲା, ଆଜ୍ଞା ନରିପୁରିଆ ଭୂତମାନଙ୍କର ନାଁରେ ୧୪୭, ୪୪୭, ୪୨୬, ୩୨୩, ୫୦୦, ୫୦୪, ୩୨୫, ୩୫୪, ୩୭୯, ଦଫା ମକଦ୍ଦମା ଯୋଡ଼ିଦେଲେ କିମିତି ହୁଅନ୍ତା ? ଆମ ଡାକ୍ତର ତ ଅଛନ୍ତି, ଡାକ୍ତର ମାଇନା କରି ସାର୍ଟିଫିକେଟ ଦେବାକୁ ? ଖାଲି ମାଡ଼ରଙ୍ଗଟା ଯା ଗୋଳମାଳ କରି ଦିଅନ୍ତି, ତା ନହେଲେ ତ ଭଲ ସାର୍ଟିଫିକେଟ ଦିଅନ୍ତି। ମୁଁ ତ ଅଛି ସାକ୍ଷ୍ୟ ଦେବାକୁ, ସାକ୍ଷୀ ଯୋଗାଡ଼ କରିବାକୁ।

ବଟୁକ ରାଗିଯାଇ କହିଲେ, ଭାକ୍ ଶଳା।

କଥା ହେଲା ବଟିଆ ବାବାଜି ପ୍ରଥମେ ହଳଦିଆ ଗ୍ରାମରେ ବରଗଛ ରୋପିବେ, ହଳଦିଆ ଶ୍ମଶାନରେ। ଏ ବରଗଛ ନା ହେବ 'ବଟ ମହାରାଜ'। ଯୋଗାଡ଼ଯନ୍ତ ଚାଲିଲା। ବଟୁକ ଗଲେ ଗାୟା କଳ୍ପବଟରୁ ଗୋଟିଏ ଡାଳ ଆଣିବାକୁ। ବଟକୃଷ୍ଣ ବୁଝିପାରିଲେ ବଟୁକଙ୍କ କାଇଦାଟା, ସେ ଲାଗିପଡ଼ିଲେ ତାକୁ ବ୍ୟର୍ଥ କରିବାକୁ। ତା କରିବାକୁ ବେଶୀ ଡେ଼ରି ଲାଗିଲା ନାହିଁ। ନରିପୁରର ବଟୀ ବେଓ୍ବା ଦି ଚାରି ରାତି ବଟିଆ ବାବାଜିଙ୍କ ପାଖକୁ

ଯିବା ଆସିବା କରିବା ପରେ ବଟିଆ ବାବାଜି ହଳଦିଆ ଛାଡ଼ି ଚାଲିଯାଇ ବଟୀ ବେଓ୍ୱା ଘରେ ଆଶ୍ରମ ଜମେଇଲେ ।

ବଟୁକ ଗୟାରୁ ଫେରି ଦେଖନ୍ତି ତ ଇୟେକାଣ୍ଡ । ରକ୍ତ ଚାଉଳ ଚୋବେଇ ରହିଲେ । ଗୟାରୁ ସେ ବରଗଛ ଚାରା ଆଣି ପାରି ନଥିଲେ । ଲୋକେ ପଚାରିବାରୁ କହିଲେ, ବାଟରେ ମୋତେ ସ୍ୱପ୍ନ ହେଲା ଯେ ବଟ ମହାପୁରୁଷଙ୍କ ଡାଳରେ ଗଛ ନ ହେଲେ ଭୂତମାନେ ଅନ୍ୟ କୌଣସି ବରଗଛରେ ରହିବେ ନାହିଁ, ଆଉ ପ୍ରତ୍ୟେକ ଗାଁର ତ ଅଧିକାର ଅଛି ବଟ ମହାପୁରୁଷଙ୍କ ଦେହରୁ ଡାଳ ନେବାକୁ, ତା' ଛଡ଼ା ସେ ଗଛ ମୋର, ଆଜକୁ ପାଞ୍ଚବର୍ଷ ହେବ ମୁଁ ସପନିଙ୍କଠାରୁ ଟ ୫୦୦ କରସମନରେ ସେ ଜମି କବଲା କରି ନେଇ ଖଜଣା ପ୍ରତିବର୍ଷ ଦେଇ ଆସି ପାଉତି ହାସଲ କରିଆସୁଅଛି । ମୁଁ କିନ୍ତୁ ସେ ଜମି ଓ ଗଛ ପଚିଶ ଖଣ୍ଡ ଗାଁକୁ ଦାନ କରୁଚି । ତୁମ୍ଭେମାନେ ସମସ୍ତେ ଯାଇ ଖଣ୍ଡେ ଖଣ୍ଡେ ଡାଳ ନେଇ ନିଜ ନିଜ ଗାଁରେ ପୋତି ଭୂତମାନଙ୍କ ଠାରୁ ଉଦ୍ଧାର ପାଅ ।

ଗାଁ ବାଲାମାନେ ବଟୁକ ପ୍ରଧାନଙ୍କ ମହାନ୍ ଦାନରେ ଚମତ୍କୃତ ହେଲେ, ତାଙ୍କ ପ୍ରସ୍ତାବଟା ସେମାନଙ୍କ ମନକୁ ପାଇଲା । କଥାଟା କିନ୍ତୁ ଗୁପ୍ତ ରହିଲା ।

ଦିନେ ରାତି ଅଧରେ ବଟ ମହାପୁରୁଷଙ୍କ ଆସ୍ଥାନରେ ଦୁମ୍ ଦୁମ୍ ପାହାର ଶୁଣି ବଟକୃଷ୍ଣ ଦୌଡ଼ି ଯାଇ ଦେଖିଲେ ଯେ ହଳଦିଆର ଓ ଅନ୍ୟାନ୍ୟ ଗ୍ରାମର ଲୋକେ ବଟ ମହାପୁରୁଷଙ୍କ ଡାଳ କାଟୁଛନ୍ତି । ସାଙ୍ଗେ ସାଙ୍ଗେ ଖବରଟା ନରିପୁର ଗାଁ ଯାକ ଖେଳିଗଲା । ମୁହୂର୍ତ୍ତକେ ନରିପୁରିଆମାନେ ଲାଠି, ଠେଣ୍ଟା, କଟୁରି, କୁରାଢ଼ି ଆଦି ଧରି ଜମା ହୋଇଗଲେ । ସେ ପଟରୁ ସେମିତି ଲୋକେ ଜମା ହୋଇଗଲେ । ମଡ଼ମଡ଼ କରି ବଟ ମହାପୁରୁଷଙ୍କ ଗୋଟାଏ ବାହୁ ଛିଡ଼ି ପଡ଼ିଲା  କୁରାଢ଼ି ଚୋଟରେ । ବଟେଶ୍ୱର ମହାଦେବଙ୍କ ମନ୍ଦିର ଭିତରେ ସେ ଶବ୍ଦ ପ୍ରତିଧ୍ୱନିତ ହୋଇ ଉଠିଲା, ସତେ କି ମହାକାଳ ଗର୍ଜି ଉଠିଲା ।

ତା'ପରେ ଲାଗିଲା ଦୁଇଦଳ ଭିତରେ ପିଟାପିଟି । ବଟ ମହାପୁରୁଷ ବାରମ୍ବାର ଥରିବାକୁ ଲାଗିଲେ । କାଳଭୈରବୀ ଡାକ ଦେଲାପରି ବଟେଶ୍ୱରଙ୍କ ମନ୍ଦିର ଭିତରୁ ଖାଲି 'ହୋ ହୋ' ଶବ୍ଦ ବାହାରୁଥାଏ । ଏଇ ସମୟରେ ଅହମ୍ମଦପୁରର ପଠାଣ ଆଠଜଣ ଖଣ୍ଡା ବୁଲାଇ ବୁଲାଇ ଦୌଡ଼ି ଆସିଲେ । ବଟୁକ ସେମାନଙ୍କୁ ପଇସା ଦେଇ ଜାଗତିଆର କରି ରଖିଥିଲେ । ଅହମ୍ମଦପୁରିଆଙ୍କ ରାଗ ଥିଲା ନରିପୁରିଆମାନଙ୍କ ଉପରେ, କାରଣ ବଟକୃଷ୍ଣଙ୍କ ଶିକ୍ଷାରେ ସେମାନେ ପଠାଣମାନଙ୍କୁ ବଟ ମହାପୁରୁଷଙ୍କ ପାଖରୁ ଭିନ୍ନ କରିଦେଇଥିଲେ । ପଠାଣମାନେ ଖଣ୍ଡା ଧରି ଦୌଡ଼ିଆସୁଥିବାର ଦେଖି ଯେ ଯୁଆଡ଼େ ପଳେଇଲେ । ନିଜ ନିଜ ଭିତରେ ବୀରତ୍ୱ ଦେଖାଇବା କୁଆଡ଼େ ପଳେଇଲା ।

ଗଲାବେଳେ ଧୂଳିଆ ବଟୁକ ଶିକ୍ଷାମତେ ବଟ ମହାପୁରୁଷଙ୍କ ପାଦତଳେ ଅତି କଟୁ ବିଷ ପୋତି ଦେଇଗଲା ।

ପରଦିନ ଦେଖାଗଲା ଆଠଜଣଙ୍କ ମୃତଦେହ ବଟ ମହାପୁରୁଷଙ୍କ ତଳେ ପଡ଼ିଛି ଆଉ ପନ୍ଦର ଜଣ ସାଂଘାତିକ ଭାବେ ଜଖମ ହୋଇ ପଡ଼ିଛନ୍ତି । ଯେଉଁମାନେ ଅପେକ୍ଷାକୃତ ଅଳ୍ପ ଜଖମ ହୋଇଥିଲେ ସେମାନେ କୌଣସିମତେ ପଳାଇ ପାରିଛନ୍ତି ।

ପୁଲିସ୍ ଆସିଲା । ବଟ ମହାପୁରୁଷଙ୍କ ଆସ୍ଥାନ ଉପରେ ୧୪୪ ଧାରା ଜାରିହେଲା । ସବୁ ଗାଁରୁ ପ୍ରାୟ ଶହେ ସରିକି ଲୋକ ହାତକଡ଼ା ପିନ୍ଧି ଧରା ହୋଇଗଲେ । ବଟୁକ ଓ ବଟକୃଷ୍ଣ ମଧ୍ୟ ଧରା ହେଲେ । ଧୂଳିଆ ଭୂତମାନଙ୍କ ବିପକ୍ଷରେ ଯେଉଁ ଦଫାମାନ ଯୋଡ଼ି ମକଦ୍ଦମା କରିବାକୁ ବଟୁକଙ୍କୁ ପରାମର୍ଶ ଦେଇଥିଲା, ସେ ଦଫାମାନଙ୍କରୁ ଅନେକ ଓ ତା ସହିତ ହତ୍ୟାପାଇଁ ୩୦୨ ଦଫା ଯୋଡ଼ା ହୋଇ ମକଦ୍ଦମା ଚାଲିଲା । ମଢ଼ ପଡ଼ିଥିବାର ଦେଖି ଶାଗୁଣା ବୁଲିଆ କୁକୁରମାନେ ଯେମିତି ଗଦା ହୋଇ ପଡ଼ନ୍ତି, ସେମିତି ଟାଉଟର ଆଦିମାନେ ଗଦା ହୋଇପଡ଼ି ଟଙ୍କା ଶୋଷିବାକୁ ଲାଗିଲେ । ବଟୁକ ଓ ବଟକୃଷ୍ଣଙ୍କ ଧନ ନିଆଁପୁଆଁରେ ଯିବାକୁ ଲାଗିଲା ।

ଏ ଘଟଣା ଅଳ୍ପଦିନ ପରେ ବଟ ମହାପୁରୁଷ ଝାଉଁଳି ପଡ଼ିଲେ । ବିରାଟ-ମହୀରୁହ ସତେ ଯେପରି ଧ୍ୟାନମଗ୍ନ । ଅତୀତର କଥା ମନେ ପକାଇ ସେ ବୋଧହୁଏ ଧ୍ୟାନମଗ୍ନ ଭବିଷ୍ୟତ୍ ଚିନ୍ତାରେ । ମହାକାଳ ମଧ୍ୟ ଲୋକମାନଙ୍କର କଲ୍ୟାଣ ପାଇଁ ବିଷପାନ କରିଥିଲେ, ତେଣୁ ବଟ ମହାପୁରୁଷ ମହାକାଳ ବଟେଶ୍ୱରଙ୍କୁ ମନେ ମନେ ପ୍ରଣାମ କରି ମହାପ୍ରୟାଣ କଲେ । ନାରାୟଣ ପ୍ରାପ୍ତି ତ ନୁହେଁ, ହତ୍ୟା ! କିନ୍ତୁ ଗଛର କି ପ୍ରାଣ ଅଛି ଯେ ତାଙ୍କୁ ମାରିଲେ ମଣିଷ ତିଆରି ପିଙ୍ଗଳକୋର୍ଡର ୩୦୨ ଦଫା ଲାଗିବ, ଆହା ବୋଲିବାକୁ ମଧ୍ୟ କେହି ନାହିଁ ।

ସରକାର ସେ ଗଛକୁ ନିଲାମ କରାଇଦେଲେ । ନରିପୁର, ହଳଦିଆ ଆଦି ଗ୍ରାମର ଲୋକମାନଙ୍କ କ୍ଷମତା ନାହିଁ ସେ ବିରାଟ ଗଛକୁ ନିଲାମ ଧରିବାକୁ । ସବୁ ପଇସା ତ ନିଆଁ ପୁଆଁରେ ଯାଇଚି । ଅହମ୍ମଦପୁରର ପଠାଣମାନେ କିନ୍ତୁ ନିଲାମ ଧରିଲେ, ବାକିତକ ଗାଁବାଲାମାନେ ଘୁଷ୍‌ଘାଷ୍ ଦେଇ ଚୋରେଇ ବୋହି ନେଇ ଜାଳିଲେ । ଦୁଇଦିନ ଭିତରେ ସବୁ ସଫା । ବଟ ମହାପୁରୁଷଙ୍କ ଆସ୍ଥାନ ଶୁନ୍‌ଶାନ୍ । ଗୋଟାଏ ସଭ୍ୟତା ଗଲା, ଆଉ ଗୋଟିଏ ସଭ୍ୟତା ଆସିଗଲା । କିଛି ଡରିବାର ନାହିଁ । ମହାକାଳ ସଦାଜାଗ୍ରତ ।

ଆଜି ପର୍ଯ୍ୟନ୍ତ ବି ରାତ୍ରିରେ ରାମଚନ୍ଦ୍ରଙ୍କୁ ଲୋକେ ସେଠି ବୁଲୁଥିବାର ଦେଖିଚନ୍ତି । ତା'ଙ୍କ କଠଉ ଠକ୍ ଠକ୍ ଓ ଦୀର୍ଘ ନିଶ୍ୱାସ ପକାଇବାର ଶବ୍ଦ ଅନେକ ଶୁଣୁଚନ୍ତି ।

# ସ୍ୱର୍ଗାଦପି ଗରୀୟସୀ

ଖରାବେଳେ ନରିଆ ମା' ଘରେ ବସେ ନନ୍ଦପଡ଼ାର ବୁଢ଼ୀମାନଙ୍କ ବୈଠକ । ବୋହୂମାନେ ଯେ ଯାହା ଘରୁ ନେଇ ଯାଆନ୍ତି ପଖାଳ, କାଞ୍ଜି, ବେସର, ମହୁର, ସନ୍ତୁଳା, ରାଇ ଇତ୍ୟାଦି । ଯିଏ ଯେତେ ପ୍ରକାର ଭଲ ଜିନିଷ ତିଆରି କରି ଥାଆନ୍ତି ନେଇ ଯାଆନ୍ତି ନରିଆ ମା' ଘରକୁ । ଅତି ଭୟରେ ଶାଶୂମାନଙ୍କ ପାଇଁ ରାନ୍ଧି ଥାଆନ୍ତି ବୋହୂମାନେ, କରଣ ପ୍ରତିଦିନ ସେଇଠି ବୋହୂମାନଙ୍କର ରାନ୍ଧୁଣିପଣିଆ ଟିକିନିଖି ବିଚାର ହୁଏ ।

ବାସୁଆ ମା' ପାକୁଆ ପାଟିରେ ମେଞ୍ଚାଏ ଶାଗ ଛାଡ଼ି ଦେଇ ଦୁଇ ମାଢ଼ି ଭିତରେ ଥରେ ଦାନ୍ତ ଦେଇ କହିଲା, ଉଁ ହୁଁ ହୁଁ, ମାଆଲୋ, କେତେ ନୁଣ ଦେଇଛି ଶାଗରେ ତୋ ବୋହୂଟା ଲୋ, ଆମ୍ବକିଷି । କୁହନ୍ତି, ଶାଗ ଅଲଣା ମାଛରେ ଲୁଣ, ତେବେ ଜାଣିବ ରାନ୍ଧୁଣୀ ଗୁଣ । ଟିକିଏ କଅଣ ଖାତିରି ଅଛି ଏ ବୋହୂଙ୍କର । ଆଜି କାଲି ପାଠପଢ଼ା ବୋହୂ ସଭିଏଁ ଆସିଛନ୍ତି । ମାଆଲୋ ଢପ ।

ବୋହୂ ମେଞ୍ଚାକ ଓଢ଼ଣା ଟାଣି ଜାକିଜୁକି ହୋଇ ମନ୍ଦାଏ ତେଲଗୁଣି ପୋକ ଭଳି ଗୋଟିଏ କଣରେ ଛିଡ଼ା ହୋଇ ଥାଆନ୍ତି । ଶାଶୂମାନଙ୍କ ଆଦେଶ ବା ଟିପ୍ପଣୀକୁ ଟାକି ରହି । ବାସୁଆ ମାର ଟିପ୍ପଣୀ ଶୁଣି ସେମାନଙ୍କ ଭିତରେ ପରସ୍ପର ପ୍ରତି ଚାହାଁଚାହିଁର ଗୋଟିଏ ତରଙ୍ଗ ଖେଳି ଗଲା ।

ଆମ୍ବକଷିର ନାଁଟି ଅମ୍ବକଷି ନୁହେଁ । ବାସୁ ବାବୁଙ୍କ ମା' ଓ ଗୋପୀ ବାବୁଙ୍କ ମା' ଦୁହେଁ ବସିଛନ୍ତି ଅମ୍ବକଷି, ଦୁହେଁ ଏକା ସାଙ୍ଗରେ ନନ୍ଦପଡ଼ାକୁ ବୋହୂ ହୋଇ ଆସିଥିଲେ । ସେତେବେଳେ ଦିନେ ଖରାଦିନରେ ଉଦୁଉଦୁଆ ଖରାବେଳେ ମଇଦାନ ଯିବା ବାହାନାରେ ନନ୍ଦମାନଙ୍କର ଇଜିମାଲି ପ୍ରକାଣ୍ଡ ଆମ୍ବତୋଟାରେ ଦୁହେଁ ବୁଲୁବୁଲୁ କୋଇଲିର ଅବିଶ୍ରାନ୍ତ କୁହୁ କୁହୁ ଶୁଣୁଶୁଣୁ ବିଦେଶରେ ଥିବା ସ୍ୱାମୀମାନଙ୍କ ବିରହରେ ବିଧୁରିତା ହୋଇ ଉଠିଥିଲେ ଓ ନୀରବରେ ଅଶ୍ରୁ ବିସର୍ଜନ କରିବା ପରେ ପରସ୍ପରର ଲୁହ ପୋଛି ଦେଇ ପରସ୍ପରକୁ ଆମ୍ବକଷି ଖୁଆଇ ଦେଇଥିଲେ । ସେଇଦିନୁ ସେମାନେ ପରସ୍ପରକୁ ଆମ୍ବକଷି ବୋଲି ଡାକନ୍ତି ।

ଗୋପୀ ବାବୁଙ୍କ ସ୍ତ୍ରୀ ଫୁସ୍ ଫୁସ୍ କରି ତାଙ୍କର ସଇଙ୍କୁ କହିଲେ, କି ବୁଦ୍ଧି କଲି ଗୋ ସଇ ମୁଁ ଆଜି ! କାହିଁକି ପୋଡ଼ାମୁହିଁ ମୁଁ ତାଙ୍କ ଚିଠି ପଢ଼ିବାକୁ ଗଲି। ଶାଶୂମାନେ କାଳେ ଏ କଥା ଶୁଣି ପକାଇବେ ଏଇ ଭୟରେ ସଇ ତାଙ୍କ ସଇଙ୍କ ମୁହଁରେ ହାତ ଥାପି ଦେଲେ।

ଗୋପୀ ବାବୁଙ୍କ ଚିଠି ଆଜି ଆସିଥିଲା। ତାଙ୍କର ସ୍ତ୍ରୀ ସେଇ ଚିଠି ଦୋହରାଇ ତେହେରାଇ ପଢୁ ପଢୁ ବିଭୋରା ହୋଇ କେତେବେଳେ ଦୁଇବାର ଲୁଣ ଶାଗରେ ପକାଇ ଦେଇଛନ୍ତି।

କିନ୍ତୁ ସେ ବିଷୟରେ ବିଶେଷ କିଛି ଆଜି ଟିପ୍‌ପଣୀ ହେଲାନାହିଁ। ରଜଛୁଟି ଆସୁଚି। ପୁଅମାନେ ସବୁ ଆସିବେ। ମା' ମାନଙ୍କର ମନ କୁଣ୍ଢେମୋଟ। ସେ ଖୁସିରେ ଆମ୍ବକଷି ବୋହୂର ଲୁଣିଆ ଶାଗ ଉପରେ ସାମାନ୍ୟ ଟିକିଏ ଟିପ୍‌ପଣୀ ଦେଲା ସିନା, ସମସ୍ତେ ସେଥିରୁ ମେଞ୍ଚି ମେଞ୍ଚିଏ ପାକୁଆ ପାଟିରେ ପକେଇ ଟାକରା ମାରିଦେଲେ।

ଖାଇବା ସରିଲା। ବୋହୂମାନେ ଖୁସିମନରେ କିଲିବିଲି ହୋଇ ଦୌଡ଼ିଲେ ଯେ ଯାହା ଘରକୁ ଦ୍ୱିତୀୟ ପରୀକ୍ଷା ପାଇଁ। ଶାଶୂମାନେ ଖାଇ ସାରିବା ପରେ ଯାହା ଘରକୁ ଖୁସୀ ହେବ ତା ଘରକୁ ଯିବେ। ସେ ଘର ବୋହୂ ଗୋଟାଏ ଲମ୍ବା ଚଉଡ଼ା ହେଁସ ପାରିଦେବ। ଶାଶୂ ବୁଢ଼ୀମାନେ ତା' ଉପରେ ଲମ୍ବେ ଲମ୍ବେ ପଡ଼ିଯିବେ। ସେ ଘର ବୋହୂ ପାନକୁଟାରେ ପାନ ଛେଞ୍ଚି ଟେଳାଏ ଟେଳାଏ ସମସ୍ତଙ୍କ ମୁହଁରେ ଗଳେଇ ଦବ । ଶାଶୂମାନେ ପାକୁଆ ପାଟି ବୁଲାଇବେ। ତା ପରେ ସେ ଘର ବୋହୁ ଜଣ ଜଣ କରି ଘଷି ବସିବେ। ସେଇଠି ଚାଲିବ ପ୍ରଶଂସା ବା ନିନ୍ଦା। ଗୋଟିଏ ବିଲୁଆ ବୋବେଇଲେ ଯେମିତି ସବୁ ବିଲୁଆ ବୋବାନ୍ତି, ଜଣେ ନିନ୍ଦା କଲେ ସେମିତି ସମସ୍ତେ ନିନ୍ଦା କରି ବସିବେ। ସେ ନିନ୍ଦା ବି ପ୍ରଶଂସାରେ ପରିଣତ ହେବାକୁ ବେଶି ସମୟ ଲାଗେ ନାହିଁ। ଯାହାଘରେ ଯେଉଁ ଦିନ ପାଳି ପଡ଼େ ସେ ଦିନ ସେ ବୋହୂର ଛାତି ଭୟରେ ଧଡ଼ ପଡ଼ ହଉଥାଏ। ଶାଶୂମାନେ ଘଷା ଖାଉ ଖାଉ ଗପ କରୁ କରୁ ଯେତେବେଳେ ଶୋଇ ପଡ଼ିବେ ତା ପରେ ବସି ବୋହୂମାନଙ୍କ ପଙ୍ଗତ, ଫୁସ୍ ଫୁସ୍ କରି ନିଜ ସ୍ୱାମୀମାନଙ୍କ ବିଷୟରେ କେତେ କଥା, ସାମାନ୍ୟ ସାମାନ୍ୟ କଥାରେ କେତେ ହସର ଲହରୀ ପରେ ଲହରୀ, ଆଉ ଚାରିଆଡ଼କୁ ଚାହିଁ ଡରି ଡରି ମଝିରେ ମଝିରେ ଶାଶୂମାନଙ୍କ ଉପରେ ଟିପ୍ପଣୀ।

ଆଜି ଶାଶୂମାନେ ଖାଇ ସାରି ବାହାରିଲେ ଆମ୍ବକଷି ଘରକୁ। ଗୋପୀ ବାବୁଙ୍କ ସ୍ତ୍ରୀ ପ୍ରମାଦ ଗଣିଲେ। କିନ୍ତୁ ଉପାୟ ନାହିଁ। ପରୀକ୍ଷା କରିବାକୁ ହିଁ ହବ। ସେ ବି.ଏ. ପାସ୍ କରିଚନ୍ତି ବା ବଡ଼ ଲୋକର ଝିଅ ବା ଶ୍ରୀ ଗୋପୀନାଥ ନନ୍ଦ, ଏମ୍.ଏ. ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କ ସ୍ତ୍ରୀ ବୋଲି ନିସ୍ତାର ପାଇବେ ନାହିଁ।

ଘଷା ଖାଉ ଖାଉ ବାସୁଆ ମା' କହିଲେ, କିଲୋ ବୋହୂ, ତୁମ କଲିଜିରେ ଘଷିବା ଶିଖାନ୍ତି କି ? ଏଡ଼େ ସୁନ୍ଦର ଘଷା କେମିତି ଶିଖିଲୁ ବା !

ହରିଆ ବୋଉ କହିଲେ; ଅହିସୁଲକ୍ଷଣି ହୋଇ ଥା, ମା, ବାଳରେ ସିନ୍ଦୂର ନାଇଥା ମା' । ଆମ୍ଭକଷିର କପାଳ ଭଲ । ଗୋଟିଏ ପୁଅ, ହେଲେ, ଶହେ ପୁଅ ସଂଗେ ସମାନ, ହାକିମ ଚାକିରି । ସେଥିରେ ବୋହୂ କରିଚି ଯେ ଲକ୍ଷ୍ମୀ ତ !

ଦୀର୍ଘଶ୍ୱାସ ପକାଇ ଆଖିର ଲୁହ ପୋଛି ଗୋପୀ ବାବୁଙ୍କ ମା' କହିଲେ, ଆଶୀରିବାଦ କଅର ତୁଳସୀ, ପୁଆ ନାତି ନେଇ ସେମାନେ ସୁଖରେ ଘର କରନ୍ତୁ, ସମସ୍ତଙ୍କ ମନ କଥା ବୁଝି କାମ କରନ୍ତୁ । ମୋର ଆଉ କେତେଦିନ ବା, ତାଳଗଛର ଛାଇ, ଏଇଛୁଣି ଅଛି ଏଇଛୁଣି ନାଇଁ ।

ଆଉ ଥରେ ଦୀର୍ଘ ନିଶ୍ୱାସ ପକାଇ ଲୁହ ପୋଛି ସେ କହି ବସିଲେ ତାଙ୍କର ଦୁଃଖର କାହାଣୀ । ଯେତେବେଳେ କଥା ପଡ଼େ ସେ ଫିଟାନ୍ତି ତାଙ୍କ ଜୀବନର ସେଇ ଅଧ୍ୟାୟଟି । ସେ ଅଧ୍ୟାୟଟି ତାଙ୍କର ଯେତିକି ଦୁଃଖର, ସେତିକି ସୁଖର ମଧ୍ୟ ।

....ସେ ଦିନ କଥାପରି ଲାଗୁଚି ଲୋ ଆମ୍ଭକଷି ! ଗୋପୀ କଅଣ କମ୍ କଷ୍ଟରେ ଜନ୍ମ ହୋଇଚି ! ! ସେତେବେଳେ ଥାଏ ପୁରୀରେ । ତା ବୋପା ସେଠି ଚାକିରି କରୁଥାଆନ୍ତି । ବାହା ପରେ ପରେ ପୁରୀରେ ରହିଲି ସାତ ବରଷ । ଶାଶୂ ବି ରହିଲେ ସେଠି । ତାଙ୍କର ତ ଗୋଟାଏ ବୋଲି ପୁଅ । ପୁଅକୁ ଛାଡ଼ି ସେ ବି ଗାଁରେ ରହିବେ କେମିତି ।

ମୋ ଶାଶୂ ଥିଲେ ଯେ...କଅଣ କହିବି ସେ କଥା । ପାନରୁ ଚୂନ ଖସିଚି ତ ସେ ଦିନ ତଳି ଉଝୁଳେଇଦେବେ । ବାହାଘର ବରଷେ ଚାଲିଗଲା, ଗାଧୋଇବା ବନ୍ଦ ହେଲା ନାହିଁ । ଶାଶୂଙ୍କର ତ ଦିନରାତି ଚାଲିଲା ଗାଳି । କେତେ ମାନସିକ କଲି । କେତେ ଡେଉଁରିଆ ପିନ୍ଧିଲି, କେତେ ଜଡ଼ିବୁଟିକା ଖାଇଲି, କାହିଁରେ କିଛି ହେଲା ନାହିଁ । ପ୍ରତି ମାସରେ ଗାଧୋଇଲି ।

ଆମ ପଡ଼ିଶା ଘରେ ଜଣେ ବାବୁ ଥାଆନ୍ତି ଯେ ତାଙ୍କର ବୋହୂ ଆଜି ବେଇଚି ତ ତାର ପର ମାସରେ ମାସିକିଆ ହୁଏ, ଆଉ ତା ପର ମାସରେ ମାସିକିଆ ବନ୍ଦ । ସାତ ବର୍ଷ ରହିଲି, ପାଞ୍ଚୋଟି ଛୁଆ ତାର ହେଲେ । ମୋ ଶାଶୂ ତ ତାଙ୍କୁ ଦେଖି ମୋ ଉପରେ ଆହୁରି ରାଗ ହେଉଥାଆନ୍ତି । ରକତ ଚାଉଳ ଚୋବାଉ ଥାଆନ୍ତି ସେ । ଦିନ ରାତି ଅଲକ୍ଷଣୀ, ଆଣ୍ଟୁକୁଡ଼ି, ପିତାସୁଣୀ, ହାତଗୋଡ଼ଖାଈ ଗାଳି ।

ସିଏ ଖାଲି କହୁଥାଆନ୍ତି, ବ୍ୟସ୍ତ କାହିଁକି, ହେଲେ ହେବ, ନ ହେଲେ ନାହିଁ । ଆମ ଦେଶରେ ତ ବର୍ଷକୁ କୋଟିଏ ଜନ୍ମ ହେଉଚନ୍ତି । ଆମେ ଏବେ ଆଉ ତ ଲୋକସଂଖ୍ୟା ନ ବଢ଼େଇଲେ ତ ଭଲ ହେଲା । ଖାଲି ତ ଜନ୍ମ କଲେ ହବ ନାହିଁ । ଖୋଇ ପେଇ ମଣିଷ କଲେ ସିନା ହବ ।

ହେଲେ, ମୋ ମନ ମାନୁ ନଥାଏ। ଆଣ୍ଟୁକୁଡ଼ି ହେଇ ମରିବି। ମରି ଡାକୁଣୀ ହୋଇ ଶୋଷରେ ହା ହା ହୋଇ ବୁଲିବି। କେଉଁଠି ମୁନ୍ଦିଏ ପାଣି ବି ମିଳିବ ନାହିଁ। ପଡ଼ିଶା ଘର ବୋହୂକୁ ଦେଖି ଖାଲି ମନେ ହେଉଥାଏ, କେମିତି ତା ମାସିକିଆ ବନ୍ଦ ହେଉଥାଏ ! ଯେତେ ପ୍ରକାର ସେ କହିଲା ସେତେ ପ୍ରକାର କଲି।' ଏଇଛୁଣିକା ସିନା କହିବାକୁ ଲାଜ ମାଡୁଚି, ସେତେବେଳେ ଆତୁରରେ ପଡ଼ି ଟିକିଏ ବି ଲାଜ ମାଡୁ ନଥାଏ। ଥରେ...ଆଲୋ ବୋହୂ, ଯା ସବୁ ଖାଇବ ଯା। ଉଛୁର ହେଇ ଗଲାଣି ଯା।

ବୋହୂ ଅନେକ ଥର ଶାଶୂଙ୍କର ସେ ଇତିହାସ ଶୁଣି ସାରିଲେଣି। ସେ ଇତିହାସ କହିବାରେ ପ୍ରଚ୍ଛନ୍ନ ଇଙ୍ଗିତ ମଧ୍ୟ ସେ ବୁଝି ସାରିଲେଣି। ଆଉ ଶୁଣିବାକୁ ତାଙ୍କ ମନ ନାହିଁ। ଶାଶୂ କହିବା ମାତ୍ରକେ ସେ ଉଠିଗଲେ ସଇଙ୍କ ଘରକୁ। ଆଜି ସେଇଠି ତାଙ୍କର ପଙ୍ଗତ ବସିବ।

ବୋହୂ ଗଲା ପରେ ଆମ୍ବକଷି ଫିସ୍ ଫିସ୍ କରି କହିଲେ, ଛୁଆ ଜନ୍ମହେବା ପାଇଁ ପଡ଼ିଶା ଘର ବୋହୂ ଥରେ ଗୋଟିଏ ବାଟ ବତାଇ ଥିଲା। 'ବିପରୀତ'...ବୋଲି ଯାହା କହନ୍ତି। ଆମେ ସେଇଆ କଲୁ।

କିନ୍ତୁ କିଛି ଫଳ ହେଲାନାହିଁ, ତା ଆରମାସକୁ ଫେଏଣେ ଗାଧୋଇଲି। ସାତ ବରଷ ଚାଲିଗଲା। ଦିନେ ଶୁଣିଲି ଶାଶୂ ତାଙ୍କୁ ବୁଝାଉଛନ୍ତି ଆଉ ଗୋଟିଏ ବାହା ହେବାକୁ। ତାଙ୍କର ତ ବୋଉଙ୍କୁ ଭାରି ଡର। ବୋଉର କଥା ତଳେ  ପଡ଼ିବ ନାହିଁ ତାଙ୍କର। ସେ କହିଲେ, ବୋଉ ତୁ ଯଦି ଭଲ ବୁଝୁଚୁ ମୁଁ ଆଉ କଅଣ କହିବି। କିନ୍ତୁ ତାର କି ଦୋଷ ବୋଉ ? ସେ କଅଣ କରିଚି ? ସେ କଥା ଟିକିଏ ଭାବୁଚୁ ? ଶାଶୂ କହିଲେ, ସେ ମରୁ କି ଯାଉ କୁଆଡ଼େ ଆଣ୍ଟୁକୁଡ଼ି, ମୁଁ କି ଜାଣେ, ତା ପାଇଁ ତ ତୋ ବାପ ନିର୍ବଂଶ ହେବେ ନାହିଁ ?

ପୁଅକୁ କହି ଶାଶୂ ଯେମିତି ଘରୁ ବାହାରି ଆସିଲେ, ମୁଁ ତାଙ୍କୁ ଗୋଡ଼ଧରି ଲମ୍ୱେ ଲମ୍ୱେ ପଡ଼ିଗଲି। ଶାଶୂ ଗୋଇଠା ଗୋଟାଏ ମାରିଦେଇ ମୋତେ ଗଡ଼େଇ ପକେଇ କହିଲେ, ଦୂର୍....ଦୂର୍ ଆଣ୍ଟୁକୁଡ଼ି, ତୋ ମୁହଁ ସକାଳୁ ଚାହିଁ ମୋ ପୁଅ ଆଇଷ କମି ଯାଉଚି।

ମୁଁ ତାଙ୍କ ଗୋଡ଼ ନ ଛାଡ଼ି କହିଲି, ମା ମୋତେ ଆଉ ଦୁଇ ମାସ ସମୟ ଦିଅନ୍ତୁ, ତାପରେ ଯଦି ତୁମ ବଂଶକୁ ପୁଅ ଗୋଟାଏ ନ ଦେବି, ମୋତେ ଘରୁ ତଡ଼ିଦେବ। ମୁଁ କିଛି କହିବି ନାହିଁ।

ସେଦିନ ରାତିରେ କାନ୍ଦି ତାଙ୍କ ପାଦତଳେ ବି ଲୋଟି ପଡ଼ିଲି ଆମ୍ବକଷି। କେତେ  ପିଠିରେ ଆଉଁଶି ମୋତେ ସେ ବୁଝାଇଲେ...

ସେଦିନର କଥା ଭାବି ଆଖିରୁ ତାଙ୍କର ଲୁହ ଝରି ପଡ଼ିଲା। କୋହରେ ସେ

କିଛି କହି ପାରିଲେ ନାହିଁ। ସମସ୍ତେ ବହୁବାର କଥିତ ସେ କାହାଣୀ ଶୁଣି ପୁଣି ସୁଁ ସୁଁ ହେଲେ। ଗୋପୀନାଥ ବାବୁଙ୍କ ମା' ଲୁହ ପୋଛି କହି ଚାଲିଲେ...

ଏମିତି ମନ ବୁଝେଇ କଥା କହିବା ଲୋକ ତାଙ୍କ ପରି ଆଉ ଗୋଟାଏ ବି ଦେଖି ନାଇଁ ପରା!! ପିଠି ଆଉଁଶି ହସି ହସି ସେ କହିଲେ, ବୋଉକୁ କହି ତୁମକୁ ଦୁଇମାସ ସମୟ ମୁଁ ଦିଆଇବି।

ତା ପର ଦିନ ସେ ବୋଉଙ୍କୁ ବୁଝେଇ କହିଲେ। ବୋଉ କହିଲେ, ହଉ ଦୁଇମାସ ପରେ ତୋ ବାହା। ନିମେଇ ବାବୁଙ୍କ ସହିତ ସବୁ କଥା ଠିକ୍ କରି ରଖିଚି। ପଡ଼ିଶା ଘର ବୋହୂ ତାଙ୍କର ଝିଅ, ତାରି ସାନ ଭଉଣୀ ସହିତ ତୋ ବାହାଘର ହେବ।

ସେଇଦିନ ଆମ୍ଭକଷି, ଏକ ନିଷ୍ଠାରେ ରହିଲି। ନିଇତି ଉପାସ କରେ, ଗୋପୀନାଥଙ୍କୁ ପୂଜା କରେ। ମାସେ ଚାଲିଗଲା। ଗାଧୋଇଲି। ତାପରେ ଖାଇବା ଛାଡ଼ି ଦେଇ କାନ୍ଦି ଗଡ଼ିଲି ଗୋପୀନାଥଙ୍କ ଗୋଡ଼ ତଳେ। ସାତଦିନ ସାତରାତି ଗଡ଼ିଲି।

ତାପରେ...କହିଲାବେଳକୁ ଗୁମ ଟାଙ୍କୁରି ଉଠୁଚି । ଦିନେ ରାତିରେ ଶୋଇଚି। ରାତି ଭୋଅର ବେଳକୁ ସପନ ଦେଖିଲି। ଗୋପୀନାଥ ମୋ ଦୁଆର ମୁହଁ ପାଖରେ ଛିଡ଼ା ହୋଇ କହୁଛନ୍ତି, ଉଠ, ଖାଅ। ତୁମେ ଯଦି ସ୍ୱାମୀଙ୍କ ବିଷ୍ଠାର ପୋକ ଖାଇବ ତେବେ ତୁମର ଗୋଟିଏ ପୁଅ ହେବ।

ଚାଉଁକିନା ନିଦ ଭାଙ୍ଗିଗଲା। ଉଠି ଦେଖି ନିଘୋଡ଼ ନିଦରେ ସେ ଶୋଇଛନ୍ତି, ତାଙ୍କ ଗୋଡ଼ ତଳେ କେତେବେଳେ ମୁଁ ଶୋଇପଡ଼ିଥିଲି ମୋତେ ଜଣା ନାହିଁ।

ଉଠି ତାଙ୍କୁ ଜୁହାର ହୋଇ ଗୋପୀନାଥଙ୍କ ଘରକୁ ଯାଇ ତାଙ୍କୁ ଜୁହାର ହୋଇ କହିଲି, ଯାହା କଲି ତା' କରିବି, କରିବି।

ତାଙ୍କୁ ଯେ ସେତେବେଳେ ନାଳଝାଡ଼ ହେଉଥାଏ ଲୋ ଅମ୍ଭକଷି। କଅଣ କହିବି !! ବାଡ଼ିକୁ ଗଲି, ଦୁଇଟା ଇଟା ପକାଇ ଗୋଟିଏ ଜାଗା କଲି। ହଁ, ଫେର୍ ଜାଗା କରୁ କରୁ ଗୋଟାଏ କଙ୍କଡ଼ା ବିଛା କାମୁଡ଼ି ଦେଲା। ଏଡ଼େ ବିଷ ତାର, ଲଉଟି ତ ପଡ଼ିଲି। ହେଲେ, ପାଟି କଲେ ତ ଶାଶୂ ଉଠିବେ, ସବୁ ଭଣ୍ଡୁର ହୋଇଯିବ। ଦିହ କଅଣ ହୋଇ ଯାଉଥାଏ। ଟିକିଏ ଉଁ କି ଚୁଁ ବି କଲିନାହିଁ। ଜାଗା କରିସାରି ରାତି ନ ପାହୁଣୁ ତାଙ୍କୁ ଯାଇ ବିଛଣାରୁ ଉଠେଇଲି। ସେ ତ ଉଠନ୍ତି ଡେରିରେ। ମୋତେ ଦେଖି ସେ ଚୋର ପଶିଚି ବୋଲି ପାଟି କରିବାକୁ ଯାଉଥିଲେ। ଦି ହାତରେ ତାଙ୍କ ମୁହଁ ଚାପିଧରି ଡାକିଲି ବାଡିକୁ।

ବାଡିରେ ତାଙ୍କ ଗୋଡ଼ଧରି କହିଲି, ଏଇଠି ବସି ହଗ।

ସେ ତ ଆବାକାବା ହୋଇ ଚାହିଁ ଥାଆନ୍ତି, ମୁଁ ଖାଲି ଠାରିକରି କହୁଥାଏ, ପାଟି

କରନା, ଯାହା କହୁଚି କର। ସେ ସେଇଠି ବସି ଝାଡ଼ା ଫେରିଲେ। ପାଣି ଦେଲି। ସେ ଗଲେ ବିଛଣାକୁ। ସେ ଝାଡ଼ାରେ ମୁଁ ଗୋଟିଏ କାଠି ପୋତିଦେଲି।

ଆଉ ଅଛି ମାତ୍ର ପନ୍ଦର ଦିନ ଦୁଇମାସ ପୂରିବାକୁ। କାଠି ପୋତିବାର ତିନିଦିନ ପରେ ସେଥିରେ ପୋକ ହେଲେ, ସେ ପୋକରୁ ଗୋଟିଏ ଆଣି ଲୁଚେଇ ଖାଇଦେଲି।

ଆଉ ଗୋଟିଏ କାଳ ପଡ଼ିଲା। ତାଙ୍କର ତ ନାଳଝାଡ଼ା। କରେ କଅଣ। ଇୟାଡ଼େ ରହିଲା ଆଉ କେତୁଟା ଦିନ। ଯେତେ ତୁଟୁକାତୁଟୁକି ଥିଲା ବାଟିକରି ତାଙ୍କୁ ଦିନରାତି ଖୋଇଲି। ତିନିଦିନ ପରେ ତାଙ୍କର ଝାଡ଼ା ଭଲ ହେଲା।

ଯେଉଁଦିନ ଭଲ ହେଲା ସେଦିନ ରାତିରେ ଭଲ ଶାଢ଼ି ପିନ୍ଧି, ଅତର ମାଖି, ମୁଣ୍ଡ ଭଲକରି କୁଣ୍ଡେଇ ଗହଣା ପିନ୍ଧି ଗଲି ଶୋଇବାକୁ। ମନେ ମନେ ଖାଲି ଗୋପୀନାଥଙ୍କୁ ଡାକୁଥାଏ।

ଦୁଇମାସ ପୂରିବାକୁ ଆଉ ଦୁଇଦିନ ଥାଏ। ମୋ ମାସ ପୂରି ଗଲା। ସେଦିନ କିଛି ହେଲାନାହିଁ। ଦିନରାତି ଖାଲି ଡାକୁଥାଏ ଗୋପୀନାଥଙ୍କୁ କେମିତି ଏ ମାସିକିଆ ଅଟକି ଯାଉ। ତା ଆର ଦିନ ଗଲା। ଗାଧୋଇଲି ନାହିଁ, ତା ଆରଦିନ ବି ଗଲା। ଏମିତି ଯେତେବେଳେ ସାତିଦିନ ପୂରିଗଲା ଶାଶୂ ଶୁଣିଲେ ଯେ ମୁଁ ସେ ମାସରେ ଗାଧୋଇ ନାହିଁ।

ଶାଶୂଙ୍କ ଚାଲି ଆଉ ଦେଖେ କିଏ। ଓଃ, କେତେ ପୂଜା ଯେ ସେ କଲେ। ଗୋପିଆ ହବା ପର୍ଯ୍ୟନ୍ତ ପରା ସେ ମୋତେ କୁଟା ଖଣ୍ଡିକ ଦି'ଖଣ୍ଡ କରିବାକୁ ଦେଇ ନାହାନ୍ତି। ଦିନରାତି ମୋତେ ଆବୁରି ବସି ଥାଆନ୍ତି, ଆଉ ପୁରୁଣା ଭାଗବତ ଶୁଣାଉ ଥାଆନ୍ତି।

ଗୋପିଆ ଯେତେବେଳେ ହେଲା...କି ଦେଖିବ ଶାଶୂଙ୍କ ଆନନ୍ଦ! ମୋ ଗୋପୀ ପୁଅ-ବୋହୂ ସୁଖରେ ଘର କରୁ, ଏଇ ଆଶରିବାଦ କର ତମେମାନେ...

ଗାଁ ପୁରୋହିତ ନିଧିଆନ୍ନା ସେତେବେଳେ ମଧ୍ୟାହ୍ନସ୍ନାନ ପରେ ମୋହମୁଦ୍‌ଗର ବୋଲି ଯାଉ ଥାଆନ୍ତି... ପୁନରପି ଜନମଂ ପୁନରପି ମରଣଂ ପୁନରପି ଜନନୀ ଜଠରେ ଶୟନଂ...

# ମାଦଳା ପାଞ୍ଜି

ଠିକ୍ ଯେତେବେଳେ ରାତି ବାରଟା ବାଜେ ସେତେବେଳେ ସିନେମାର ଦ୍ୱିତୀୟ ଶୋ' ସରିଯାଏ ଏବଂ ରାତ୍ରିର ନିସ୍ତବ୍ଧତା ଭେଦକରି ସିନେମା ହଲ୍ ଆଡୁ ଭାସି ଆସେ ରେକର୍ଡ଼ ସଂଗୀତ, ହରେ ମୁରାରେ ମଧୁକୈଟକଭରେ ଗୋପାଳ ଗୋବିନ୍ଦଂ ମୁକୁନ୍ଦ ସୌରେ, ଯଜ୍ଞେଶ୍ ନାରାୟଣ କୃଷ୍ଣ ବିଷ୍ଣୋ ନିରାଶ୍ରୟ ମାଂ ଜଗଦୀଶରକ୍ଷ। ସିନେମା ଶେଷରେ ଏହି ରେକର୍ଡ଼ଟି ନିଇତି ବାଜେ। ଭାରି ସୁନ୍ଦର ଉଦାସିଆ ସୁରଟିଏ। ଠିକ୍ ସେତିକିବେଳେ କଇଦିଖାନାର ଘଣ୍ଟା କର୍କଶ ସ୍ୱରରେ ବାଜି ଉଠେ ଢ଼ଂ ଢ଼ଂ ଢ଼ଂ...

ବିଜନ ବାବୁଙ୍କର ଏତିକିବେଳେ ଠିକ୍ ନିଦ ଭାଙ୍ଗିଯାଏ। ଆଜି ମଧ୍ୟ ଭଙ୍ଗିଗଲା, ସେ ଉଠି ମୁହଁ ଧୋଇ ଲେଖି ବସିଲେ ଡାଏରି ତ ନୁହଁ ମାଦଳାପାଞ୍ଜି। ସେ ଦିନକ ଭିତରେ ଯାହା ଘଟିଥାଏ ସବୁ ସେଥିରେ ସ୍ଥାନ ପାଏ। ଧୀରେ ପଦଚାରଣା କରୁ କରୁ ସେ ଭାବିବାକୁ ଲାଗିଲେ ଆକାଶକୁ ଚାହିଁ, ଦିନଟିଯାକର ଘଟଣା ଗୁଡ଼ିକ। ଆକାଶରେ ସପ୍ତତାରକା ସମନ୍ୱିତ ବିରାଟ ପ୍ରଶ୍ନବାଚକ ଚିହ୍ନଟି ଝୁଲୁଚି ଓ ତାଙ୍କ ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଚି। ଅଧର ପ୍ରାନ୍ତରେ ଟିକିଏ ହସ ଖେଳିଗଲା ତାଙ୍କର, ସମସ୍ତ ଘଟଣାଗୁଡ଼ିକ ମନେ ମନେ ରୋମନ୍ଥନ କରୁ କରୁ ସେ ଅନୁଚ୍ଚକଣ୍ଠରେ କହିଲେ, ମନୁଷ୍ୟ ପ୍ରତ୍ୟେକ ଘଟଣାର ଗୋଟାଏ କାରଣ ଖୋଜିବାକୁ ଚେଷ୍ଟା କରେ। କିଛି ଗୋଟାଏ କାରଣ ସ୍ୱରୂପ ପାଇଗଲେ ସେ ପାଏ ଗୋଟାଏ ଆତ୍ମପ୍ରସାଦ। ସବୁ ବୁଝି ପାରୁଚି ବୋଲି ଭାବିନେଇ ସେ ନିଜକୁ ବୁଦ୍ଧିମାନ ବୋଲି ସିଦ୍ଧାନ୍ତ କରି ପାଏ ତୃପ୍ତି। କିନ୍ତୁ ଜୀବନରେ ଘଟଣା ପରେ ଘଟଣା ଘଟିଯାଏ। କୌଣସିଟି ସହିତ ଅନ୍ୟ କୌଣସିର କାର୍ଯ୍ୟ କାରଣ ସମ୍ବନ୍ଧ ଖୋଜିବା ବୋଧହୁଏ ମୂର୍ଖତା। ଜୀବନ କେବଳ କେତେକ ଗୁଡ଼ିଏ ଘଟଣାକୁ ବାଛି ଗୋଟିଏ ସୂତ୍ରରେ ଗୁନ୍ଥି ଭିନ୍ନ ଭିନ୍ନ ମାଳା କରି ରଖେ।

କଥାଟି ତାଙ୍କ ମନକୁ ପାଇଲା। ଡାଏରିରେ ଦିନର ଘଟଣାଗୁଡ଼ିକ ଲେଖିବା ପୂର୍ବରୁ ସେତକ ଲେଖି ରଖି ସେ ଆରମ୍ଭ କଲେ...

...ସାଢ଼େ ଦଶଟା ବାଜି ଗଲାଣି । ତରତର ହୋଇ ଚାଲିଚି କଚେରି । ଆଜି ଦଶଟି ଫୌଜଦାରି ମକଦ୍ଦମାର ଶୁଣାଣି ଅଛି । ଅନ୍ତତଃ ପନ୍ଦରଟି ସାକ୍ଷୀର ଜେରା ଓ ଜବାନବନ୍ଦି ନିଆହେବ । ତରତର ହୋଇ ଚାଲିଚି । ବାଟରେ ଦେଖିଲି ଦୁଇଟି ମୁଦାଲାଙ୍କୁ ବାନ୍ଧି ଦୁଇଟି ପୁଲିସ୍ କନେଷ୍ଟବଳ ଚାଲିଛନ୍ତି ତରତର ହୋଇ । କନେଷ୍ଟବଳ ଦୁଇଜଣଙ୍କର ମଧ୍ୟରେ ରଗାରଗିରେ କଥାବାର୍ତ୍ତା ଚାଲିଚି । ଜଣେ କହୁଚି, ଯା ଯାଃ ରେ, ତୋର ମାଇପ ପରା ମୋ ଘରକୁ ସେଦିନ ଆସିଥିଲା ଯେ ମୋର ପୁଅର ପେଣ୍ଟୁଟି ଲୁଚେଇ ନେଇଗଲା, ତୁ କଅଣ ଦେଖେଇ ହଉଚୁ...ତୋ କଥା କହିବି ତ ସରିବ ନାହିଁ ।

ଏ କଥାରେ ଅନ୍ୟ ଜଣକ ଭୀଷଣ ରାଗିଯାଇ ହାତ ହଲେଇ ଅନର୍ଗଳ ବକି ଚାଲିଲା ତାର ସାଧୁତାର ନାନା ଉଦାହରଣ, ଆଉ ମଝିରେ ମଝିରେ ଅନ୍ୟ ପ୍ରତି ଗାଳି ବର୍ଷୁଥାଏ ।

ମୁଦାଲା ଦୁଇଜଣଙ୍କ ହାତରେ ହାତକଡ଼ି, ସେମାନଙ୍କ ଅଣ୍ଟାରେ ଦଉଡ଼ି ବନ୍ଧାହୋଇଚି । ଦଉଡ଼ିର ଅଗଟି ପଛରେ ଯାଉଥିବା କନେଷ୍ଟବଳଟି ଧରିଚି । ରାଗରେ ସେ ଦୁଇଡ଼ିଟି ଏ ହାତରୁ ସେ ହାତ ପଚାଶ ଥର କରୁଚି । ଆଗରେ ଯାଉଥିବା କନେଷ୍ଟବଳ ଜଣକ ବାରମ୍ବାର ବୁଲି ପଡ଼ି ପଛବାଲାକୁ ଗାଳି ଦବାରେ ଲାଗିଚି, ବାଟଯାକ ଠାଏ ଠାଏ ଠିଆ ହୋଇ ଚାଲିଚନ୍ତି ସମସ୍ତେ ।

ଏମିତି କଲେ ଉଚ୍ଛୁର ହୋଇଯିବ ଯେ । ବେଳ ହୋଇଗଲାଣି । ହାକିମ ରାଗିବେ ଯେ । ଘର କଲେ ସେମିତି ହୋଇଥାଏ । ସେଥିରେ ଏତେ ରାଗିଲେ ଚଳିବ । କେତେଦିନ ଏ ଦୁନିଆରେ ରହିବା ଯେ ଏତେ ଦ୍ୱନ୍ଦ୍ୱ...ଜଣେ ମୁଦାଲା ଆଗ କନେଷ୍ଟବଳଟିକୁ ବୁଝାଇବାକୁ ଚେଷ୍ଟାକଲା ।

କନେଷ୍ଟବଳ ରାଗିଯାଇ କହିଲା, କଅଣ କହୁଚ ହୋ ! ତୁମେ ତ ଚାରିଥର ଚୋରି କେସ୍‌ରେ ଧରା ହେଲଣି । କହିଲ ଭଲା, ଏମିତି କେହି ଚୋରି କରନ୍ତି ! ଏଟା ତୁମକୁ ସମ୍ଭବ ଲାଗୁଚିତ ? ଖାଲି କହିଦେଲେ ହେଲା କି ?

ମୁଦାଲା ଜଣକ ଟିକିଏ ହସି କହିଲା, ନା, ନା ସେମିତି ଚୋରିକୁ ଭାରି ହାତ ସଫେଇ ଦରକାର...

ଏଟମ୍‌ବୋମା ଉଦ୍ଭାବନ ଗୋଟିଏ ଅଦ୍ଭୁତ ଘଟଣା ସତ, କିନ୍ତୁ ଏ ଘଟଣାଟା ମଧ୍ୟ କମ୍ ଅଦ୍ଭୁତ ନୁହଁତ !

ଗମ୍ଭୀର ଭାବରେ ସେମାନଙ୍କୁ ଆଗେଇ ଗଲି । ମନରେ କିନ୍ତୁ ଭାରି ହସ ମାଡୁଥାଏ । ମୋତେ ଦେଖି ସେମାନଙ୍କର କଳହ ହଠାତ୍ ବନ୍ଦ ହୋଇଗଲା । ଦୁଇଜଣ

କନେଷ୍ଟବଳ ଜିଭ କାମୁଡ଼ି ଛିଡ଼ା ହୋଇପଡ଼ି ସେଲୁଟ୍ କଲେ। ଗମ୍ଭୀରଭାବରେ ମୁଣ୍ଡ ଟୁଙ୍ଗାରି ଚାଲିଗଲି।

କୋର୍ଟରେ ଚୌକିରେ ବସିବା ମାତ୍ରକେ ପେସ୍କାର ତାଡ଼ାଏ ମକଦ୍ଦମା ନଥି ସାମନାରେ ରଖିଦେଲେ।

ଡାକନ୍ତୁ ପକ୍ଷମାନଙ୍କୁ। ପ୍ରଥମରୁ ଗୋଟାଏ ନଥି ଧରି ଆଦେଶ ଦେଲି।

ଜମାନବନ୍ଦି ସରିଲାଣି। ଜେରା ଚାଲିଚି ତ ଚାଲିଚି। ଲେଖି ଲେଖି ହାତ ବଥେଇଗଲାଣି। କିନ୍ତୁ ଓକିଲର କ୍ଲାନ୍ତି ନାହିଁକି ସାକ୍ଷୀର ମଧ୍ୟ କ୍ଲାନ୍ତି ନାହିଁ। ଚଷମାକୁ ଥରେ କାଢ଼ି ମୁଣ୍ଡ ନୁଆଁଇ କପାଳରେ ଦୁଇ ତିନି ଥର ଟିପମାରି ପୁଣି ମୁଣ୍ଡଟେକି ସାକ୍ଷୀଆଡ଼କୁ ଗୋଟାଏ କ୍ରୁର ଦୃଷ୍ଟି ନିକ୍ଷେପକରି ଓକିଲ ଗୋଟାଏ ପ୍ରଶ୍ନବାଣ ଛାଡୁଛନ୍ତି। ଓକିଲ ଡାଳେ ଡାଳେ ଗଲେ ସାକ୍ଷୀ ଯାଉଚି ପତ୍ରେ ପତ୍ରେ । ନିର୍ବିକାର ଭାବରେ ସାକ୍ଷୀ ଏମିତି ଗୋଟାଏ ଉତ୍ତର ଦେଉଚି ଯେ ଓକିଲର ଅକଲ ଗୁଡ୍ରୁମ୍। ଏମିତି ଏକଘଣ୍ଟା ସମୟ ଗଲାଣି ଓ ଚୌଦପତର ଜେରା ଲେଖି ସାରିଲିଣି। ମଝିରେ ମଝିରେ ଦୁଇ ଓକିଲଙ୍କ ମଧ୍ୟରେ କଳି ଏବଂ ପରସ୍ପର ପ୍ରତି କଟୁ ମନ୍ତବ୍ୟ ନିକ୍ଷେପ କ୍ରମେ ଧୈର୍ଯ୍ୟ ରଖିବା ଅସମ୍ଭବ ହୋଇ ପଡ଼ିଚି। ଆଉ ଦିନରେ ଦଶଟି ମକଦ୍ଦମାର ଶୁଣାଣିରେ ପନ୍ଦରଟି ସାକ୍ଷୀର ଜମାନବନ୍ଦି ଓ ଜେରା ହେବାକୁ ଧାର୍ଯ୍ୟ ଅଛି। ମାତ୍ର ସାତଟି ସରିଚି। ବେଳ ଆସି ହେଲାଣି ଦିନ ଦୁଇଟା। ମଝିରେ ମଝିରେ ଅଛି ଅନ୍ୟାନ୍ୟ ବିଭାଗମାନଙ୍କର ଜରୁରୀ କାମ, ଜିଲ୍ଲା ସାହେବଙ୍କ ଜରୁରୀ ଡାକରା। ମନ ଦେଇ ଜେରା ଶୁଣି ଲେଖୁ ଲେଖୁ ହୁଏତ ଜଣେ କିରାନି ଆସି କହିଲା, ଗୋଟାଏ ଜରୁରୀ ତାର ଆସିଚି, କଅଣ କରିବାକୁ ହେବ ଆଦେଶ ଦିଅନ୍ତୁ। ଫାଇଲ୍ ଦେଖି ସେ ବିଷୟରେ ଚିନ୍ତା କରି ଗୋଟାଏ ନିର୍ଦ୍ଦେଶ ଦେଇ ପୁଣି ମନ ଦେଇ ଜେରା ଲେଖିଚି କି ନା କିଛିକ୍ଷଣ ପରେ ଜିଲ୍ଲା ସାହେବଙ୍କ ଚପରାସୀ ଆସି କହିଲା, ସାହେବ ସଲାମ୍ ଦେଇଛନ୍ତି। ଲେଖା ବନ୍ଦକରି ଉଠିଗଲି। ସେଠିକା କାମ ସାରି ଆସି ପୁଣି ବସିଲି ଜେରା ଲେଖିବାକୁ । ମନଟା ଯେମିତି ଗୋଟାଏ ଖୁଣ୍ଟିରେ ବନ୍ଧା ହୋଇଥିବା ରବରଫିତା ଖଣ୍ଡେ। ତାକୁ ଯାର ଇଚ୍ଛା ଯେତେଦୂର ଜୋରକରି ଟାଣି ନେଇ ତାଙ୍କ କାମରେ ନିଯୁକ୍ତ କରି କାମସାରି ପୁଣି ଛଟ୍ କରି ଛାଡ଼ି ଦେଇଛନ୍ତି ଏବଂ ସେ ପଟାଂ କରି ଆସି ବାଜୁଚି ସେଇ ଖୁଣ୍ଟିରେ ।

ଆଉ ଏ ସାକ୍ଷୀଟିବି ଗୋଟିଏ ଅସମ୍ଭବ ଧୂର୍ତ୍ତ। କଟକର ଜଣେ ଖ୍ୟାତନାମା ଓକିଲକୁ ସେ ପାଣି ପେଇ ଦେଇସାରିଲାଣି। ଜେରା ଲେଖୁଚି ଆଉ ମନେ ମନେ ଭାବୁଚି, ଆଶ୍ଚର୍ଯ୍ୟ ହୋଇ ଭାବୁଚି, କିଏ କୁହେ ଗାଁର ଲୋକେ ସରଳ ସୁନ୍ଦର!! ମୁଦାଲା ପକ୍ଷର ଓକିଲ ଜଣେ ଟାଣୁଆ, ଅଭିଜ୍ଞ ଓକିଲ। ଆଇନ୍ ବିଷୟରେ ତାଙ୍କର ଜ୍ଞାନ ଅସୀମ।

ତାଙ୍କର ସମକକ୍ଷ ଖୁବ୍ କମ ଓକିଲ। ସମସ୍ତେ ତାଙ୍କ ବିପକ୍ଷରେ ଛିଡ଼ା ହେବାକୁ ଡରନ୍ତି। ମୁଦେଇ ପକ୍ଷର ଓକିଲ ଜଣେ ନୂତନ ଅନଭିଜ୍ଞ ଟୋକା ଓକିଲ। ଯାହାର ପାଠ ଠାରୁ ଶାଠ ଉପରେ ବେଶୀ ଦଖଲ। ମୁଦାଲା ଓକିଲ ମୁଦେଇ ସାକ୍ଷୀକୁ ଜେରା କରି ଗୋଟିଏ ପ୍ରଶ୍ନ ପଚାରିବା ମାତ୍ରେ ମୁଦେଇ ଓକିଲ ଛିଡ଼ାହୋଇ ମୋତେ ଚାହିଁ ନିଶ୍ଚିତ ଭାବରେ ଜଣାନ୍ତି ଇୟୋର୍ ଅନର୍, ଏ ପ୍ରଶ୍ନ ସାକ୍ଷ୍ୟପ୍ରମାଣ ଆଇନର ୬୫ ଧାରା ଅନୁସାରେ ଅବାନ୍ତର ଏବଂ ତେଣୁ ଗ୍ରହଣଯୋଗ୍ୟ ନୁହଁ।

ମୁଁ କାବା ହୋଇ ଚାହେଁ। ମୁଦାଲା ଓକିଲ ମଧ୍ୟ କାବା ହୋଇ ତାଙ୍କ ଆଡ଼େ ଚାହିଁ କୁହନ୍ତି; ଅର୍ବାଚୀନ। ତାପରେ ଚାଲେ ତର୍କ। ବହି ଖୋଲାହୁଏ ଏବଂ ପ୍ରଶ୍ନ ଅବାନ୍ତର ନୁହେଁ ବୋଲି ସାବ୍ୟସ୍ତ ହୁଏ। କିନ୍ତୁ ଏମିତି କରି କରି ମୁଦେଇ ଓକିଲ ମୁଦାଲା ଓକିଲଙ୍କୁ ଉତ୍‌କ୍ଷିପ୍ତ କରିସାରିଲେଣି। ତାଙ୍କର ମଧ୍ୟ ଧୈର୍ଯ୍ୟଚ୍ୟୁତି ଘଟିଲାଣି।

ଆପଣ କେବେ ଚୋରି ମକଦ୍ଦମାରେ ଧରାହୋଇଥିଲେ କି ? ମୁଦାଲା ଓକିଲ ସାକ୍ଷୀକୁ ପଚାରିଲେ।

ଇୟୋର ଅନର୍ ଏ ପ୍ରଶ୍ନ ସାକ୍ଷ୍ୟ ପ୍ରମାଣ ଆଇନାନୁସାରେ ଅବାନ୍ତର ଓ ତେଣୁ ଗ୍ରହଣଯୋଗ୍ୟ ନୁହ। ମୁଦାଲା ଓକିଲ ଜ୍ୟାମୁକ୍ତ ଧନୁବତ୍ ଛିଡ଼ାହୋଇ ଏତେକ କହି ନିର୍ଲିପ୍ତ ଭାବରେ ବସି ପଡ଼ିଲେ।

ମୁଦେଇ ଓକିଲ ପାଟି ମେଲାକରି ଚାହିଁ କହିଲେ, ତୁମେ ମଧ୍ୟ ଅବାନ୍ତର ଓ ଗ୍ରହଣ ଯୋଗ୍ୟ ନୁହଁ।

କେଉଁ ଧାରା ଅନୁସାରେ ମୋର ବିଜ୍ଞାନୀ ବନ୍ଧୁ (learned friend) ମୋ ପ୍ରତି ଏପରି ମନ୍ତବ୍ୟ କଲେ ଜାଣିପାରେ କି ! ମୁଦେଇ ଓକିଲ ସବିନୟେ ପଚାରିଲେ। ପ୍ରଶ୍ନ ପଚାରିବାର ଭଙ୍ଗୀଟି ଅପୂର୍ବ, ନିଛକ୍ ଜ୍ଞାନ ଆହରଣପାଇଁ ଉତ୍ସୁକ ହୋଇ ସେ ଯେପରି ଏ ପ୍ରଶ୍ନଟି ପଚାରିଛନ୍ତି।

କିନ୍ତୁ ମୁଦାଲା ଓକିଲ ଏ ପ୍ରଶ୍ନରେ ଧୈର୍ଯ୍ୟ ହରାଇ ଦାନ୍ତ ନିକୁଟି କହିଲେ, ତୁମ୍ଭେ ଗୋଟିଏ ଗଧ।

ଧନ୍ୟବାଦ୍, ଗୁଣ ସିନା ଚିହ୍ନେ ଗୁଣିଆ। ମୁଦେଇ ଓକିଲ ଅତି ବିନୟସହ କହିଲେ।

ବିରକ୍ତ ହୋଇ କହିଲି, ଆପଣ ପରସ୍ପରକୁ ଚିହ୍ନିସାରିଲେଣି, ବର୍ତ୍ତମାନ ତେବେ ମକଦ୍ଦମା ଚାଲୁ।

ମକଦ୍ଦମା ଚାଲିଲା। ଜେରା ଚାଲିଲା। ଲେଖା ଚାଲିଲା। ଅକ୍ଷର ସବୁ କ୍ରମେ ସରଳରେଖା ହେବାକୁ ଲାଗିଲେଣି, ସନ୍ଦେହ ହେଲାଣି ପରେ ନିଜ ଲେଖା ନିଜେ ପଢ଼ି ପାରିବି କି ନା।

ଜେରାର ତାନ ମାନ କାଳେ ପେସ୍କାର କହିଲେ, ବିକଳରେ, ସ୍ୱୀକାରୋକ୍ତି ପାଇଁ ଗୋଟିଏ ଆସାମୀ ପଠାଇଛନ୍ତି ଆଜ୍ଞା।

ମୁଣ୍ଡ ଟେକି ଅନାଇ ଦେଖିଲି ସାମନାରେ ଛିଡ଼ା ହୋଇଚି ଏକ ଅଦ୍ଭୁତ ଜୀବ। ମୁଣ୍ଡର ବାଳଗୁଡ଼ିକ ନୁଖୁରା। ଫୁରୁଫୁରୁ ହୋଇ ବିଜୁଳି ପଙ୍ଖାରେ ଉଡୁଚି। ଆଖି ଯୋଡ଼ିକ କୋଟରଗତ। ଗାଲ ପଶିଯାଇ ହନୁ ହାଡ଼ ଯୋଡ଼ିକ ପର୍ବତ ଚୂଡ଼ା ଭଳି ବାହାରିଚି। ପିନ୍ଧିଚି ଖଣ୍ଡେ ଛିଣ୍ଡା ମଇଳା କନା, ପିଚାଗୁ ଫାଳେ ଦିଶୁଚି। ପଞ୍ଜରା ହାଡ଼ଗୁଡ଼ିକ ଏତେ ପରିଷ୍କାର ଭାବରେ ଦିଶୁଚି ଯେ ଡାକ୍ତରୀ ଛାତ୍ରମାନଙ୍କ ପଢ଼ିବା ପାଇଁ କଙ୍କାଳ ନ ନେଇ ଏକୁ ନେଲେ ଚଳି ଯାଆନ୍ତା। ଏପରି ଗୋଟିଏ ଜୀବ କାଖରେ ଗୋଟିଏ ଛୁଆ। ଅଣ୍ଟାରେ ତାର ଦଉଡ଼ି, ସେ ଦଉଡ଼ିକୁ ଧରିଚି ଗୋଟିଏ ପୁଲିସ୍। ଗୋଟିଏ ହାତରେ ହାତ କଡ଼ା, ତାକୁ ଧରିଚି ଅନ୍ୟଜଣେ। ମୋର ଇଙ୍ଗିତରେ ସେମାନେ ଦଉଡ଼ି ଓ ହାତ କଡ଼ି ଖୋଲି ଚାଲିଗଲେ।

ଅସାମୀକୁ ଚାହିଁ ରହିଲି କିଛିକ୍ଷଣ।

ତୋ ନା କଅଣରେ ହେ-ଏ। ରାଗିଯାଇ ପଚାରିଲି।

ମନେ ମନେ କହିଲି, ଆସିଲା ଗୋଟାଏ ଫାଲ୍‌ତୁ କାମ। ଘଣ୍ଟାଏ ସମୟ ନଷ୍ଟ ହେବ ଏହିକ୍ଷଣି।

ମୋ ନା' ଆଇଣ୍ଟୁ ମଳିକି।

(ସାକ୍ଷ୍ୟ ପ୍ରମାଣ ଆଇନ ଅନୁସାରେ ପୁଲିସ୍‌ମାନେ ବିଶ୍ୱାସଯୋଗ୍ୟ ନୁହନ୍ତି। ତେଣୁ ପୁଲିସ୍ ଅନୁସନ୍ଧାନ କରୁଥିବାବେଳେ କୌଣସି ଆସାମୀ ଯଦି ଦୋଷ ସ୍ୱୀକାର କରେ ତେବେ ତାକୁ ଜଣେ ମ୍ୟାଜିଷ୍ଟ୍ରେଟ ପାଖକୁ ପଠାଇ ଦିଆଯାଏ। କାରଣ ପୁଲିସ୍ ଯଦି କୁହେ ଯେ ଆସାମୀ ଦୋଷ ସ୍ୱୀକାର କରୁଚି ତେବେ ତାହା ବିଶ୍ୱାସଯୋଗ୍ୟ ନୁହେଁ ଏବଂ ତେଣୁ ଗ୍ରହଣୀୟ ନୁହଁ। ଜଣେ ମ୍ୟାଜିଷ୍ଟ୍ରେଟ ପାଖରେ କହିଲେ ତାହା ଗ୍ରହଣୀୟ। ମ୍ୟାଜିଷ୍ଟ୍ରେଟ୍ ତାହା ଲେଖି ରଖନ୍ତି ଏବଂ ବିଚାର ଆରମ୍ଭ ହେଲେ ସେ ସ୍ୱୀକାରୋକ୍ତି ଗ୍ରହଣୀୟ ହୁଏ। କିନ୍ତୁ ସ୍ୱୀକାରୋକ୍ତି ଲେଖିବା ପୂର୍ବରୁ ଆଇନ ଅନୁସାରେ ନାନା ପ୍ରଶ୍ନ ପଚାରିବାକୁ ହୁଏ, ନାନା କଥା ବୁଝାଇବାକୁ ହୁଏ ପୁଲିସ୍ ଭୟରେ ସ୍ୱୀକାରୋକ୍ତିରୁ ଦେଉଛି କି ନା ଜାଣିବାକୁ। ପରେ ଆସାମୀ ବିଚାର ବେଳେ ସେ ସ୍ୱୀକାରୋକ୍ତିରୁ ଓହାରିଗଲେ ସ୍ୱୀକାରୋକ୍ତି ଲେଖିଥିବା ମ୍ୟାଜିଷ୍ଟ୍ରେଟକୁ ସାକ୍ଷ୍ୟ ଦେବାକୁ ପଡ଼େ ଏବଂ ଜେରା ମଧ୍ୟ ହୁଏ। ତେଣୁ ସ୍ୱୀକାରୋକ୍ତି ଲେଖିବା ଭାରି କଷ୍ଟକର କଥା। ଆସାମୀ ପୁଲିସ୍ ଅନୁସନ୍ଧାନବେଳେ ଦୋଷ ସ୍ୱୀକାର ନ କଲେ ତେଣୁ ମ୍ୟାଜିଷ୍ଟ୍ରେଟମାନଙ୍କୁ ସୁବିଧା)

ମନରେ ବିରକ୍ତ ଲୁଚାଇ ନରମ ଭାବରେ ପଚାରିଲି: କିରେ, ଦୋଷ କରିଚୁ ?

ଆଖିରୁ ତାର ଲୁହ ଝରି ପଡ଼ିଲା। କିନ୍ତୁ ଦାନ୍ତ ନିକୁଟି ହସି ସେ ମୁଣ୍ଡ ଟୁଙ୍ଗାରି କହିଲା, ହଁ। କହିସାରି ସେ ତାର କୋଳରେ ପିଲାଟିକୁ ଆହୁରି ଜାକି ଧରିଲା।

କଅଣ କରିଥିଲୁ ?

ଚୋରି ଆଜ୍ଞା।

କଅଣ ଚୋରି କରିଥିଲୁ ?

ଭାତ।

ଭାତ ? ଭାତ ! ! କାହା ଘରୁ ରେ ?

ପଧାନଙ୍କ ଘରୁ।

କାହିଁକି ରେ ?

ଉତ୍ତରରେ କେବଳ ତଳକୁ ମୁହଁ ପୋତି ସେ ଚାହିଁ ରହିଲା।

ଦୁଇବୁନ୍ଦା ଲୁହ କେବଳ ଗଡ଼ି ଆସି ଚ଼ଉକିରେ ବସିଥିବା ଓକିଲଙ୍କ କଳାକୋଟ ଉପରେ ପଡ଼ି ଗଡ଼ିଗଲା।

କିନ୍ତୁ ମୋର ବେଳ କାହିଁ ଅପେକ୍ଷା କରିବାକୁ। ପଡ଼ି ରହିଚି ଆହୁରି ଅନେକ କାମ, ବାହାରେ ଅପେକ୍ଷା କରୁଛନ୍ତି ଆହୁରି କେତେ ସାକ୍ଷୀ, ଭିତରେ ଅପେକ୍ଷା କରି ବସିଚନ୍ତି ଓକିଲମାନେ।

ଆଇନ ଅନୁସାରେ ତାକୁ ବୁଝାଇବାକୁ ଲାଗିଲି, ତୋର ଦୋଷ ସ୍ୱୀକାର କରିବା ଦରକାର ନାହିଁ। ଦୋଷ ସ୍ୱୀକାର କରିବାକୁ କେହି ତୋତେ ବାଧ୍ୟ କରିପାରିବେ ନାହିଁ। ମୁଁ ଜଣେ ମ୍ୟାଜିଷ୍ଟ୍ରେଟ ଏବଂ ତେଣୁ ମୋ ପାଖରେ ଦୋଷ ମାନିଲେ ତାହା ତୋ ବିପକ୍ଷରେ ଯିବ, ତୁ କାହାରିକି ଭୟ କରନା ଇତ୍ୟାଦି ଇତ୍ୟାଦି।

କିନ୍ତୁ ଲୋକଟିର ଗୋଟିଏ ମାତ୍ର କଥା, ଆଜ୍ଞା ମୁଁ ଚୋରି କରିଚି। ଉତ୍ତର ଶୁଣି ମନେ ମନେ କହିଲି, ହ୍ୟାପ, ଆସିଲା ଗୋଟିଏ ଯୁଧିଷ୍ଠିର ମୋତେ ହଇରାଣରେ ପକାଇବାକୁ ଏଇଛୁଣିକା ଘଣ୍ଟାଏ ଧରି ନାନା ପ୍ରଶ୍ନ ଲେଖ ଏବଂ ଲେଖ ତାର ଉତ୍ତର।

ରାଗ ଯାଇ ପଡ଼ିଲା ପେସ୍କାର ଉପରେ। ଛିଡ଼ା ହୋଇଚନ୍ତି କଅଣ। ଆଣନ୍ତୁ ନା ସ୍ୱୀକାରୋକ୍ତି ଫୋରମ୍।

ପେସ୍କାର ତରବର ହୋଇ ଫୋରମ୍ ଦେଲେ। ଘଣ୍ଟାଏ ଧରି ଲେଖିଲି ନାନା ପ୍ରଶ୍ନ ଏବଂ ତାର ଉତ୍ତର।

ଲେଖିସାରି କାଗଜ ଫୋପାଡ଼ିଦେଇ ଡାକିଲି ପୁଲିସ୍‌ବାଲାମାନଙ୍କୁ। କହିଲି, ଦେଖିଯାଅ, କାଲି ଫେର୍ ଆଣିବ। ଆଜି ତାକୁ ବୁଝାଇଲି ସବୁ। ସେ ଚିନ୍ତାକରି କାଲି କହିବ।

ଆଜ୍ଞା, ଆଉ ଭାବିବି କଅଣ। ଭୋକରେ କରି ପକେଇଚି। ଏଇୟାର ମା' ଭୋକ ସମ୍ଭାଳି ନପାରି ବେକରେ ଦଉଡ଼ି ଦେଇ ମଲା। ଏଇ ୟାରି ପାଇଁ...ତଳକୁ ମୁହଁ ପୋତି ସେ ଛିଡ଼ା ହେଲା।

ହଉ ଯା ଯା, କାଲି ଆସିବୁ- କହି କେସ୍ ରେ ମନ ଦେଲି।

ପୁଲିସବାଲାମାନେ ତାକୁ ବାନ୍ଧି ଟାଣିନେଇଗଲେ। ଅତି କାକୁତିମିନତିରେ ସେ କହିଲା, ବାବୁ, ଯାହା ଦଣ୍ଡ ଦେବାର ଦେଇ ଦିଅନ୍ତୁ। ମୁଁ ଆଉ ଘୋଷରା ହୋଇ ପାରିବି ନାହିଁ।

ଆରେ, ବିରକ୍ତ ହୋଇ କହିଲି, ତୁ ଆଇନ୍ ବୁଝୁନାହୁଁ କିରେ। ମୁଁ ଦଣ୍ଡ ଦେବା ଲୋକ ନୁହଁ। ତୋ ମକଦ୍ଦମା ମୁଁ ବିଚାର କରି ବସି ନାହିଁ। ତୋ ମକଦ୍ଦମା ବିଚାର କରିବେ ଅନ୍ୟ ମ୍ୟାଜିଷ୍ଟ୍ରେଟ୍। ମୁଁ ଖାଲି ତୁ ଯାହା କହିବୁ ଲେଖିଦେବି। ଯା, ଯାଃ, ମୋର ସମୟ ନଷ୍ଟ କରନା।

ଆଖି ପୋଛି ପୋଛି ସେ ଚାଲିଗଲା। ମନଟା ଟିକିଏ ଉଦାସ ଲାଗିଲା। ଅନ୍ୟମନସ୍କ ଭାବରେ କଲମ ଉଠାଇ ବସି ରହିଲି।

ହଁ, ସେ ତଳେ ପଡ଼ିବା ପରେ ବେହୋସ୍ ହୋଇଗଲା, ନା ବେହୋସ୍ ହୋଇ ତଳେ ପଡ଼ିଗଲା ? ଓକିଲେ ପୂର୍ବ ସମୀକ୍ଷାକୁ ଜେରା କରିବାକୁ ଲାଗିଲେ। ଚମକି ପଡ଼ି ସାକ୍ଷୀର ଉତ୍ତର ଲେଖିଲି, ମାଡ଼ ଖାଇ ତଳେ ପଡ଼ିବା ଭିତରେ ସେ ବେହୋସ୍ ହୋଇଗଲେ।

ପୂର୍ବ ଆସାମୀ କଥା ମନରୁ ପୋଛି ଲେଖି ଚାଲିଛି। ସେ ମକଦ୍ଦମାଟି ଛାଡ଼ି ଅନ୍ୟ ଗୋଟିଏ ମକଦ୍ଦମା ଧରିଲି।

ଧୁରନ୍ଧର ସାହୁ ହାଜର ହେ, ଧୁରନ୍ଧର ସାହୁ ହାଜର ହେ, ଧୁରନ୍ଧର ସାହୁ ହାଜର ହେ, ଗମ୍ଭୀର ନିନାଦରେ ଚପରାସି ଡାକ ଛାଡ଼ିଲା।

ହଁ, ହଁ ହେ, କହି ଭିତରକୁ ପଶି ଆସିଲା ଜଣେ। ନାଁ ସହିତ ଖାପ ଖାଇବା ଚେହେରାଟିଏ। କାଗଜ ପଢ଼ି ପଢ଼ି ଚୋରି ଦଫାରେ ଅଭିଯୁକ୍ତ କରି ପଚାରିଲି, ଗତ...ତାରିଖରେ ଅଳମ୍ବୁଷାପୁରରେ ରାତ୍ର ଅନ୍ଦାଜ ବାରଟା ସମୟରେ ତୁମ୍ଭେ ପଦନ ସାହୁର ଜମିରୁ ଅନ୍ଦାଜ ପାଞ୍ଚଶତ ଟଙ୍କାର ଧାନ ଚୋରି କରିଥିବାର ୩୭୯ ଦଫାରେ ଅଭିଯୁକ୍ତ। ତୁମ୍ଭେ ଦୋଷୀ ନା ନିର୍ଦ୍ଦୋଷ ?

ନିର୍ଦ୍ଦୋଷ।

ଚମକି ପଡ଼ି ଚାହିଁଲି ତା ଆଡ଼େ। କାଗଜପତ୍ର ପଢ଼ି ଦେଖିଲି ଯେ ପ୍ରମାଣର ଅଭାବ ନାହିଁ। ହାତେ ହାତେ ଧରା ହୋଇଚି। ଘରୁ ଧାନ ବାହାରିଚି। ଜମି ପଦନ ସାହୁର ବୋଲି ମଧ୍ୟ ଯଥେଷ୍ଟ ପ୍ରମାଣ ଅଛି। ତଥାପି ଲୋକଟା କେଉଁ ସାହସରେ କହେ ସେ

ନିର୍ଦ୍ଦୋଷ।। ବିରକ୍ତି ଲାଗିଲା। ମନଟା ଏକଦମ୍ ଖପା ହୋଇଗଲା। ଦୋଷଟା ମାନି ଯାଇଥିଲେ ଗୋଟାଏ ମକଦ୍ଦମା ମୋ ପାଖରୁ କମିଯାଇ ଥାଆନ୍ତା। ଅଥଚ ବର୍ତ୍ତମାନ ମିଛରେ ମୋତେ ଗୁଡ଼ାଏ ସାକ୍ଷୀର ଜମାନବନ୍ଦି ଜେରା ଲାଗି ହାତ ବଥେଇବାକୁ ପଡ଼ିବ। ଯେତେ ସବୁ ଧୂର୍ତ୍ତ, ପାଜି, ବଦ୍‌ମାସ।

ଆଜ୍ଞା, ମୋ ବାପ ଚଉଦ ପୁରୁଷର ଜମି ସେ, ତା ଜମି ନୁହେଁ।

ବନ୍ଦ କର ତୁମର କଥା। ମକଦ୍ଦମା ବିଚାର ଚାଲିବ, ତା ପରେ ମୁଁ ବୁଝିବି କାହାର ଜମି। ତୁମକୁ ସେ କଥା କହିବାକୁ ପଡ଼ିବ ନାହିଁ।

ଆଜ୍ଞା, ମୁଁ ସେ ଜମି କିଣିଚି ତାର ବାପ ପାଖରୁ ନଗଦ ହଜାରେ ଠନ୍ ଠନ୍ ଗଣି ନେଇ, ହେଇ ଦେଖନ୍ତୁ କବଲା। ମୁଦେଇ ଆଗେଇ ଆସି ଟେବୁଲ ଉପରେ କବଲାପତ୍ର ଥୋଇଦେଲା।

ଉଠାଅ ଏସବୁ, ଉଠାଅ, ରାଗିଯାଇ ଗର୍ଜି ଉଠିଲି। ବର୍ତ୍ତମାନ ସେସବୁ ଦେଖିବାର ସମୟ ନୁହଁ। ସାକ୍ଷିମାନେ ଆସିଲେ ସେ ସବୁ କାଗଜ ପ୍ରମାଣ କରାଇବ। ତୁମେ ସବୁ ବାଡ଼ିଆପିଟା ଲଗାଇଚ ଗାଁରେ ସାମାନ୍ୟ ଜମିପାଇଁ।

ମକଦ୍ଦମା ଶେଷକରି ଫେରିବାକୁ ଉଛୁର ହୋଇଗଲା। କ୍ଲାନ୍ତ ଦେହକୁ ଆରାମ ଚୌକିରେ ଥୋଇଦେଇ ଖବରକାଗଜ ପଢ଼ି ବସିଲି। ଟେବୁଲ ଉପରେ ଥୁଆ ହୋଇଥିବା ମୋର ଦାମିକା କଲମଟି ଉପରେ ନଜର ପଡ଼ି ଯିବାରୁ ଦେଖିଲି ସେ ଭଙ୍ଗା ହୋଇ ଥୁଆ ହୋଇ ରହିଚି।

ବୃତ୍ତାନ୍ତ କ୍ରୋଧୋଦ୍ଦୀପକ ବ୍ୟାପାର। ଗର୍ଜି ପଚାରିଲି, ଶୁଣୁଚ, ମୋର କଲମ ଭାଙ୍ଗିଲା କିଏ ?

ଗୃହିଣୀ ଦଉଡ଼ି ଆସି ଭୟରେ ହାଁ କରି ଚାହିଁ ରହିଲେ।

କିଏ କଲା ଏମିତି, ମୁଁ ଜାଣିବାକୁ ଚାହେ ଏହିକ୍ଷଣି, ବର୍ତ୍ତମାନ, ଅଭି। ଜଷ୍ଟ୍ ନାଓ, ଚାରିକାତ ମେଲାଇ ଶୋଇବା ଛଡ଼ା ଘରେ ରହି କଅଣ କରୁଚ ତୁମେ ଶୁଣେ, ଶୁଣେ ଟିକିଏ ?

ଭୟରେ ଗୃହିଣୀ କହିଲେ ବାପୁନି ଡେଇଁ ଡେଇଁ ଦୌଡ଼ି ଆସିଲା ହସ ହସ ମୁହଁରେ। ମୋ ହାତରେ କଲମ ଦେଖି ସେ ଭୟରେ ବୋଉକୁ ତାହାର ଜାବୁଡ଼ି ଧରିଲା।

ତୁ ଭାଙ୍ଗିଚୁ ଏ କଲମ ? ଗର୍ଜିଲି।

ହଁ, ମୁଣ୍ଡ ଟୁଙ୍ଗାରି ପୁଅ ଉତ୍ତର ଦେଲା, ଆଈ ପାଖକୁ ଚିଠି ଲେଖୁଥିଲି ସେଥିରେ। ହାତରୁ ଖସି ପଡ଼ି ଭାଙ୍ଗିଗଲା।

ହାତଟେକି ମାରିବାକୁ ଯାଉଥିଲି। କିନ୍ତୁ ମନେ ପଡ଼ିଗଲା ଜର୍ଜ ଓ୍ୟାସିଂଟନଙ୍କ

କଥା। ସେ ମଧ୍ୟ ପିଲାବେଳେ ଏମିତି ସତ କହିଥିବାରୁ ତାଙ୍କର ପିତା କହିଥିଲେ ସେ ଦିନେ ବିଖ୍ୟାତ ଲୋକ ହେବ। ମୋର ପୁଅ ସତ କହିଚି। ସେ ମଧ୍ୟ ବିଖ୍ୟାତ ହେବ। କୁଳ ଉଜ୍ଜ୍ୱଳ କରିବ, ନିଶ୍ଚୟ କରିବ। ଆଶାରେ ମୋର ଆଖି ଉଜ୍ଜ୍ୱଳ ହୋଇ ଉଠିଲା। ଆଦରରେ ତାକୁ କୋଳକୁ ଟାଣି ନେଇ କହିଲି, ବାପା, କେବେହେଁ ମିଛ କହିବୁ ନାହିଁଟି !

ବାପୁନିର ସତ୍ୟ କହିବାରେ ମୁଁ ଆଜି ଗର୍ବିତ। କିନ୍ତୁ ଆଖି ଆଗରେ ଭାସିଗଲା ଅଇଣ୍ଟୁ ମଳିକର ଚେହେରା। ତା' ପାଇଁ ମୁଁ ବା ଦେଶ କଅଣ ଗର୍ବ ଅନୁଭବ କରୁଚି, ସେ ସତ କହିଚି ବୋଲି ?

ମୋର ତିନିବର୍ଷର ଝିଅ ଦୌଡ଼ି ଆସି କହିଲା, ବୋଉ ମୁଁ ସର ଖାଇନି।

ତାର ନାଲି ପାତଳା ଓଠର ଦୁଇ କଣରେ ଲାଗି ରହିଚି ସର। ଆମେ ଏ ଘରେ ଥିବାବେଳେ କେତେବେଳେ ସେ ଲୁଚି ରୋଷେଇଶାଳକୁ ପଶି ଦୁଧହାଣ୍ଡିରୁ ସର ଲୁଚାଇ ଖାଇ ଆସିଲାଣି। ପ୍ରମାଣ ତାର ଅଙ୍ଗରେ ଲାଗି ରହିଚି, ତଥାପି ସେ କହୁଚି: ମୁଁ ସର ଖାଇନି ବୋଉ !

ବୋଉ ତାର ରାଗିଯାଇ କହିଲେ, ଇଲୋ ମୁଁ କଅଣ କରିବି ଲୋ। ପୋଡ଼ାମୁହିଁ, ହାଣ୍ଡିଖାଈ, ସବୁ ସରତକ ଖାଇଗଲା !

ମୁଁ ସର ଖାଇନି ମ, କହି ବୋଉର ଅଭିଯୋଗ ପ୍ରତି ଭ୍ରୂକ୍ଷେପ ନକରି ମୋ ଆଡ଼େ ଆଗେଇ ଆସିଲା, ହାତ ଟେକି।

କୋଳକୁ ଉଠାଇ ନେଇ ଚୁମ୍ବନ ପରେ ଚୁମ୍ବନ ଦେଇ କହିଲି, ନା କିଏ କହିଲା ତୁ ଖାଇଚୁ ? ମିଛ କଥା। ତୋ ମୁହଁରେ କିଏ ସର ଲଗାଇ ଦେଇଚି ତୋତେ ଦୋଷୀ କରିବାକୁ !

ଭାଇ ମ, ଭାଇ ଆଡ଼କୁ ଆଙ୍ଗୁଠି ଦେଖେଇ ମୁହଁ ଫୁଲାଇ କହିଲା ମିନି।

ସତେ, ସତେ ଭାରି ବଦମାସ ସେ, ମାଡ଼ ଖାଇବ।

ଆମର ଜୀବନ ଷାଠିଏ କି ସତୁରି ବର୍ଷ ମଧ୍ୟରେ ପ୍ରଥମ ସାତବର୍ଷ ଆମେ ଧରି ନେଇଚୁ ଅଜ୍ଞାନମୟ ଏବଂ ସେଇଥିପାଇଁ ଆମେ ଦଣ୍ଡବିଧି ଆଇନର ୮୨ ଦଫାରେ କହିଚୁ ସାତବର୍ଷ ବୟସର ତଳର ବାଳକ ଯେ କୌଣସି ଅପରାଧ କଲେ ମଧ୍ୟ ସେ ଦଣ୍ଡନୀୟ ନୁହେଁ। ଆମର କୋଟି କୋଟି ବର୍ଷ ଯାହାଙ୍କ ନିକଟରେ ଗୋଟିଏ ମୁହୂର୍ତ୍ତ, ତାଙ୍କର ଦଣ୍ଡବିଧି ଆଇନରେ ଆମ ଜୀବନର କେତେ ବର୍ଷ ଅଜ୍ଞାନମୟ ବୋଲି ଧରା ହୋଇଚି କିଏ ଜାଣେ ?

# ମହାଯୁଦ୍ଧ

ଦୁର୍ଗାପଦ ତାର ପଢ଼ାବହିକି ଚାହିଁ ବସିଥିବା ସମୟରେ ତାର ଜୀବନର ପ୍ରଥମ ସତରଟି ଆଷାଢ଼ କେତେବେଳେ ମୁଣ୍ଡ ଉପର ଦେଇ ଚାଲିଗଲା, ତାର ଖିଆଲ ନଥିଲା। ତାର ପିତା ବିଷ୍ଣୁ ପ୍ରସାଦ ବାବୁ ତାକୁ ଗଢୁଥିଲେ ନିଜର ଆଦର୍ଶରେ। ସେ ଥିଲେ ଅତି ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ, କିନ୍ତୁ ଦରିଦ୍ର ସମାଜରେ ଗଣ୍ୟମାନ୍ୟ ହୋଇ ଚିରସ୍ମରଣୀୟ ରହିବାକୁ ତାଙ୍କର ଆଶା ଥିଲା। ଉଚ୍ଚ ହେଲେ ହେଁ ଅତି ସାଧାରଣ ଏବଂ ସ୍ୱାଭାବିକ ଆଶା। କିନ୍ତୁ ଆର୍ଥିକ ଓ ପାରିପାର୍ଶ୍ୱିକ ଇତ୍ୟାଦି ନାନା କାରଣରୁ ତାଙ୍କ ଜୀବନରେ କୌଣସି ଗୋଟିଏ ଆଶା ସେ ଫଳବତୀ କରାଇ ପାରି ନାହାନ୍ତି। କହିବାର ସାମର୍ଥ୍ୟ କିମ୍ବା ସମୟ ମଧ୍ୟ ଆଉ ନାହିଁ। ତାଙ୍କର ଶେଷ ଆଶା ଗୋଟିଏ ପୁତ୍ରକୁ ଗଣ୍ୟମାନ୍ୟ କରାଇ ଅମୁକର ପିତା ବୋଲି ଚିରସ୍ମରଣୀୟ ରହିବାକୁ। ପୁତ୍ର ଆଶାରେ ଯେତେବେଳେ ମଧ୍ୟ ଜୀବନର ତିନିଭାଗ ଚାଲିଗଲା ପୁତ୍ର ଆଶା ତ୍ୟାଗ କରି ମୃତ୍ୟୁ ଅପେକ୍ଷାରେ ସେ ଥିଲେ। ତାଙ୍କର ସ୍ତ୍ରୀ ବରଦା ସୁନ୍ଦରୀ ଦେବୀ ଅତିଶୟ ଭୀରୁ ସ୍ୱଭାବର। ବାସ୍ତବ ଏବଂ କାଳ୍ପନିକ ନାନା ଭୟରେ ସେ ସର୍ବଦା ତ୍ରସ୍ତ। ଗୋଟିଏ ପୁଅ ବିନା ପୁତ୍ ନରକରୁ କିପରି ତ୍ରାଣ ପାଇବେ ଏହି ଚିନ୍ତାରେ ସେ ସର୍ବଦା ବ୍ୟାକୁଳ। ପରେ ପରେ ପାଞ୍ଚୋଟି କନ୍ୟା ଜନ୍ମ ଦେଇ ସେ ମଧ୍ୟ ପୁତ୍ରର ଆଶା ତ୍ୟାଗ କରିଥିଲେ। ଷଷ୍ଠବାର ଗର୍ଭବତୀ ହେବା ସମୟରେ ସମସ୍ତେ ଯଥାରୀତି ଧରି ନେଲେ ଯେ ଏଥର ମଧ୍ୟ ଗୋଟିଏ କନ୍ୟା ହେବ।

ବେଦନା ଆରମ୍ଭ ହେବା ସଂଗେ ସଂଗେ ସେ ପ୍ରସୂତୀ ଘରକୁ ଗଲେ ଏବଂ ବ୍ୟାକୁଳ ଭାବରେ ଗୋଟିଏ ପୁତ୍ର କଥା ପୁଣି ଥରେ ଛତିଶ କୋଟି ଦେବଦେବୀଙ୍କୁ ମନେ ପକାଇ ଦେଲେ। ଅନ୍ଧାରିଆ ସନ୍ତସନ୍ତିଆ ଘର। ଘରର ଘନୀଭୂତ ଅନ୍ଧକାର ଭିତରେ ଗୋଟିଏ କ୍ଷୁଦ୍ର ଦୀପର ଅସହାୟ କ୍ଷୀଣ ଆଲୋକ କେବଳ ନିଜକୁହିଁ ଆଲୋକିତ କରିବାଛଡ଼ା ଆଉକିଛି କରିବାର ଉପାୟ ନଥିଲା। ଘରର ଚାରିକାନ୍ଥଯାକ ଗାର ଟାଣି ସେ ଭାଗ୍ୟ ଗଣିବାକୁ ଲାଗିଲେ। ପ୍ରତ୍ୟେକ ଥର ଫଳ ପାଇଲେ 'ନା'-ଅର୍ଥାତ୍ ପୁତ୍ର ହେବ ନାହିଁ।

ଦ୍ୱିଗୁଣ ହତାଶାରେ ସେ ଭଗବାନଙ୍କୁ ଡାକିବାକୁ ଲାଗିଲେ। ସନ୍ତାନଟିଏ ଜାତ ହେବା ମାତ୍ରକେ ସେ ମୂର୍ଚ୍ଛା ଗଲେ। ବିଷ୍ଣୁପ୍ରସାଦ ବାବୁ ବାହାର ପିଣ୍ଡାରେ ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ। ବରଦା ଦେବୀଙ୍କ ଜନନୀ ଆଖିରୁ ଲୁହ ପୋଛି ସନ୍ତାନଟିକୁ ଘୃଣାରେ ଠେଲି ଦେଇ କନ୍ୟାର ଶୁଶ୍ରୂଷାରେ ଲାଗିଲେ। ଗୋଟିଏ କ୍ଷୀଣ ଶରୀର ଟିକିଏ କ୍ଷୀଣତର ପ୍ରାଣକୁ ଧରି ନିର୍ବିବାଦରେ ପଡ଼ି ରହିଲା ଅନ୍ଧକାରର ଗହ୍ୱରରେ। ପ୍ରାୟ ଅଧଘଣ୍ଟା ପରେ ବରଦା ଟିକିଏ ସୁସ୍ଥ ହୋଇ କହିଲେ 'ବୋଉ' ଝୁଅ ହେଉ ପଛକେ, ଟିକିଏ ଦେଖ୍ କାହିଁକି ଏତେବେଳ ଯାଏ କାନ୍ଦୁନି। ବରଦା ଦେବୀଙ୍କ ଜନନୀ ସନ୍ତାନଟିକୁ ପରିଷ୍କାର କରିବାକୁ ଯାଇ ପାଟି କରି କହିଲେ "ଆଲୋ ଦୁତି (ଧାଈ), ଦୀପଟା ଆଣିଲୁ, ଜଙ୍ଘ ମଝିରେ କଅଣ ଗୋଟାଏ ଫୋଟକା ପରି ଦିଶୁଛି।"

ନିମିଷକେ ବିଷାଦମେଘ ଚାଲିଗଲା। ଆନନ୍ଦର ଆଲୋକ ଖେଳିଗଲା। ବରଦା ଦେବୀଙ୍କ ପିତା ଆନନ୍ଦରେ କହିଲେ "ଟୋକା ଭାରି କୌତୁକ ଜାଣେ ତ !" ବିଷ୍ଣୁପ୍ରସାଦ ବାବୁ ଏହି ଆନନ୍ଦର ଗୋଳମାଳରେ ଯେ କୁଆଡ଼େ ଗଲେ କେହି ଜାଣି ପାରିଲେ ନାହିଁ । କିଛିକ୍ଷଣ ପରେ ସେ ଫେରିଲେ। ହାତରେ ତାଙ୍କର ବଡ଼ହାଣ୍ଡିରେ ହାଣ୍ଡିଏ ଲଡୁ। ଆଖିରେ ତାଙ୍କର ଆଶାର ବହ୍ନି ଉଜ୍ଜ୍ୱଳ।

ଦୁର୍ଗାପଦକୁ ଯେତେବେଳେ ମାତ୍ର ଛ'ବର୍ଷ ସେତେବେଳେ ବିଷ୍ଣୁ ବାବୁ ତାକୁ ଗାଁରୁ କଟକକୁ ନିଜ ପାଖକୁ ନେଇ ଆସିଲେ। ତାଙ୍କର ଭୟ ଗାଁ ପିଲାମାନଙ୍କ ସହିତ ମିଶି ସେ ଖରାପ ହୋଇଯିବ। ବେଶି ଖର୍ଚ୍ଚ ହୋଇଯିବା ଭୟରେ ବରଦା ଦେବୀ ସର୍ବଦା ଗାଁରେ ରୁହନ୍ତି। କଟକରୁ ପଶ୍ଚିମକୁ ପଚାଶ ମାଇଲ୍ ଦୂର ଯିବା ଆସିବା ପାଇଁ ରେଳ, ମଟର, ନୌକାବଳଦ ଗାଡ଼ି ସବୁ ବ୍ୟବହାର କରିବାକୁ ହୁଏ। ଏତେ ଅଳ୍ପ ବୟସରେ ଏତେ ଦୂରକୁ ଛାଡ଼ିବାକୁ ତାଙ୍କର ଆଦୌ ଇଚ୍ଛା ନ ଥିଲା। ସ୍ୱାମୀଙ୍କ ପ୍ରସ୍ତାବରେ ସେ ଅଧୀର ହୋଇ କାନ୍ଦି ପକାଇଲେ। କିନ୍ତୁ ବିଷ୍ଣୁ ବାବୁଙ୍କ ଆଶା ନିର୍ମମ। ଦୁର୍ଗାପଦର ପ୍ରଥମେ କଟକକୁ ଯିବାକୁ ଭାରି ଉତ୍ସାହ ଥିଲା। ନୂଆ ଜାଗା, ମଟର, ଘୋଡ଼ା ଗାଡ଼ି, ଖେଳନା ଦୋକାନ କଥା ସେ ତାର ବନ୍ଧୁ କୁନା ପାଖରୁ ଶୁଣିଥିଲା। ପୁତ୍ରର କଟକ ଯିବାର ଉତ୍ସାହ ଦେଖି ବିଷ୍ଣୁବାବୁ ସଗର୍ବେ ସ୍ତ୍ରୀଙ୍କୁ କହିଲେ "ଦେଖ ହୋ, ପୁଅ ମୋ ପାଖରେ ରହିବାକୁ ଚାହେଁ; ତୁମକୁ ତାର ସୁଖ ଲାଗେ ନାହିଁ।" ଦାମ୍ପତ୍ୟ ପରିହାସ ହେଲେ ହେଁ ପୁତ୍ରକୁ ଭଲ ପାଇବା ନେଇ ଦୁହିଁଙ୍କ ମଧ୍ୟରେ ଈର୍ଷାଭାବ ଯେ ନଥିଲା, ତାହା ନୁହେଁ। ବରଦା ଦେବୀ ଟିକିଏ ମ୍ଳାନ ହସ ହସିଲେ। ବିଷ୍ଣୁ ବାବୁ ଯେତେବେଳେ ଦୁର୍ଗାପଦକୁ ବଳଦଗାଡ଼ିକୁ ଉଠିବାକୁ କହିଲେ ସେତେବେଳେ ସେ ମା' ଆଡ଼କୁ ଅନାଇ କେବଳ ନୀରବରେ କାନ୍ଦିବାକୁ

ଲାଗିଲା । ବରଦା ଦେବୀ ପୁଅକୁ ବୁଝାଇ କହିଲେ, "କଟକ ଯିବୁ, ପାଠ ପଢ଼ିବୁ, ବଡ଼ ମଣିଷ ହେବୁ, ମଟର କିଣିବୁ," ଇତ୍ୟାଦି । ଛଅ ବର୍ଷର ଶିଶୁ ଏ ପ୍ରଲୋଭନରେ ପଡ଼ିଲା କି ନାହିଁ କେଜାଣି କିନ୍ତୁ ଦ୍ୱିରୁକ୍ତି ନ କରି ଥରେ ମାତ୍ର ଅସହାୟ ଭାବରେ ମା' ଆଡ଼କୁ ଚାହିଁ ଗାଡ଼ିରେ ଉଠିଲା । ବିଷ୍ଣୁ ବାବୁ ଜୟ ଯାତ୍ରାରେ ବାହାରିବା ଭଳି ଗାଡ଼ିରେ ବସିଲେ । ବରଦା ଦେବୀ ଏହା ପରେ ସାତ ଦିନ ପର୍ଯ୍ୟନ୍ତ ଅନ୍ନ ଜଳ ଛୁଇଁଲେ ନାହିଁ ।

ସହରର ନାନା ଆକର୍ଷଣରେ ଦୁର୍ଗାପଦର ମନ ଭୁଲିଗଲା । କେବଳ ଶୋଇବା ବେଳେ ମା' କୋଳ ମନେ ପଡ଼ି ଆଖିରୁ ପାଣି ଝରେ । ବିଷ୍ଣୁ ବାବୁଙ୍କର ସବୁ ଲକ୍ଷ୍ୟ କରିବାର ବେଳ ନାହିଁ । ଛଅ ବର୍ଷର  ଶିଶୁକୁ କେନ୍ଦ୍ରକରି ସେ ସେତେବେଳେ ଆଶାର ସୌଧ ଗଢ଼ି ସାରିଥିଲେ -ତାକୁ ସଜାଇବାରେ ସେ ବ୍ୟସ୍ତ । ଗାଁରେ ବଢ଼ିଥିବାରୁ ପୁତ୍ରର ବିକ୍ଷିପ୍ତ କଳ୍ପନାପ୍ରବଣ ମନକୁ ପଢ଼ା ପଢ଼ିରେ ଲଗାଇବାକୁ, ଗାଁର ପିଲାମାନଙ୍କ ସହିତ ମିଶି ଥିବାରୁ-ବିଷ୍ଣୁ ବାବୁଙ୍କ ଆଖିରେ-ଅନେକ ଖରାପ ଗୁଣକୁ ଭଲଆଡ଼େ ନବାକୁ ଏବଂ ଭବିଷ୍ୟତରେ କଟକରେ କୌଣସି ବଜାରି ପିଲାମାନଙ୍କ ସହିତ ଯେପରି ନ ମିଶେ ଏଥିପାଇଁ ସେ ପ୍ରତ୍ୟହ ସକାଳେ ନିୟମିତ ଭାବରେ ଛଅ ବର୍ଷର ଶିଶୁକୁ ବୁଝାଇବାକୁ ଓ ପ୍ରହାର କରିବାକୁ ଲାଗିଲେ ଏବଂ ପୁରାଣର ପିତୃଭକ୍ତିର ନାନା ଗଳ୍ପ କହି ପୁତ୍ରର ମନ ଆକୃଷ୍ଟ କରିବାକୁ ଲାଗିଲେ । କ୍ରମେ କ୍ରମେ ଦୁର୍ଗାପଦ ବଢ଼ି ଉଠିଲା ପିତାଙ୍କ ଅସୀମ ଆଶାର ତାଡନାରେ । ପିତାଙ୍କୁ ହିଁ ସେ ଆଦର୍ଶ ସ୍ଥାନୀୟ କଲା । ଦିନରାତି ପଢ଼ି ସତର ବର୍ଷ ବୟସରେ ପ୍ରଥମ ହୋଇ ସେ ମେଟ୍ରିକୁଲେସନ୍ ପାଶ୍ କଲା । ଯେଉଁଦିନ ପରୀକ୍ଷା ଫଳ ବାହାରିଲା, ସେ ଦିନ ବିଷ୍ଣୁ ବାବୁ ଅଗଣାରେ ଛିଡ଼ା ହେଲେ ଲଡୁ ହାଣ୍ଡି ଧରି । ଆଖି ତାଙ୍କର ସେ ଦିନ ପରି ମଧ୍ୟ ଆଶାର ବହ୍ନିରେ ଉଜ୍ଜ୍ୱଳ ହୋଇ ଉଠିଥିଲା ।

ଜୀବନର ସତରଟି ଆଷାଢ଼ ଏହିପରି ଯିବା ପରେ ଅଷ୍ଟାଦଶ ଆଷାଢ଼ଟି ଆଣିଦେଲା ତା ଜୀବନରେ ଭୂମିକମ୍ପ । ଏତେ ଦିନ ଗୁପ୍ତରେ ତା ମନ ଭିତରେ କି ପ୍ରକ୍ରିୟା ଚାଲିଥିଲା କିଏ ଜାଣେ, ହଠାତ୍ ତାର ସବୁ ଓଲଟ ପାଲଟ ହୋଇଗଲା ।

ସେ ଦିନ ଆଷାଢ଼ର ପହିଲି ମେଘ ଆକାଶରେ ଆଲୋକ ଓ ଅନ୍ଧକାରର ଅପୂର୍ବ ମାୟାଜାଲ ସୃଷ୍ଟି କରିଥାଏ । କଳା ବଉଦର ଗୁରୁ ଗୁରୁ ଗର୍ଜନ ଓ ବିଜୁଳିର ଅପୂର୍ବ ଛଟା ଦେଖି ଦୁର୍ଗାପଦର ମନେ ହେଲା- ପୂର୍ବେ ଏପରି କେବେହେଁ ହୋଇ ନଥିଲା । ଝରକା ପାଖରେ ଛିଡ଼ା ହୋଇ ସେ ଏହି ସଂପୂର୍ଣ୍ଣ ନୂତନ ଶୋଭା ଉପଭୋଗ କରୁଥିଲା । ଧାଡ଼ିଏ ଦୁଗ୍ଧ-ଧବଳ ବଗ କଳାବଉଦ ଦିହରେ ଉଡ଼ିଗଲେ । କାଠଯୋଡ଼ୀ ନଦୀର ଆରପାଖରୁ ବର୍ଷା ନୃତ୍ୟର ଛନ୍ଦରେ ମାଡ଼ି ଆସିଲା । ଘରର ଚାଳ ଉପରେ ବର୍ଷା ପଡ଼ିବାର

ଶବ୍ଦ ସେଦିନ ଦୁର୍ଗାପଦର ମନେ ହେଲା ଅପୂର୍ବ ସଂଗୀତ ପରି। ହଠାତ୍ ତାର ମନଟା ବ୍ୟାକୁଳ ହୋଇ ଉଠିଲା ଗୋଟିଏ ଅପୂର୍ବ ଆନନ୍ଦରେ। ଦେହମନରେ ଅପୂର୍ବ ଶିହରଣ ଜାତ ହେଲା। ହୃଦୟ ଭିତରଟି ଶୂନ୍ୟ ପରି ମନେ ହେଲା। କଅଣ ଗୋଟାଏ ଅଭାବ ! ତାର ମନଟା ଘାରି ହେଲା। ତାର ମନେ ହେଲା କାହାର ଟିକିଏ ସ୍ନେହ ପାଇଲେ ଯେପରି ହୃଦୟର ଏ ଶୂନ୍ୟତା ପୂରଣ ହୋଇଯିବ। ଏହି ସ୍ନେହ ପାଖରେ ପିତାମାତାର ସ୍ନେହ ମନେ ହେଲେ ତୁଚ୍ଛ, ସ୍ୱାର୍ଥପୂର୍ଣ୍ଣ। ଏହି ସ୍ନେହ ପାଇଁ ସେ ପୃଥିବୀରେ ସବୁ ଦୁଃଖ କଷ୍ଟ ସହ୍ୟ କରିବାକୁ ପ୍ରସ୍ତୁତ। କଳ୍ପନାରେ ସେ ଦେଖି ପାରିଲା କିଏ ଯେପରି ଏହି ପ୍ରେମ ଦେବାକୁ ଅପେକ୍ଷା କରି ବସିଚି। ଦୁର୍ଗାପଦ ଆଉ ଘରେ ରହି ପାରିଲା ନାହିଁ। ସାଇକେଲ୍ ଧରି ବାହାରି ପଡ଼ିଲା ତା'ରି ଅନୁସନ୍ଧାନରେ- ରୂପକଥାର ରାଜପୁତ୍ର ଯେପରି ହଠାତ୍ ଦିନେ ସ୍ୱପ୍ନରେ ଦେଖା ରାଜକୁମାରୀର ଅନୁସନ୍ଧାନରେ ପକ୍ଷୀରାଜ ଘୋଡ଼ାରେ ଚଢ଼ି ବାହାରିପଡ଼େ ନିଭୃତରେ, ରାତ୍ରିର ଅନ୍ଧକାରରେ। ପ୍ରଚଣ୍ଡ ବର୍ଷା, କିନ୍ତୁ ଦୁର୍ଗାପଦର ସେଥିପ୍ରତି ଭ୍ରୂକ୍ଷେପ ନାହିଁ। ସେ ଆଜି ପାଇଛି ଗୋଟାଏ ନୂତନ ଆନନ୍ଦ। ସେହି ଆନନ୍ଦରେ ସେ କଟକ ସହରଯାକ ବୁଲିଲା- କସ୍ତୁରୀ ମୃଗ ଯେପରି ନିଜର ଗନ୍ଧରେ ମାତି ବୁଲେ। ଫେରିଲା ଦୁଇଘଣ୍ଟା ପରେ ଗୋଟାଏ ବ୍ୟର୍ଥତାର ବେଦନା ନେଇ।

ପୁତ୍ରର କ୍ଷୀଣ ଶରୀର ସାମାନ୍ୟ ଟିକିଏ ଅସୁସ୍ଥ ହେଲେ ବିଷ୍ଣୁ ବାବୁ ଆତଙ୍କିତ ହୋଇ ପଡନ୍ତି। ପ୍ରଥମ ବର୍ଷାରେ ଦୁର୍ଗାପଦ ଘରେ ନଥିବାର ଦେଖି ପ୍ରଥମେ ତାଙ୍କର ଭାରି ଭୟ ହେଲା। ଫେରିବାର ଯେତେ ଡେରି ହେଲା, ଭୟ କ୍ରମଶଃ କ୍ରୋଧରେ ପରିଣତ ହୋଇ ବଢ଼ିବାକୁ ଲାଗିଲା। ସେ ବାହାରେ ଅପେକ୍ଷା କରିଥିଲେ ରୀତିମତ ଶାସ୍ତି ଦେବାକୁ। ଫେରିବା ମାତ୍ରକେ ସେ ବୃଥା ବାକ୍ୟ ବ୍ୟୟ ନକରି ଦଣ୍ଡ ଦେବାକୁ ଲାଗିଲେ। ଏହା ପୂର୍ବରୁ ଦୁର୍ଗାପଦ ପିତାଙ୍କଠାରୁ ଅନେକଥର ପ୍ରହାର ଖାଇଛି, କେବେ ହେଁ ଅପମାନିତ ବୋଧ କରି ନାହିଁ, ଆଜି ତାର ବ୍ୟକ୍ତିତ୍ୱରେ ଆଘାତ ଲାଗିଲା। ସ୍ୱତନ୍ତ୍ର ଗୋଟାଏ ଘର ନାହିଁ ସେ ନିର୍ଜନରେ ବସି ମନଟା ହାଲୁକା କରି ନେବ। ଘର ଭିତରକୁ ଆସି ସେ ଅଶ୍ରୁ ସମ୍ବରଣ କରି ପାରିଲା ନାହିଁ। ପ୍ରହାର ପାଇଁ ନୁହେଁ- ଗୋଟାଏ ଅନିର୍ଦ୍ଦିଷ୍ଟ ବେଦନାରେ।

ଏହି ବେଦନା ଭିତରେ ମଧ୍ୟ ଗୋଟାଏ ଉଦାହରଣ ଅନୁଭବ କଲା। ଆଜି ତା'ର ମନେ ହେଲା ପୃଥିବୀର ସବୁ ସୁନ୍ଦର। ଟମି କୁକୁରଟା ବର୍ଷେ ହେବ ରହିଲାଣି। ଘୃଣାରେ ସେ ଦିନେ ବି ତା' ଦିହରେ ହାତ ଦେଇ ନାହିଁ। ଆଜି ସେ ତାକୁ ଆଦରରେ କୋଳକୁ ଟାଣିନେଲା। ଦୁର୍ଗାପଦର ଏ ହଠାତ୍ ପରିବର୍ତ୍ତନ ଜଣାନାହିଁ। ସେ ଭୟରେ ଦୁର୍ଗାପଦର ହାତ କାମୁଡ଼ି ଦେଲା। ଅନ୍ୟ କୌଣସି ଦିନ ହୋଇଥିଲେ ତାହାର ପ୍ରାଣ ନଥାନ୍ତା। କିନ୍ତୁ ଆଜି ତାର ସେଥିପ୍ରତି ଭ୍ରୂକ୍ଷେପ ନାହିଁ। ଆଜି ତାକୁ ଯିଏ ଯେତେ ଆଘାତ

କରୁ ନା କାହିଁକି ସେ ପ୍ରେମ ଦେବାକୁ ପ୍ରସ୍ତୁତ। ଦୁର୍ଗାପଦ ଟମିକୁ ଅଧିକ ସ୍ନେହରେ ଟାଣି ନେଲା। ଭଗବାନଙ୍କୁ ପୂଜା କରିବା ଏତେ ଦିନ ଗୋଟାଏ ଅର୍ଥହୀନ ସାମାଜିକ ପ୍ରଥା ବୋଲି ସେ ଜାଣିଥିଲା। ଆଜି କିନ୍ତୁ ତାର ମନେହେଲା ଭଗବାନ ଅନନ୍ତ ପ୍ରେମିକ। ତା'ର ବେଦନାର ସମସ୍ତ ଅଶ୍ରୁ ସେ ଭଗବାନଙ୍କର ଉଦ୍ଦେଶ୍ୟରେ ସମର୍ପଣ କରି କହିଲା "ଭଗବାନ୍, ଏପରି କର ଯେ ତୁମରି ପ୍ରେମରେ ମୁଁ ସର୍ବଦା ବିଭୋର ରହେ। ତୁମର ପ୍ରେମ ପାଇଁ ସବୁ ଦୁଃଖ କଷ୍ଟ ବରଣ କରିବାକୁ ସାହସ ଦିଅ। ମୋର ଅତି ଶତ୍ରୁ ମଧ୍ୟ ସୁଖରେ ରହୁ।" ସେ ଦିନ ସେ ବୁଝିପାରି ନଥିଲା ଯେ ଏହି ବ୍ୟର୍ଥତାର ଔଦାର୍ଯ୍ୟ ଚିରଦିନ ରହିବ ନାହିଁ।

ଜୀବନର ଗୋଟାଏ ନିର୍ଦ୍ଦିଷ୍ଟ ବୟସ ବା ମନର ଗୋଟାଏ ନିର୍ଦ୍ଦିଷ୍ଟ ଅବସ୍ଥା ପର୍ଯ୍ୟନ୍ତ ମନୁଷ୍ୟ ବଢ଼େ ଅନ୍ୟ ଆଦର୍ଶରେ । ଅନ୍ୟ କେହି ତାର ପ୍ରେରଣାର ଉତ୍ସ ଥାଏ। ସାଧାରଣତଃ ପିତାମାତା ହିଁ ଆଦର୍ଶର ସ୍ଥାନ ନିଅନ୍ତି। ତେଣୁ ଏହି ବୟସରେ ଲାଗିଯାଏ ସନ୍ତାନମାନଙ୍କ ମଧ୍ୟରେ ତୀବ୍ର ଦ୍ୱନ୍ଦ୍ୱ ପିତା ମାତାର ସ୍ନେହ ପାଇବା ପାଇଁ । କିନ୍ତୁ ତା' ପରେ ନିଜର ଶିକ୍ଷା, ଦୀକ୍ଷା, ମନ ଅନୁସାରେ ଗଢ଼ିଉଠେ ନିଜର ଆଦର୍ଶ। ସେତେବେଳେ ସେ ବଞ୍ଚିବାକୁ ଚାହେ ନିଜର ତୁଷ୍ଟି ପାଇଁ। ଠିକ୍ ଏହି ସମୟରେ ନିଜର ବ୍ୟକ୍ତିତ୍ୱ ଫୁଟାଇବା ପାଇଁ ଗୋଟାଏ ଅଦମ୍ୟ ଆଗ୍ରହ ହୁଏ। ଯାହାର ଏହି ଆଗ୍ରହଟି ବିକାଶ ପାଇ ନାହିଁ ସେ ଚିରଜୀବନ ରହିଯାଏ ବାଳକ। ଏହି ଆଗ୍ରହ ଭିତରେ ଥାଏ ପୁଣି ପ୍ରକୃତିର ସୃଜନ ପ୍ରକ୍ରିୟାର ଗୁପ୍ତ ସଂକେତ। ନିଜକୁ ସର୍ବାଙ୍ଗସୁନ୍ଦର କରିବାକୁ ସେ ପ୍ରାଣପଣେ ଚେଷ୍ଟା କରେ। ଦୁଃସାହସିକ ଏବଂ ବୀରୋଚିତ କାମ କରିବାରେ ସେ ଅପୂର୍ବ ଆନନ୍ଦ ପାଏ। ଅଳ୍ପ ଦିନ ଭିତରେ ଦୁର୍ଗାପଦର ଅଦ୍ଭୁତ ପରିବର୍ତ୍ତନ ହୋଇଚି। ଦେଖିବାକୁ ସୁଶ୍ରୀ ନ ହେଲେହେଁ ତାକୁ କୁଶ୍ରୀ କହିବା ଚଳେ ନାହିଁ। ଶରୀରର ପ୍ରଧାନ ଦୋଷ ଭିତରେ ମୁହଁଟି ଟିକିଏ ଅସ୍ୱାଭାବିକ ଲମ୍ବା- ତାର ପିତାଙ୍କ ପରି। ଏଥିପାଇଁ ସେ ଭାରି ବିବ୍ରତ ହୋଇ ଅନେକ ସମୟ ଦର୍ପଣ ସାମନାରେ ଆଜିକାଲି କଟାଏ। ପୈତୃକ କ୍ଷୀଣ ଶରୀରଟିକୁ ସୁପୁଷ୍ଟ କରିବା ପାଇଁ ନିୟମିତ ବ୍ୟାୟାମ ଓ ଖେଳ ଆରମ୍ଭ କରିଚି। କିନ୍ତୁ ପୋଷାକ ପରିଚ୍ଛଦ ତା'ର ଚିନ୍ତାର ବିଶେଷ କାରଣ। ବିଷ୍ଣୁ ବାବୁଙ୍କର ମତରେ ଛାତ୍ରଜୀବନରେ ଭଲ ପୋଷାକ ପରିଚ୍ଛଦ, ଖେଳ କସରତ ଛାତ୍ର ମନକୁ ପଢ଼ାପଢ଼ିରୁ ବିଳାସ ଆଡ଼କୁ ଟାଣି ନିଏ। ଦୁର୍ଗାପଦର ବ୍ୟବହାର ପାଇଁ ସପ୍ତାହକୁ ଖଣ୍ଡେ ମୋଟ ଧୋତି ଓ ଖଣ୍ଡେ ସାଧାରଣ କମିଜ, ଯା ନ ହେଲେ ନ ଚଳେ। ଏହାକୁ ପିନ୍ଧି କଲେଜ ଯିବାକୁ ଦୁର୍ଗାପଦର ଭାରି ଲଜ୍ଜା ହୁଏ। ହେଉ ନା ସେ ଦରିଦ୍ର, କିନ୍ତୁ ଏ ରିକ୍ତତା କାହିଁକି ? ଆଜିକାଲି ସେ

ପିତାଙ୍କୁ ଲୁଚାଇ  ସାବୁନରେ ଲୁଗା ପରିଷ୍କାର କରିନିଏ। ପୂର୍ବର ଅବିନସ୍ତ ତୈଳହୀନ ବଡ଼ ବଡ଼ ମୁଣ୍ଡ ବାଳଗୁଡ଼ିକର ମଧ୍ୟ ଆମୂଳ ପରିବର୍ତ୍ତନ ହୋଇଛି। ସେ ଯଥା ସମ୍ଭବ ପିତାଙ୍କୁ ଲୁଚି ଥାଏ। ତାର ମନେ ହୁଏ ତାର ବିକାଶୋନ୍ମୁଖୀ ମନ ଉପରେ ପିତା ଗୋଟିଏ ବଡ଼ ପଥର। ପୁତ୍ରର ପରିବର୍ତ୍ତନ ଯେତେବେଳେ ବିଷ୍ଣୁବାବୁଙ୍କ ଆଖିରେ ପଡ଼େ, ସେତେବେଳେ ସେ ତାକୁ ତୀବ୍ର ଭର୍ତ୍ସନା କରନ୍ତି। ଖେଳାଖେଳି ପାଇଁ ମଧ୍ୟ ଦୁର୍ଗାପଦକୁ କମ୍ ଅପମାନ ସହ୍ୟ କରିବାକୁ ପଡ଼େ ନାହିଁ। ସେ ପତ୍ରପତ୍ରିକାରେ ମଧ୍ୟ କବିତା ଦେବାକୁ ଆରମ୍ଭ କରିଚି। କିନ୍ତୁ ସାହସ କରି କେବେହେଲେ ନିଜର ନାମ ଦେଇ ନାହିଁ। "ପ୍ରେମର କବିତା ଯଦି ପିତା ଦେଖନ୍ତି..." ଭୟରେ ତା'ର ଆଖି ବୁଜି ହୋଇଯାଏ। ବିଷ୍ଣୁ ବାବୁ ଅନେକଥର ବୁଝାଇ କହନ୍ତି, "ଆଗେ ପଢ଼ାପଢ଼ି ସରୁ, ତା ପରେ ସବୁ।" କିନ୍ତୁ ଦୁର୍ଗାପଦ ଗୋଟାଏ ନୂତନ ଶକ୍ତିର ଆନନ୍ଦରେ ପାଗଳ। ପିତାଙ୍କର ଆଦର୍ଶ ତାର କଣ୍ଠରୋଧ କଲେହେଁ ମାରି ଦେବାକୁ ଅକ୍ଷମ।

କିନ୍ତୁ ନାନା ଦୁଃସାହସିକ କାର୍ଯ୍ୟ କଲେ ମଧ୍ୟ ଦୁର୍ଗାପଦ ରାଜକୁମାରୀର ସନ୍ଧାନ ପାଏନାହିଁ। ମଝିରେ ମଝିରେ ତାର ହୃଦୟ ହାହାକାର କରିଉଠେ। ତା'ର ସାଙ୍ଗ ଅନେକ ଅଛନ୍ତି, କିନ୍ତୁ ବନ୍ଧୁ କହିଲେ ଯାହା ବୁଝାଏ, ସେପରି କେହି ନାହାନ୍ତି। ପିତାଙ୍କୁ ତାର ଭୟ। ମା' ବା ଭଉଣୀକୁ ହୃଦୟର ଏ ବ୍ୟାକୁଳତା ଜଣାଇବାକୁ ଲଜ୍ଜା ହୁଏ। ମନକୁ ମନରେ ମାରି ଦୁର୍ଗାପଦ ପ୍ରତୀକ୍ଷାରେ ଦିନ କଟାଏ। ଏ ପ୍ରତୀକ୍ଷା ଯେତେବେଳେ ତାର କଣ୍ଠରୋଧ କରେ ସେତେବେଳେ ଜଗତଟା ମିଥ୍ୟା ମନେ ହୁଏ। ଶଙ୍କରାଚାର୍ଯ୍ୟ ବୁଦ୍ଧଙ୍କର ପନ୍ଥା ହିଁ ଠିକ୍ ଭାବି କେତେବାର ସେ ସନ୍ନ୍ୟାସୀ ହେବାକୁ ଭାବିଚି। କିନ୍ତୁ ପାରିନାହିଁ।

ଅଳ୍ପ ଦିନ ଆଗେ ଦୁର୍ଗାପଦ ସମଗ୍ର ଓଡ଼ିଶାର ସନ୍ତରଣ ପ୍ରତିଯୋଗିତାରେ ପ୍ରଥମ ହୋଇଚି। ପିତାଙ୍କର ଏଥିରେ ଆନନ୍ଦ ନାହିଁ। ଦୁର୍ଗାପଦର ଏ ସବୁ ଯେତେ ବଢୁଚି, ତାଙ୍କର ଆଶା ସେତେ କ୍ଷୀଣ ହୋଇ ଆସୁଚି। ତାଙ୍କର ସର୍ବଦା ଭୟ କାଳେ ଦୁର୍ଗାପଦ ପଢ଼ାପଢ଼ି ଛାଡ଼ି ଅନ୍ୟ ସାଧାରଣ ପିଲାଙ୍କ ଭଳି ଏଥିରେ ହିଁ ମାତିବ। ଦୁର୍ଗାପଦର ମଧ୍ୟ ମନରେ ଦୁଃଖ ନାହିଁ। ଗୋଟିଏ ଅଭାବ ତାର ମନକୁ ସର୍ବଦା ଆଚ୍ଛନ୍ନ କରି ରଖିଥାଏ।

ସେଦିନ ମନର ଏହିପରି ଅବସ୍ଥାରେ ସେ କାଠଯୋଡ଼ି କୂଳରେ ଛିଡ଼ା ହୋଇଥିଲା। ନଦୀରେ ଆସୁଛି ପ୍ରବଳ ବନ୍ୟା। ନଈବନ୍ଧ ଅର୍ଦ୍ଧବୃତ୍ତାକାରରେ ଯେଉଁଠି ନଈ ଭିତରକୁ ପଶି ଯାଇଛି ପାଣି ଧକ୍କା ଲାଗି ସେଠାରେ ଭୟଙ୍କର ଭଉଁରୀ ହୁଏ। କଟକରେ ଏହି ଭଉଁରୀ ଭିତରେ ପହଁରିବାକୁ କେବଳ ଦୁର୍ଗାପଦ ସକ୍ଷମ। ସେ ଯେତେବେଳେ ଏହି ଭଉଁରୀ ଭିତରେ ପହଁରେ, ନଈବନ୍ଧରେ ଲୋକଙ୍କର ଭିଡ଼ ହୁଏ

ତା'ର ଅଦ୍ଭୁତ ସନ୍ତରଣ କୌଶଳ ଦେଖିବାକୁ। ପଶ୍ଚିମ ଆକାଶରେ ଅସ୍ତଗାମୀ ସୂର୍ଯ୍ୟ ଯେଉଁ ଅପୂର୍ବ ଶୋଭାମାନ ସୃଷ୍ଟି କରୁଥିଲା, ସେଥିପ୍ରତି ତା'ର ଲକ୍ଷ୍ୟ ନାହିଁ। ସେ ଭାବୁଥାଏ ନିଜକଥା। ହଠାତ୍ ଦେଖିପାରିଲା ଗୋଟିଏ ବାଳିକା ବୁରୁଜ ଉପରେ ଛିଡ଼ାହୋଇ ପାଣିର ଭୟଙ୍କର ଦୃଶ୍ୟ ଉପଭୋଗ କରୁଅଛି। କିଏ ଜାଣିବାର ଅବସର ବା ଆବଶ୍ୟକତା ନାହିଁ। ସେ ସାଙ୍ଗେସାଙ୍ଗେ ଘରକୁ ଯାଇ ଲୁଗା ବଦଳାଇ ଆସି ଭଉଁରୀ ଭିତରେ ପହଁରିବାକୁ ଲାଗିଲା ଏବଂ ଗର୍ବର ସହିତ ଅନାଇ ଦେଖିଲା ଭୟ ଓ ଆଶ୍ଚର୍ଯ୍ୟରେ ବାଳିକାର ଆଖି ଯୋଡ଼ିକ କିପରି ବିସ୍ଫାରିତ। ସେ ଅଧିକ ଉତ୍ସାହରେ ନାନା କୌଶଳ ଦେଖାଇବାକୁ ଲାଗିଲା। କିନ୍ତୁ ଘଟଣାସ୍ଥଳରେ ଉପସ୍ଥିତ ହେଲା ଗୋପାଳ- ତା'ର ସାଙ୍ଗ। ସୁନ୍ଦର ସୁଶ୍ରୀ ଚେହେରା, ଅସାଧାରଣ ବାକ୍‌ପଟୁ। ପାଣିକୁ ତାର ଛେଳିପରି ଭୟ ହେଲେ ହେଁ ପଶ୍ଚାତ୍‌ପଦ ହେବାର ପିଲା ସେ ନୁହଁ। ଉପରେ ଛିଡ଼ା ହୋଇ ସେ ଦୁର୍ଗାପଦକୁ ନାନା ଉପଦେଶ ଦେବାକୁ ଲାଗିଲା। ତାର କଥାବାର୍ତ୍ତାରେ ସେ ଏପରି ପରିସ୍ଥିତି ସୃଷ୍ଟି କଲା ଯେ, ସମସ୍ତେ ଭାବିଲେ ସେ ଦୁର୍ଗାପଦର ସନ୍ତରଣ ଶିକ୍ଷକ। ଅବସ୍ଥା ବୁଝିପାରି ସେ ଅଧିକ ଭୟପ୍ରଦ କୌଶଳମାନ ଦେଖାଇବାକୁ ଲାଗିଲା। ଗୋଟାଏ ବଡ଼ ଭଉଁରୀରେ ବୁଡ଼ିଯାଇ ଦୁର୍ଗାପଦ ତା' ଭିତରେ ଅନେକ କ୍ଷଣ ରହିଲା। ସମସ୍ତେ ଭୟରେ ଚାହିଁ ରହିଲେ। ଦୁର୍ଗାପଦ ସଗର୍ବେ ଆଉ ଗୋଟିଏ ଭଉଁରୀ ଭିତରେ ପାଣି ଭିତରୁ ବାହାରିଲା ଏବଂ ଅନେଇ ଦେଖିଲା ରାଜକୁମାରୀ ଅପହୃତା ! ଉପରକୁ ଆସି ଦେଖିଲା ଗୋପାଳ ବାଳିକା ସହିତ ହସି ହସି କଥା କହିଯାଉଛି।

ସେଦିନ ରାତିରେ ତା'ର ଭାରି ଜ୍ୱର ହେଲା। ହୃଦୟର ସେହି ଶୂନ୍ୟତା ଯେପରି ତାର କଣ୍ଠରୋଧ କରିବାକୁ ଲାଗିଲା। ମନକଥା କାହାକୁ ନ କହିବା ଯାଏଁ ମନ ଭିତରେ ଲାଗି ରହିଲା। ଗୋଟାଏ ଅସହ୍ୟ ଅସ୍ୱସ୍ତି। କାନ୍ଥରେ ଟଙ୍ଗା ହୋଇଥିବା ଶ୍ରୀକୃଷ୍ଣଙ୍କ ଚିତ୍ର ତାର ନଜରରେ ପଡ଼ିଲା। ମୁହଁରେ ଲାଗି ରହିଚି ଗୋଟିଏ କ୍ଷୁଦ୍ର ହସ। ଏହି କ୍ଷୁଦ୍ର ହସ ଯେପରି ପୋଛିଦେଲା ତା'ର ବେଦନାର ସମସ୍ତ କାଳିମା। ତାର ମନେ ହେଲା ଭଗବାନ ତାର ଯୁଗଯୁଗ ଧରି ବନ୍ଧୁ। ଚିତ୍ରଟି ସାମନାରେ ଥୋଇ ଦୁର୍ଗାପଦ ତାର ବ୍ୟର୍ଥହୃଦୟ ଅଜାଡ଼ି ଦେଲା। ଅନେକଟା ହାଲୁକା ଲାଗିଲା। ସେହିଦିନୁ ଆରମ୍ଭ ହେଲା ତାର ମୂର୍ତ୍ତିପୂଜା।

କିନ୍ତୁ ଯେଉଁ ତୃଷାର ଚିହ୍ନ ତାର ଅନ୍ତରରେ ଜଳିବାକୁ ଆରମ୍ଭ କରିଛି, ତା ସେଥିରେ ଲିଭିବାର ନୁହେଁ। ଦୁର୍ଗାପଦ ବର୍ତ୍ତମାନ କୋଡ଼ିଏ ବର୍ଷର ଯୁବକ। ଯୌବନର ପ୍ରାରମ୍ଭରେ ପ୍ରକୃତିର ସଙ୍କେତ ଅସ୍ପଷ୍ଟ ହେଲେ ହେଁ ବଳବତୀ। ଭାବପ୍ରବଣ ମନ ଏହି ସମୟରେ ଗୋଟିଏ ମାତ୍ର ଆନନ୍ଦକୁ କେନ୍ଦ୍ରକରି ନିଜର ଜୀବନ ଗଢ଼େ। ନଶ୍ୱର ହେଉନା

କାହିଁକି ମନ ଚାହେଁ ନାରୀର ପ୍ରେମ। ସେ ପ୍ରେମ ପୁଣି ଦୁନିଆରେ ଆଉ କାହାପାଇଁ ନୁହଁ। ନିରାକାର ପରମ ବ୍ରହ୍ମଙ୍କର ନିକ୍ତିତଉଲା ପ୍ରେମରେ ସାନ୍ତ୍ୱନା ମିଳିପାରେ, ଆନନ୍ଦର ମାଦକତା ନାହିଁ।

ଆଶା, ପ୍ରତୀକ୍ଷାରେ ଦୁର୍ଗାପଦର ଚାରିବର୍ଷ ଚାଲିଗଲା। ଏତିକି ଟିକିଏ ଅଭାବ ଯୋଗୁ ତା'ର ସବୁ ଦିଗରେ ସାଫଲ୍ୟ ନିରର୍ଥକ ମନେ ହେଲା। ଯାହାପାଇଁ ସେ ଘର ସୁନ୍ଦର ଭାବରେ ସଜାଇବାକୁ ଲାଗିଥିଲା ସେ ଆସିଲା ନାହିଁ। ଶୂନ୍ୟତାରେ, ବେଦନାରେ ତା'ର ମନ ମଝିରେ ମଝିରେ ବ୍ୟାକୁଳ ହୋଇଉଠେ। ଦୁର୍ଗାପଦ ଯେଉଁ ଦିନ ଅନର୍ସ ସହିତ ବି.ଏ.ପାଶ୍ କଲା, ସେଦିନ ମଧ୍ୟ ବିଷ୍ଣୁ ବାବୁ ହାତରେ ଲଡ୍ଡୁ ହାଣ୍ଡି ଧରି ଅଗଣାରେ ଛିଡ଼ା ହେଲେ। ତାଙ୍କର ଆଶା ପୂର୍ଣ୍ଣ ହେବାକୁ ଆଉ ବେଶୀ ଡେରି ନାହିଁ। ଉତ୍ତେଜନାରେ ତାଙ୍କର ଆଖି ଯୋଡ଼ିକ ସେଦିନ ମଧ୍ୟ ଉଜ୍ଜ୍ୱଳ ହୋଇ ଉଠିଥିଲା।

ଦୁର୍ଗାପଦର ଇତି ମଧ୍ୟରେ କିନ୍ତୁ ଅନେକ ପରିବର୍ତ୍ତନ ହୋଇଛି। ନିଜର ବିଗତ ଜୀବନ କଥା ଭାବୁ ଭାବୁ ଦୁର୍ଗାପଦ ଦିନେ ଚମକି ଉଠିଲା। ଏତେ ଦିନ ସେ କଠୋର ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲା। ପିତାଙ୍କର ଓ ନିଜର ଅତ୍ୟଧିକ ଦମନ ଯୋଗୁଁ ଧୀରେ ଧୀରେ ତାର ଭିତରେ ଯୌନବିକାର ସହ ନାନା ମାନସିକ ବିକୃତି ମୁଣ୍ଡ ଟେକିବାର ଦେଖି ଦୁର୍ଗାପଦ ହତୋତ୍ସାହ ହୋଇପଡ଼ିଲା। ଆଗର ସହଜସରଳ ମନ ଆଉ ତା'ର ନାହିଁ। ହିଂସା, ଅବିଶ୍ୱାସ, କଳହପ୍ରିୟତା, ଈର୍ଷା, ଆଳସ୍ୟ, ଲୋଭ ଆଦି ଧୀରେଧୀରେ କେତେବେଳେ ଯେ ପ୍ରବେଶ କଲେ ସେ ଏ ପର୍ଯ୍ୟନ୍ତ ବୁଝିପାରି ନଥିଲା। ସେ ଚମକି ଯେତେବେଳେ ନିଜର ସ୍ୱରୂପ ଦେଖିଲା, ସେତେବେଳେ ସେ ଗୋଟିଗୋଟି କରି ମନର ସବୁ ଦୁଆର ବନ୍ଦ କରି ଦେବାକୁ ଚେଷ୍ଟା କଲା। ମନର ସରଳ ସହଜ ଗତିକୁ ସେ କଣ୍ଠରୋଧ କରି ମାରିଦେବାକୁ ବସିଲା। ଯେଉଁ କାର୍ଯ୍ୟ ତାର ପିତା ଏତେ ଦିନ କରି ଆସୁଥିଲେ ନିଜ ଅଜ୍ଞାତରେ ସେ କାର୍ଯ୍ୟଗୁଡ଼ିକୁ ନିଜେ କରିବାକୁ ଆରମ୍ଭ କଲା। ବାହାର ସହିତ ଆଉ କୌଣସି ସମ୍ପର୍କ ରଖିଲା ନାହିଁ। ମୁଣ୍ଡର ବାଳଗୁଡ଼ିକ ଲଣ୍ଡା କରି ସେ ପିନ୍ଧିଲା ଖଣ୍ଡେ ମୋଟା ଧୋତି ଓ ମଇଳା ଚାଦର। ଭୟରେ ସମସ୍ତ ବିଳାସ ସେ ତ୍ୟାଗ କଲା। ମନର ଦୁର୍ବଳତା ଯେତେ ବଢ଼ିବାକୁ ଲାଗିଲା, ତାର ଅନୁଷ୍ଠାନ ସେତେ ବଢ଼ିବାକୁ ଲାଗିଲା। ବିଷ୍ଣୁ ବାବୁ ପୁତ୍ରର ପରିବର୍ତ୍ତନ ଦେଖି ଆନନ୍ଦିତ ହେଲେ। କିନ୍ତୁ ବରଦା ଦେବୀ ଭୟରେ କହିଲେ 'ଶୁଣୁଚ, ପୁଅକୁ ବାହା କରିଦିଅ, ନ ହେଲେ ସେ ଦଣ୍ଡ କମଣ୍ଡଳୁ ଧରି ବାହାରି ଯିବ।' ବିଷ୍ଣୁ ବାବୁ ହସି କହିଲେ, "ପାଗଳ ହେଲ। ପଢ଼ାପଢ଼ି ସମୟରେ ମନ ଏସବୁ ଆଡ଼େ ଯିବା ଭଲ। ପଢ଼ାପଢ଼ି ସରିଲେ ରୋଜଗାର କଲେ ମନ ଫେରାଇବାକୁ କେତେକ୍ଷଣ ଲାଗିବ।"

ଏତେ କରି ମଧ୍ୟ ଦୁର୍ଗାପଦ ନିଜ ଅନ୍ତରର ଇଚ୍ଛାକୁ ଲୋପ କରି ପାରିଲା ନାହିଁ। ଗୋଟିଏ ଇଚ୍ଛା ବହୁ ବିକୃତ ରୂପଧରି ସୂଚୀବିଦ୍ଧ କରିବାକୁ ଲାଗିଲା। ଦୁର୍ଗାପଦର ନିଜ ଉପରେ ଭୀଷଣ ଘୃଣା ଜାତ ହେଲା ଏବଂ ଏହା ପ୍ରତିଫଳିତ ହେଲା ପୃଥିବୀ ଉପରେ। ବିଫଳ ହୋଇ ସେ ଭାବିଲା ବିବାହ କଲେ ତା'ର ସବୁ ବିକୃତି ଚାଲିଯିବ। ନିଜର ଅଭିପ୍ରାୟ ସେ ପ୍ରକାରାନ୍ତରେ ପ୍ରକାଶ କଲା। ବରଦା ଦେବୀ ଭୟରେ ପ୍ରସ୍ତାବଟା ସ୍ୱାମୀଙ୍କ ଆଗରେ ଥୋଇଲେ ଏବଂ ବହୁ ଗଞ୍ଜଣା ସହ୍ୟ କରି ଫେରିଲେ। ଦୁର୍ଗାପଦଙ୍କୁ ମଧ୍ୟ ଅନେକ ଅପମାନ ସହି 'ବାହାପାଗଳ' ଦୁର୍ନାମ ସହ୍ୟ କରିବାକୁ ପଡ଼ିଲା।

ନିରାଶ ହୋଇ ସେ ସ୍ଥାନ ପରିବର୍ତ୍ତନ ପାଇଁ ବ୍ୟାକୁଳ ହୋଇ ଉଠିଲା। ପିତାଙ୍କୁ ଅନେକ ବୁଝାଇ ସେ ଗଲା ପାଟନା ଏମ୍.ଏ., ବି.ଏଲ୍. ପଢ଼ିବାକୁ। ବିଷ୍ଣୁବାବୁ ନିଜର ଓ ପରିବାରର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରି ତାଙ୍କର ସାମାନ୍ୟ ଆୟର ତିନି ଭାଗରୁ ଦୁଇଭାଗ ପଠାଇଲେ ପୁତ୍ର ପାଖକୁ। ପାଟଣା ଆସି ପ୍ରଥମେ କେତେଦିନ ଅବଶ୍ୟ ଭଲ ଲାଗିଲା, କିନ୍ତୁ ଅଳ୍ପଦିନ ପରେ ତାର ଅନ୍ତରର ବୁଭୁକ୍ଷା ପୁଣି ଦେଖାଦେଲା। ଏତେଦିନ ନିଜ ସହିତ ଯୁଦ୍ଧ କରି ତାର ଶରୀର ଭାଙ୍ଗି ପଡ଼ିଥିଲା। ଆଉ ଯୁଦ୍ଧ କରିବାର ତା'ର ଶକ୍ତି ଓ ପ୍ରେରଣା ସେ ହରାଉଚି। ଏଥର ସେ ନିଜକୁ ଭସାଇ ଦେଲା ପ୍ରବୃତ୍ତିର ସ୍ରୋତରେ। ତାର ମନ ଯୁକ୍ତି କଲା, "ଯୌନ ପ୍ରବୃତ୍ତି, କ୍ଷୁଧା ଓ ତୃଷ୍ଣାଭଳି ଗୋଟିଏ ଶାରୀରିକ ପ୍ରବୃତ୍ତି। ପ୍ରେମ ଏହି ପ୍ରବୃତ୍ତିର ନାମାନ୍ତର ମାତ୍ର। ଅତଏବ ଏ ମୌଳିକ ପ୍ରବୃତ୍ତିଟି ଚରିତାର୍ଥ ହେଲେ ତାହାର ଏ ନିର୍ମମ ଦୁର୍ବଳତା ଚାଲିଯିବ।"

ଦିନେ ଗୋଟିଏ ସାଙ୍ଗ ସହିତ ସେ ଗଲା ବେଶ୍ୟା ଘରକୁ। ଅପରିଷ୍କାର, ଅସ୍ୱାସ୍ଥ୍ୟକର ପରିସ୍ଥିତି ମଧ୍ୟରେ ଗୋଟିଏ ପ୍ରୌଢ଼ା ବେଶ୍ୟା। ବନ୍ଧୁ ବୟସ ବିଷୟରେ ପଚାରିବାରୁ ବେଶ୍ୟାଟି ଯାହା କଲା ସେଥିରେ ଅତି ବଡ଼ କାମୁକର ମଧ୍ୟ ବିତୃଷ୍ଣା ହେବ। ବେଶ୍ୟାଟି ନିଜ ବକ୍ଷ ଉନ୍ମୁକ୍ତ କରି ପ୍ରମାଣ କରିବାକୁ ଲାଗିଲା "ଏହା ପାଇଁ ଦାୟୀ କିଏ ? ସମାଜ ନା ଏମାନଙ୍କର ଯୌନାଭିଳାଷ, ନା ଉଭୟ ?" କିନ୍ତୁ ଯେଉଁ ଘଟଣାଟି ତା' ମନକୁ ବିତୃଷ୍ଣା ଆଣିଦେଲା, ତାହା ପୁଣି ବନ୍ଧୁକୁ ଅଧିକ କାମୋନ୍ମତ୍ତ କଲା। କିଛି କ୍ଷଣ ପରେ ସେ ଚମକି ପଡ଼ି ଶୁଣିଲା, "ତୁ ଯିବୁ ନାହିଁ ?" 'ନା' –ଦୁର୍ଗାପଦ ଘୃଣାରେ ଆଉ କିଛି କହି ପାରିଲାନାହିଁ। ନିର୍ଲ୍ଲଜ ଭାବରେ ତା'ର ବନ୍ଧୁ ହସି କହିଲା, "ପ୍ରଥମରେ ଏହିପରି ହୁଏ। ଆଉ ଦୁଇ ତିନିଥର ଆସିଲେ ଠିକ୍ ହୋଇଯିବ।" ଦୁର୍ଗାପଦ ସେଦିନ ଘୃଣାରେ ମୁହଁ ଘୂରାଇ ନେଇଥିଲା ସେଦିନ ସେ ବୁଝିପାରି ନଥିଲା ଯେ ଏ ଘଟଣାଟି ତା'ର ଅଜ୍ଞାତରେ ଶିକ୍ଷା ଓ ରୁଚିର ବାହ୍ୟ ଆବରଣ ଭେଦ କରି ସ୍ପର୍ଶ କରିଛି ମନର ଗୋଟିଏ ନିଗୂଢ଼ ସ୍ତରକୁ। ମନର ଗହ୍ୱରରେ ଥିବା ଇଚ୍ଛାଗୁଡ଼ିକ ପ୍ରଚଣ୍ଡ ଶକ୍ତିରେ ସବୁ

ବାଧା ଠେଲି ବାହାରକୁ ବାହାରି ଆସିଲେ। ଦୁର୍ଗାପଦ ନାନା ବିଳାସରେ ନିଜକୁ ବୁଡ଼ାଇ ଦେଲା। ଯେଉଁ ଯୌନ ଜ୍ଞାନ ତାର ପାଇବାର ଉଚିତ ଥିଲା ସୁନ୍ଦର ସ୍ୱାସ୍ଥ୍ୟକର ପରିସ୍ଥିତିରେ ତାହା ସେ ପାଇଲା ଅତି ଅସ୍ୱାସ୍ଥ୍ୟକର ପରିସ୍ଥିତିରେ। ଏହି ଯୌନକ୍ରିୟା ପ୍ରତି ତାର ଯେଉଁ କୁତ୍ସିତ ଧାରଣା ଜନ୍ମିଲା, ତାହା ଚିରଦିନ ରହିଗଲା।

ଦୁର୍ଗାପଦର ଚିନ୍ତା ପିଲାଦିରୁ ଅନ୍ତର୍ମୁଖୀ। ଦିନେ ଗଙ୍ଗା କୂଳରେ ଏକା ବସି ଭାବୁ ଭାବୁ ସେ ପୁଣି ଚମକି ଉଠିଲା। ଭଗବାନଙ୍କୁ ଭାବି ବା ପ୍ରାର୍ଥନା କରି ସେ ଆଜିକାଲି ସାନ୍ତ୍ୱନା ପାଏ ନାହିଁ। ତା'ର ଦୃଢ଼ ବିଶ୍ୱାସ ଜନ୍ମିଛି ଭଗବାନ ବ୍ୟର୍ଥ ଏବଂ ଭୀତ ମାନବର କଳ୍ପନା। ସେ ପାଟନାରୁ ପୁଣି କଟକ ପଳାଇ ଆସିଲା। ଦୁର୍ଗାପଦର ମାମୁ ଥାନ୍ତି ପାଟନାରେ। ବିଷ୍ଣୁ ବାବୁ ତାଙ୍କଠାରୁ ସବୁ ଶୁଣି ସାରିଥିଲେ। ସ୍ଥିର ଦୃଷ୍ଟିରେ କେବଳ ଚାହିଁ ରହିଲେ। କ୍ରୋଧ ଏବଂ ହତାଶାରେ ତାଙ୍କର ମୁହଁରୁ କଥା ବାହାରିଲା ନାହିଁ। ଥରେ ଭାବିଲେ ଆଶା ଯେତେବେଳେ ଗଲା ସେତେବେଳେ ପୁତ୍ରରେ ପ୍ରୟୋଜନ କଅଣ। କିନ୍ତୁ ତଦପି ନ ମୁଞ୍ଚତି ଆଶାବାୟୁଃ। ଉଦ୍ୟତ କ୍ରୋଧକୁ ଚାପିରଖି ଦୁର୍ଗାପଦକୁ ପୁଣି ବୁଝାଇବାକୁ ଲାଗିଲେ। ଦୁର୍ଗାପଦ ଯେ ବୁଝିଲା ତା ନୁହଁ। ପିତାଙ୍କର ଆଶା ଭାଣ୍ଡ ଉପରେ ତା'ର ଦୟା ହେଲା। ନିଜର ବ୍ୟର୍ଥତା ପାଇଁ ମରଣୋନ୍ମୁଖୀ ପିତାଙ୍କୁ କଷ୍ଟ ଦେଇ ଲାଭ କଅଣ ? ପୁଣି ସେ ପଢ଼ା ପଢ଼ିରେ ମନ ଦେଲା, ନିଜକୁ ଭୁଲାଇ ରଖିବାକୁ। ସେ ନିଜକୁ ହଜାଇ ଦେଲା ନାନା କର୍ମରେ। ସାହାଯ୍ୟ ସମିତି, ସାହିତ୍ୟ ସମିତି, ବ୍ୟାୟାମ ବିଦ୍ୟାଳୟ ଆଦି ନାନା କର୍ମରେ ସେ ନିଜକୁ ବୁଡ଼ାଇ ରଖିଲା। ବିଷ୍ଣୁ ବାବୁଙ୍କୁ ଏସବୁ ଭଲ ଲାଗୁ ନଥିଲେ ମଧ୍ୟ ସେ ବୁଝିପାରି ଥିଲେ ପୁତ୍ରର ଯଥେଷ୍ଟ ବୟସ ହୋଇଚି। ଓକିଲାତି ପାଶ୍ ହେଲା। କିନ୍ତୁ ବିଷ୍ଣୁ ବାବୁ ଆଉ ବଞ୍ଚିଲେ ନାହିଁ। ବୟସ ତାଙ୍କର ଯଥେଷ୍ଟ ହୋଇଥିଲା। ତାଙ୍କର ଆଶା ନାନା ବ୍ୟର୍ଥତାରେ ଭାଙ୍ଗି ପଡ଼ିଥିବା ଶରୀରକୁ ଆଉ ବେଶୀ ଦିନ ଟାଣି ନେଇପାରିଲା ନାହିଁ। ଯେଉଁଦିନ ପରୀକ୍ଷା ଫଳ ବାହାରିଲା, ସେଦିନ ଖବର ପାଇବା ପରେ ସେ ପ୍ରାଣ ତ୍ୟାଗ କଲେ। ମୃତ୍ୟୁ ସମୟରେ ତାଙ୍କର ଆଖି ଦିଓଟି ଅମରତ୍ୱର ଆଶାରେ ଉଜ୍ଜ୍ୱଳ ହୋଇ ଉଠିଥିଲା। ସେ ଦୁର୍ଗାପଦ ମୁହଁକୁ ଚାହିଁ ଚାହିଁ ଶେଷ ନିଶ୍ୱାସ ଛାଡ଼ିଲେ। ମରିବା ଆଗରୁ ସେ ଦୁର୍ଗାପଦ ଉପରେ ଆଶୀର୍ବାଦର ବୋଝ ଲଦି ଦେଇଗଲେ।

ଆଶୀର୍ବାଦ ସହିତ ଯେଉଁ ଋଣର ବୋଝ ମଧ୍ୟ ଲଦା ହେଲା, ସେଥିରେ ଦୁର୍ଗାପଦର ଆଉ ଓକାଲତି କରିବା ହେଲା ନାହିଁ। ଋଣର ଅଧିକାଂଶ ଖରଚ ହୋଇଥିଲା ଦୁର୍ଗାପଦ ପଛରେ। ତେଣୁ ଋଣ ଓ ପନ୍ଦର ଜଣବିଶିଷ୍ଟ ଗୋଟିଏ ପରିବାରର ଭାର ପଡ଼ିଲା ଦୁର୍ଗାପଦର ଦୁର୍ବଳ ଓ ଅନଭିଜ୍ଞ କାନ୍ଧ ଉପରେ। ନିଜର ସେ ସ୍ୱାସ୍ଥ୍ୟ ଓ କର୍ମ ପ୍ରେରଣା ନାହିଁ। ସେଥିରେ ଯୋଗ ହେଲା ଅର୍ଥଚିନ୍ତା। ତାର ହୃଦୟରେ ଯେଉଁ ନିଆଁ

ଜଳୁଥିଲା, ତାହା ତାକୁ ତିଳେ ତିଳେ ଦଗ୍ଧ କରୁଥିଲା। ଏହି ସମୟରେ ଦାରିଦ୍ର୍ୟର ବିକଟ ରୂପ ଆଖି ସାମନାରେ ଦେଖି ସେ ଆତଙ୍କିତ ହୋଇ ଉଠିଲା। ପିତାର ମୃତ୍ୟୁର ମାସକ ଭିତରେ ତାର ବୟସ ଦଶବର୍ଷ ଆଗେଇ ଯାଇଚି। ଦର୍ପଣ ସାମନାରେ ଛିଡ଼ା ହୋଇ ଅଣତ୍ରିଶ ବର୍ଷର ଯୌବନ ଦେଖି ତାହାର ଲଜ୍ଜା ହେଲା। ପ୍ରକୃତି କିନ୍ତୁ ନିର୍ମମ। ଏତେ କଷ୍ଟରେ ମଧ୍ୟ  ତାହାର ନାକ ଦଉଡ଼ି କୋହଳ ହୋଇ ନାହିଁ। ଗୁପ୍ତରେ ସେ ତାର କାର୍ଯ୍ୟ କରି ଚାଲିଚି। ଦୁର୍ଗାପଦ ବର୍ତ୍ତମାନ ବୈଶିଷ୍ଟ୍ୟ ଆଣିବାକୁ ଲାଗି ପଡ଼ିଲା ତାର ଜ୍ଞାନରେ। ଲେଖାଲେଖି ସେ ଅନେକ ଦିନ ଆଗରୁ ଛାଡ଼ି ଦେଇଥିଲା। ପୁଣି ଆରମ୍ଭ କଲା। ନାନା ବହି ପଢ଼ି ସେ ଜ୍ଞାନ ବୃଦ୍ଧି କରିବାକୁ ଲାଗିଲା, ତାହାର ଜ୍ଞାନ ଓ ସ୍ୱାଧୀନ ଚିନ୍ତାଧାରା ପାଇଁ ସେ କିଛି ସୁଖ୍ୟାତି ମଧ୍ୟ ଲାଭ କଲା। ସଭାସମିତିରେ ବକ୍ତୃତା ଦେଇ କରତାଳି ଉପଭୋଗ କରିବାରେ ସେ ଗୋଟାଏ ମାଦକତା ଅନୁଭବ କଲା। ଯେଉଁ ବୈଶିଷ୍ଟ୍ୟ ଫୁଟାଇବାରେ ତାର ଗୋଟିଏ ନାରୀକୁ ଆକୃଷ୍ଟ କରିବା ଉଦ୍ଦେଶ୍ୟ ଥିଲା, ତାହା ବିକୃତ ହୋଇ ବର୍ତ୍ତମାନ ବ୍ୟାପକ ପ୍ରଶଂସା ଏବଂ ବହୁଲୋକ ଉପରେ ପ୍ରଭାବ ବିସ୍ତାର  ପ୍ରତି ମୋହରେ ପରିଣତ ହେଲା।

ଭାରତର ସ୍ୱାଧୀନତା ସଂଗ୍ରାମ ସେତେବେଳେ ତୀବ୍ର ଆକାର ଧାରଣ କରିଥାଏ। ଦ୍ୱିତୀୟ ମହାଯୁଦ୍ଧରେ ପଶ୍ଚିମ ପଟେ ଇଂରେଜମାନଙ୍କର ପରାଜୟ ଯେତେ ହାସ୍ୟକର ହେଉଥାଏ, ଭାରତରେ ସେମାନଙ୍କ ଶାସନ ସେତେ ନିର୍ମମ ହେଉଥାଏ। ଶାସନ ଚାଲିଥାଏ ସେତେବେଳେ ବନ୍ଧୁକ ମୁନ ଓ ଅର୍ଡ଼ିନାନସ ଦ୍ୱାରା। ସବୁ ନେତାମାନେ ଥାଆନ୍ତି ଜେଲରେ। ଭାରତୀୟମାନଙ୍କ ଅପମାନ ପହଞ୍ଚିଥାଏ ଚରମ ସୀମାରେ। ଦୁର୍ଗାପଦକୁ ଏ ଅପମାନ ଯେତେବେଳେ ଅସହ୍ୟ ବୋଧହେଲା ସେ ସ୍ୱାଧୀନାତା ସଂଗ୍ରାମରେ ଯୋଗ ଦେବାକୁ ଚାହିଁଲା।

ଘରେ ତା'ର ଉଦ୍ଦେଶ୍ୟ ଜଣାଇଲା। ସମସ୍ତେ ସମସ୍ୱରେ କ୍ରନ୍ଦନ କରି ଉଠିଲେ । ବରଦା ଦେବୀ ଭୀରୁ ଭିରୁ। ଦୁର୍ଗାପଦ ପିତାର ତୀକ୍ଷ୍ଣ ବୃଦ୍ଧି ସହିତ ପାଇଛି ମାତାର ଭୀରୁତା। ବରଦା ଦେବୀ କାନ୍ଦି କାନ୍ଦି କହିଲେ, "ଆମ ଆଡ଼କୁ ନ ଚାହିଁ ତୋର ବାପା ଯେ ଏତେ ଖର୍ଚ୍ଚ କଲେ, ତାହା କଅଣ ଏଇଥିପାଇଁ? ଯାହାର ଏତିକି ଟିକିଏ କର୍ତ୍ତବ୍ୟବୋଧ ନାହିଁ। ସେ କଅଣ ଯିବ ଦେଶର କାମ କରିବାକୁ।"

ଦୁର୍ଗାପଦ ବିରତ ହେଲା। ନିଜ ଅକ୍ଷମତା ଉପରେ ରାଗି ଦିନେ ସେ ଗୋଟାଏ କାଣ୍ଡ କରି ବସିଲା। ସାମାନ୍ୟ କାରଣରେ ସେ ଜଣେ ଉଚ୍ଚପଦସ୍ଥ ଇଂରେଜ କର୍ମଚାରୀଙ୍କୁ ପ୍ରହାର କଲା, ଅବଶ୍ୟ ଦୋଷ ଥିଲା କର୍ମଚାରୀଙ୍କର। ଯେତେବେଳେ ଅନ୍ୟ ସମସ୍ତେ ଓ ଦୁର୍ଗାପଦ ଭାବିଲା ଯେ ଭବିଷ୍ୟତ ନଷ୍ଟ ହୋଇଗଲା, ସେତେବେଳେ ସେ ପାଇଲା ସେହି

କର୍ମଚାରୀଙ୍କଠାରୁ କ୍ଷମା ପ୍ରାର୍ଥନାର ଚିଠି । କିନ୍ତୁ ଏହି ଘଟଣା ପାଇଁ ଦୁର୍ଗାପଦର ଚାକିରି ମିଳିବା ଅସମ୍ଭବ ହୋଇଗଲା । କୌଣସି ଭାରତୀୟ-ସରକାରୀ ବା ବେସରକାରୀ କର୍ମଚାରୀ ତାକୁ ସାମାନ୍ୟ ଖଣ୍ଡେ ଚାକିରି ଦେଲେ ନାହିଁ । ଘରର ଆର୍ଥିକ ଅବସ୍ଥା ଏପରି ଯେ ଭିକ୍ଷା ବୃତ୍ତି କରିବାକୁ ଆଉ ଡେରି ନଥାଏ । ସ୍ତ୍ରୀ ଓ ବାଳକ ବାଳିକା ନେଇ ପନ୍ଦର ଜଣ ବିଶିଷ୍ଟ ଗୋଟିଏ ପରିବାର । ସ୍ତ୍ରୀମାନଙ୍କର ଏପରି କୌଣସି ଗୁଣ ନାହିଁ ଯେ, ଅର୍ଥୋପାର୍ଜନରେ ସାହାଯ୍ୟ କରିବେ । ଦୁର୍ଗାପଦ ସମସ୍ତ ଲଜ୍ଜା ଓ ଉଚ୍ଚାଶା ତ୍ୟାଗ କରି ଚାକିରି ଅନୁସନ୍ଧାନରେ ବୁଲିବାକୁ ଲାଗିଲା । ସବୁଠୁଁ ବଳି ତାକୁ ଅପମାନ ଲାଗିଲା, ଏ କଥା ଦେଖି ଯେ ଯେଉଁ କନ୍ୟା ପିତାମାନେ ବିଷ୍ଣୁ ପ୍ରସାଦ ବାବୁ ବଞ୍ଚିଥିବା ସମୟରେ ବାରମ୍ବାର ବିବାହ ପ୍ରସ୍ତାବ ସହ ନାନା ପ୍ରଲୋଭନ ଦେଖାଉଥିଲେ, ସେମାନେ ଏ ଦୁର୍ଦ୍ଦିନରେ ଥରେ ଚାହିଁଲେ ବି ନାହିଁ । ସମାଜ ଓ ଦେଶର ଲୋକମାନଙ୍କ ପ୍ରତି ତାର ଯେଉଁ ବିଦ୍ୱେଷ ଜାତ ହେଲା, ତାହା ରହିଗଲା ନିଜକୁ ବଡ଼ ଦେଖାଇବାକୁ ଯାଇ ବାହାରେ ଯେତେ ଦେଶପ୍ରେମିକତା ଦେଖାଉ ବା ଭାରତୀୟମାନଙ୍କର ପ୍ରଶଂସା କରୁନା କାହିଁକି, ଶେଷରେ ଚାକିରି ଦେଲେ ଜଣେ ଇଂରେଜ ।

ସାମାନ୍ୟ ପଇଁତିରିଶ ଟଙ୍କାର ଚାକିରି ହେଉ ପଛେ ଘରେ ସମସ୍ତେ ନିଃଶ୍ୱାସ ମାରିଲେ । ଦୁର୍ଗାପଦ କିନ୍ତୁ ଭାଙ୍ଗି ପଡ଼ିଲା । ମଇଦା ସହିତ ତେନ୍ତୁଳି ମଞ୍ଜିର ଗୁଣ୍ଡ, ଚିନି ସହିତ କାଚଗୁଣ୍ଡ, ତେଲ ସହିତ ପାଣି, ଘିଅ ସହିତ ଚର୍ବି ଓ ଅନ୍ୟାନ୍ୟ ନାନା ନୂତନ ଆବିଷ୍କାରରେ କୋଟିକୋଟି ଟଙ୍କା ଲାଭ କରି ମଧ୍ୟ ବ୍ୟବସାୟୀମାନଙ୍କ ପିପାସା ମେଣ୍ଟୁ ନଥାଏ । ଜିନିଷର ମୂଲ୍ୟ ସହିତ ଅନେକେ ଯେତେବେଳେ ଉର୍ଦ୍ଧ୍ୱଗାମୀ ହେଉଥାଆନ୍ତି, ସେତେବେଳେ ବ୍ୟବସାୟୀମାନେ ମନ୍ଦିର, ଧର୍ମଶାଳା ଓ ଦାନ ଆଦି ନାନା ଅନୁଷ୍ଠାନ ଦ୍ୱାରା ଧାର୍ମିକତାର ପ୍ରମାଣ ଦେଇ ଦେଶରେ ପୂଜ୍ୟ ହେଉ ଥାଆନ୍ତି । ଘରେ ଯାହା ସାମାନ୍ୟ କେତେ ଖଣ୍ଡ ଅଳଙ୍କାର ଓ ଜମି ଥିଲା, ତାହା ବିକ୍ରୟ ହୋଇଗଲା । ଦୁର୍ଗାପଦ ତଥାପି ଆଦର୍ଶଭ୍ରଷ୍ଟ ହୋଇ ନାହିଁ । କିନ୍ତୁ ଋଣଦାତାମାନେ ଯେତେବେଳେ ଦାଣ୍ଡରେ ଅପମାନ କରିବାକୁ ଛାଡ଼ିଲେ ନାହିଁ ସେତେବେଳେ ଦୁର୍ଗାପଦ ଟିକିଏ ଭାବି ବସିଲା । ଯେଉଁଠି ତାର ଚାକିରି ସେଠି ଘୁଷ୍ ନେବାର ଯଥେଷ୍ଟ ସୁବିଧା ଥିଲେ ମଧ୍ୟ ସେ ଦିନେ ହେଲେ ଲୋଭ କରି ନାହିଁ । କିନ୍ତୁ ଅବସ୍ଥା ଏପରି ହେଲା ଯେ, ମାତ୍ର ଚାରିଅଣା ନେବାକୁ ସୁଦ୍ଧା ତା'ର ବିବେକକୁ ବାଧିଲା ନାହିଁ । ମନ ତାର ଯୁକ୍ତି କଲା, 'ଆଦର୍ଶ ବୋକାମିର ନାମାନ୍ତର ମାତ୍ର । ତା'ର ମଧ୍ୟ ବଞ୍ଚିବାର ଅଧିକାର ଅଛି । ଏ ଯୁଗରେ ଯଦି ବଞ୍ଚିବାର ଉପାୟ ଏହାହିଁ ହୁଏ, ସେ କାହିଁକି ସେ ଉପାୟ ନ କରିବ ।"

କିନ୍ତୁ ପୁଣି ଦିନେ ସବୁ ଓଲଟପାଲଟ ହୋଇଗଲା ଯେତେବେଳେ ବିମଳାକାନ୍ତ

ବାବୁ ତାଙ୍କ ସୁନ୍ଦରୀ କନ୍ୟା ସହ ଦୁର୍ଗାପଦର ଘରର ଗୋଟିଏ ପାଖରେ ଭଡ଼ା ନେଇ ରହିଲେ। ବାଣୀର ଉଚ୍ଚ କୁଚ, ବର୍ତ୍ତୁଳ ନିତମ୍ବ ଉପରେ ନର୍ତ୍ତିଳ କେଶଗୁଚ୍ଛ, ଅପାଙ୍ଗ, ଚାହାଣି, ଲାସ୍ୟମୟ ଗମନ ତାକୁ ଦୁର୍ବାର ଶକ୍ତିରେ ଆକର୍ଷଣ କରିବାକୁ ଲାଗିଲା। ତାର ପ୍ରତି ପଦକ୍ଷେପରେ ଦୁର୍ଗାପଦ ପ୍ରତ୍ୟେକ ଧମନୀରେ ରକ୍ତ ଗରମ ହୋଇ ଉଠିଲା। ସେ ଅନୁଭବକଲା ଯେପରି ତାର ମସ୍ତିଷ୍କ ଉପରେ ରକ୍ତର ଚାପ ବୃଦ୍ଧି ପାଇଛି। ଯୌବନର ପ୍ରାରମ୍ଭରେ ହୃଦୟରେ ଏହିପରି ବେଦନା ସେ ଅନୁଭବ କରିଥିଲା। ତାର ସୁପ୍ତ କାମନା ଜାଗ୍ରତ ହେଲା ଭୀଷଣ ବୁଭୁକ୍ଷା ନେଇ। ଆଉ ଯାହା କିଛି ବାକିଥିଲା ବାଣୀର ମୁହଁରୁ ନିଜ ଲେଖାର ପ୍ରଶଂସା ଶୁଣି ମୁଣ୍ଡଟି ଏକଦମ୍ ଘୂରିଗଲା। ବାଣୀର କିରାଣିକୁ ଘୃଣା। ଦୁର୍ଗାପଦ କାହାରିକୁ ନ ପଚାରି ଚାକିରିରୁ ଇସ୍ତଫା ଦେଲା। ଘରର ସମସ୍ତେ ପୁଣି ସମସ୍ୱରରେ କ୍ରନ୍ଦନ କରି ଉଠିଲେ।  ଦୁର୍ଗାପଦ ଗର୍ବର ସହିତ ବାଣୀର ମୁହଁକୁ ଚାହିଁଲା ପ୍ରଶଂସା ପାଇଁ । ବାଣୀର ପାତଳା ଅଧରରେ ଖେଳିଗଲା ମୋନାଲିସାର ରହସ୍ୟମୟୀ ହସ। ଦୁର୍ଗାପଦ ତାହାକୁ ହିଁ ଯଥେଷ୍ଟ ମନେକଲା। ଯାହାର ପ୍ରତୀକ୍ଷାରେ ସେ ଯୌବନର ଉତ୍ତମାର୍ଦ୍ଧ କଟାଇ ଦେଇଛି, ସେ ଆଜି ଦୁଆରେ। ଦୁର୍ଗାପଦ ଜୀବନଧାରା ବଦଳିଗଲା। ତା'ର ଲୁପ୍ତ ପ୍ରେରଣା ଓ ଆଦର୍ଶ ଫେରି ଆସିଲା। ସାମାନ୍ୟ ଟିକିଏ ଦକ୍ଷିଣା ପବନରେ ଆକାଶର ଭୟଙ୍କର କଳାମେଘ ନିମିଷକେ ଅନ୍ତର୍ହିତ ହେଲା ଭଳି ତାର ସବୁ ବିକୃତି ତିରୋହିତ ହେଲା। ଦୁର୍ଗାପଦ ପୁଣି ଲାଗିପଡ଼ିଲା ବ୍ୟାୟାମ ଓ ଲେଖାପଢ଼ାରେ। ଅଳ୍ପଦିନ ଭିତରେ ତାହାର ଚେହେରାର ଅନେକ ପରିବର୍ତ୍ତନ ହୋଇଗଲା। ଦେହ ଓ ମନରେ ସେ ଅପୂର୍ବ ରୋମାଞ୍ଚ ଅନୁଭବ କଲା।

ଓକିଲାତି ଆରମ୍ଭ କଲା। କିନ୍ତୁ ବାଣୀ ତାର ସମ୍ପୂର୍ଣ୍ଣ ତାହା ନ ଜାଣିବା ପର୍ଯ୍ୟନ୍ତ ସେ ସେଥିରେ ମନ ଲଗାଇ ପାରିଲା ନାହିଁ। ଅପେକ୍ଷା କରିବାର ତାର ଧୈର୍ଯ୍ୟ ନାହିଁ। ବର୍ଷ ବର୍ଷ ଧରି ଗୁପ୍ତ ପ୍ରଣୟ କରିବାକୁ ତାର ସମୟ ନାହିଁ। ତାର ପ୍ରତିଦ୍ୱନ୍ଦୀ ଶ୍ରୀନିବାସ ଦେଖିବାକୁ ସୁନ୍ଦର। ନିଜ ବିଷୟରେ ନାନା ଅଦ୍ଭୁତ କଥା ସୁନ୍ଦର ବିଶ୍ୱାସଯୋଗ୍ୟ ଭାବରେ ସେ ବାଣୀର ମନ ଜୟ କରିବାକୁ ଚେଷ୍ଟା କରୁଚି। ବାଣୀର ସାମାନ୍ୟ ଇଚ୍ଛା ସେ ସାଂଗେ ସାଂଗେ ପୂରଣ କରେ।  ଦୁର୍ଗାପଦ ଭାବେ ଏ ନିର୍ଲଜ୍ଜତାକୁ ବାଣୀ ନିଶ୍ଚୟ ଘୃଣା କରୁଚି। ନିଜର ନାନା ଗୁଣ ଓ ପୌରୁଷ ଦେଖାଇ ଦୁର୍ଗାପଦ ବାଣୀକୁ ଆକୃଷ୍ଟ କରିବାର ଚେଷ୍ଟା କରେ। କିନ୍ତୁ ତାର ଅନ୍ତରର ଭୟ ଶ୍ରୀନିବାସ ପ୍ରତି। ଥରେ ଶ୍ରୀନିବାସର ଏହି ନିର୍ଲଜ୍ଜତା ପାଇଁ ଦୁର୍ଗାପଦ ତାକୁ ଅପମାନ ଦେଇ କୁହେ। ଶ୍ରୀନିବାସ ଗୋଟାଏ ଅବଜ୍ଞାରେ ହସି ହସି କହେ "ଏଥିରେ ଲଜ୍ଜା କରିବାର କଅଣ ଅଛି। ବଗ ବା ମୟୂର ବଗୁଲୀ ବା ମୟୂରୀକୁ ଆକୃଷ୍ଟ କରିବା ପାଇଁ ନାନା ପ୍ରକାର ନୃତ୍ୟର ପ୍ରଦର୍ଶନୀ ଦେଖାଏ। ଏ ଦୃଷ୍ଟାନ୍ତ

ପ୍ରାଣୀଜଗତରେ ବହୁଳ। ତୋ ମତରେ ଏ ମଧ୍ୟ ନିର୍ଲଜ୍ଜତା। କିନ୍ତୁ ଏହା ହିଁ ପ୍ରକୃତିର ନିୟମ। ସମାଜର ଅପ୍ରାକୃତିକ ନିୟମ ଓ ଆଦର୍ଶ ଯୋଗୁଁ କେତେକ ବ୍ୟର୍ଥ ଯୁବକ ସାହିତ୍ୟରେ ନାରୀ ପ୍ରତି ଔଦାସୀନ୍ୟ ବା ଅବଜ୍ଞାର ଭାବ ଦେଖାଇ ନାରୀକୁ ଆକୃଷ୍ଟ କରିବାର ଯେଉଁ ପନ୍ଥା ଦେଖାଇ ଅଛନ୍ତି, ତାହା ଅନ୍ୟ ବ୍ୟର୍ଥ ଯୁବକର ମନକୁ ଭଲ ଲାଗିପାରେ, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ତାହା ଅଚଳ। ତା ଛଡ଼ା ସମାଜ ପକ୍ଷରେ ତାହା ଅସ୍ୱାସ୍ଥ୍ୟକର ମଧ୍ୟ।"

କେତେଥର ନଈକୂଳରେ ବାଣୀ ସହିତ ଏକା ବସିଥିବା ସମୟରେ ଦୁର୍ଗାପଦ ଭାବିଛି ତାର ମନ ଖୋଲିଦେବାକୁ। କିନ୍ତୁ ସ୍ଥିର ହୋଇ ଚାହିଁ ରହିବା ଛଡ଼ା ସେ ଆଉ କିଛି କରିପାରେ ନାହିଁ। ବ୍ୟର୍ଥତାର ଗୋଟାଏ ଅଯଥା ଗର୍ବ ଅଛି। ସେହି ଗର୍ବରେ ଦୁର୍ଗାପଦ ଇଚ୍ଛା କରେ ବାଣୀ ଆଗେ ଏ ଦୁର୍ବଳତା ପ୍ରକାଶ କରିବ- ଯେଉଁ ଅଗ୍ନି ତାକୁ ତିଳେ ତିଳେ ଦଗ୍ଧ କରୁଥିଲା, ତାହା ଅନୁଭବ କଲେ ମଧ୍ୟ ଦୁର୍ଗାପଦ ଏହାକୁ ଦୁର୍ବଳତା ବୋଲି ମନକୁ ଭୁଲାଇବାକୁ ଚେଷ୍ଟା  କରିଛି। ନିଜର ମନ ଖୋଲି ସବୁ କହିବାକୁ ଚେଷ୍ଟା କଲେ ମଧ୍ୟ ସେ କେବେହେଁ ତାହା କରି ପାରିନାହିଁ। ନିଜର ଅକ୍ଷମତା ଯେତେବେଳେ ତାର ଅହସ୍ୟ ବୋଧହୁଏ, ସେତେବେଳେ ତାର ଆଖିରୁ ପାଣି ଝରି ପଡ଼େ।

ଦିନେ ସେ ଦୁର୍ବଳତା ଠେଲି ବାଣୀକୁ ତାର ମନକଥା କହିବାକୁ ତା'ର ଘରକୁ ଗଲା। ସେ ଦିନ ବାଣୀ ଘରେ ଏକା । ଘରକୁ ଯାଇ ସେ ଯାହା ଦେଖିଲା ସେଥିରେ ସେ ନିଶ୍ଚଳ ହୋଇ ଛିଡ଼ା ହୋଇ ରହିଲା। ବାଣୀ ଯାହାକୁ ଘୃଣା କରେ ବୋଲି ସେ ଭାବିଥିଲା ସେ ଆଲିଙ୍ଗନ କରି ରହିଛି ବାଣୀକୁ- ବାଣୀ ତା'ର ଛାତିରେ ମୁଣ୍ଡ ରଖି ଛିଡ଼ାହୋଇ ରହିଛି। ଦୁର୍ଗାପଦର ମୁଣ୍ଡ ହଠାତ୍ ଘୂରିଗଲା। ସେ କୌଣସିମତେ ନିଜକୁ ସମ୍ଭାଳି ଶ୍ରୀନିବାସର ମୁଣ୍ଡ ଫଟାଇ ଦେବାର ଅଦମ୍ୟ ଇଚ୍ଛାକୁ ଚାପି ଧୀରେ ଧୀରେ ଫେରି ଆସିଲା। ସମସ୍ତ ନାରୀ ଜାତି ପ୍ରତି ଘୃଣାରେ ତା'ର ଦେହ ଥରି ଉଠିଲା। କୌଣସି ନାରୀର ମସୃଣ ସୁନ୍ଦର ବେକ ଚିପି ମାରିଦେବାର କଳ୍ପନାରେ ସେ ଗୋଟିଏ ଆନନ୍ଦ ଅନୁଭବ କଲା। ଘରକୁ ଫେରିଆସି ବୃଥା କାରଣରେ ସେ ତାର ସାନ ଭଉଣୀକୁ ପ୍ରହାର କଲା। ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ଦୁର୍ଗାପଦ ନୀରବରେ ବସି ଭାବିଲା "ନାରୀ ସ୍ୱାଧୀନତା ଉଚ୍ଛୃଙ୍ଖଳତାର ନାମାନ୍ତର। ଆଜିକାଲି କାହାରି ସଂଯମ ନାହିଁ। ଏହି ଅସଂଯମକୁ ପ୍ରଶୟ ଦେବା ପାଇଁ ଗୋଟିଏ ମତ ଉଠିଚି ନାରୀକୁ ସ୍ୱାଧୀନତା ଦେବା । ମୁଁ ଯଦି କ୍ଷମତା ପାଆନ୍ତି...। ଏଇ ତ ନାରୀ। ବାହାର କ୍ଷଣିକ ସୌନ୍ଦର୍ଯ୍ୟ ତଳେ ପୂଯ, କୃମି, କୁତ୍ସିତହାଡ଼, ମିଥ୍ୟା, ଛଳନା, ବ୍ୟଭିଚାର, ନରକ। ବୁଦ୍ଧ ଶଙ୍କରଙ୍କର ପନ୍ଥା ହିଁ ଠିକ୍।"

ପରଦିନ ତାର ଭୀଷଣ କମ୍ପ ସହ ଜ୍ୱର ଆସିଲା। ଏ ଜ୍ୱର ଛାଡ଼ିବାକୁ ଲାଗିଲା

ତାର ତିନିମାସ। ଚିକିତ୍ସା ବିନା ମରୁ ମରୁ ଦୁର୍ଗାପଦ ବଞ୍ଚି ଉଠିଲା। କିନ୍ତୁ ନିଃଶ୍ୱାସ ମାରିବାକୁ ତାର ବେଳ ନାହିଁ। ଏତେ ଦିନ ଉତ୍ତେଜନାରେ ଘରର ଦାରିଦ୍ର୍ୟ କଥା ତାର ଖିଆଲ ନଥିଲା । ସାମାନ୍ୟ ଟିକିଏ ସୁସ୍ଥ ହୋଇ ସେ ଚାକିରି ଉଦ୍ଦେଶ୍ୟରେ ବାହାରିଲା। ବହୁ କଷ୍ଟରେ ହେଲେ ମଧ୍ୟ ଅଳ୍ପଦିନ ଭିତରେ ସେ ଖଣ୍ଡେ ଚାକିରି ପାଇଲା। ବିବାହର ଉପଯୁକ୍ତ ବୟସ ତାର ଅତିକ୍ରମ କରିଯାଇଛି। ଘରର ସମସ୍ତେ ପୁଣି ଥରେ ସମସ୍ୱରରେ କ୍ରନ୍ଦନ କରି ଉଠିଲେ। ପ୍ରଥମ ଯୌବନ ବ୍ୟର୍ଥତାରେ କଟିଯିବା ପରେ ବିବାହ ଗୋଟାଏ ଦୁଃସାହସିକ କାର୍ଯ୍ୟ ମନେହୁଏ। କିନ୍ତୁ ସମବେତ କ୍ରନ୍ଦନର ଶକ୍ତିକୁ ସେ ଏଡ଼ି ପାରିଲା ନାହିଁ। ସେ ଭାବିଲା "ପୁତ୍ରାର୍ଥେ କ୍ରିୟତେ କାର୍ଯ୍ୟା। ତା ସହିତ ଆଉ ସମ୍ବନ୍ଧ କଅଣ ହେବ ? ଘରର ଓ ସମାଜର ମଙ୍ଗଳ ପାଇଁ ମୁଁ ଆଦର୍ଶ ବିବାହ କରିବି।" ଯେଉଁ ସାମାଜିକ ଅଟ୍ଟାଳିକା ବିବାହ ଉପରେ ପ୍ରତିଷ୍ଠିତ ତା'ର ଭିତ୍ତି ମନର ସ୍ୱାସ୍ଥ୍ୟକର ଆନନ୍ଦରେ। ଦୁର୍ଗାପଦ ମନର ସେ ସ୍ୱାସ୍ଥ୍ୟ ହରାଇଛି। ସମାଜରେ ଯେତେବେଳେ ଯୌତୁକ ପ୍ରଥା ଘୃଣ୍ୟ ଆକାର ଧାରଣ କରିଥାଏ, ଦୁର୍ଗାପଦ ବିବାହ କଲା ଗୋଟିଏ ଅତି ଦରିଦ୍ର ପରିବାରର ସୁନ୍ଦରୀ କନ୍ୟାକୁ ବିନା ଯୌତୁକରେ । ଘରର ସମସ୍ତେ ଅଗତ୍ୟା ଏହାକୁ ସମର୍ଥନ କଲେ। ଏ ବିବାହ ଯୋଗୁଁ ସେ ସମାଜରେ ପାଇଲା ସମ୍ମାନ।

ପ୍ରତିମା ସୁନ୍ଦରୀ ହେଲେ ହେଁ ଏତେ ବୟସ ପର୍ଯ୍ୟନ୍ତ ତା'ର ବିବାହ ହୋଇ ନଥିଲା ପିତାର ଦାରିଦ୍ର୍ୟ ଯୋଗୁଁ। ଏଥି ସକାଶେ ପିତାଙ୍କ ଠାରୁ ବହୁ ଗଞ୍ଜଣା ସେ ପାଇଛି । ପିତା ପ୍ରକାରାନ୍ତରେ ତାକୁ ଆତ୍ମହତ୍ୟା କରିବାକୁ ମଧ୍ୟ କହି ଅଛନ୍ତି । ନିଜର ବ୍ୟର୍ଥ ଜୀବନ ବିସର୍ଜନ ଦେବା ପାଇଁ ମନସ୍ଥ କଲାବେଳେ ସେ ପାଇଲା ଦୁର୍ଗାପଦ ଭଳି ସ୍ୱାମୀ- ଯାହାର ବାହାରେ ବେଶୀ ସୁନାମ। ବାସର ରାତିରେ ପ୍ରତିମା ତାର ବଡ଼ ବଡ଼ ସୁନ୍ଦର ଆଖି ଦିଓଟିରେ କୃତଜ୍ଞତା ଭରି ଦୁର୍ଗାପଦକୁ ଚାହିଁ ରହିଲା। ଦୁର୍ଗାପଦ ଆଖିରେ ଫୁଟି ଉଠିଲା ଦୟା କରିବାର ଗର୍ବ।

ବାର୍ଦ୍ଧକ୍ୟ ବିନା ଆୟାସରେ କିଛି ପାଇଲେ ସୌଭାଗ୍ୟ ମନେ କରେ। ଯେତେ କ୍ଷୁଦ୍ର ହେଉ ନା କାହିଁକି ଯୌବନ ପ୍ରତ୍ୟେକ ଜିନିଷକୁ ଜୟ କରି ଲାଭ କରିବାରେ ଆନନ୍ଦ ପାଏ। ଏହି ଜୟରେ ଲାଭଠୁଁ ରୋମାଞ୍ଚ ବେଶୀ। ପ୍ରତିମାକୁ ଦୁର୍ଗାପଦ ପାଇଛି- ଜୟ କରି ନାହିଁ। ତାହାର ଏ ଆଦର୍ଶ ବିବାହ ସମାଜରେ ସମ୍ମାନ ଆଣି ଦେଇଚି- ଜୀବନରେ ପୁଲକ ଆଣି ଦେଇନାହିଁ। ଏହିଠାରେ ଦୁର୍ଗାପଦର ବ୍ୟର୍ଥତା। ଏହି ବ୍ୟର୍ଥତା ଉପରେ ହିଁ ଭବିଷ୍ୟତ ଜୀବନର ମୂଳଦୁଆ ପକାଇବାକୁ ହେବ।

ବିବାହ ଆଜିକୁ ବର୍ଷେ ହେବ ହୋଇଗଲେ ମଧ୍ୟ ଦୁହେଁ ଦୁହିଁଙ୍କଠାରୁ ଅଛନ୍ତି ବହୁ ଦୂରରେ। ସମସ୍ତଙ୍କ ସେବା ଶୁଶ୍ରୂଷା ସାରି ପ୍ରତିମା ଯେତେବେଳେ ସମସ୍ତଙ୍କର

ଧନ୍ୟବାଦ ଓ ଆଶୀର୍ବାଦ ନେଇ ଶୋଇବାକୁ ଆସେ, ସେତେବେଳେ ସେ ସ୍ୱାମୀର ସେବାକରି ଦେହ ଓ ମନର କ୍ଲାନ୍ତିରେ ଶୋଇପଡ଼େ । ଏହାଛଡ଼ା ଦୁର୍ଗାପଦ ଆଉ କିଛି ପାଇନାହିଁ । ସେ ଦେଇଛି ବା କଅଣ ? ଦୁର୍ଗାପଦ ଯଥାସାଧ୍ୟ ଚେଷ୍ଟାକରେ ମନ ଭିତରେ ପ୍ରେମର ପୁଲକ ଜାତ କରାଇବାକୁ । ସେ ଭାବେ 'ପ୍ରତିମା ଅପୂର୍ବ ସୁନ୍ଦରୀ । ମନଟି ତାର ସରଳ । ମୋର ଓ ଅନ୍ୟର ଦୃଷ୍ଟି ପାଇଁ ସେ ସର୍ବଦା ବ୍ୟସ୍ତ । ମୋର ଭାଗ୍ୟ ମୁଁ ପ୍ରତିମାକୁ  ସ୍ତ୍ରୀ ରୂପେ ପାଇଚି ।"

ପ୍ରତିମା ମଧ୍ୟ ଭାବେ, "ମୋର ଭାଗ୍ୟ ମୁଁ ଏ ଭଳି ସ୍ୱାମୀ ପାଇଛି । କେତେ ଜ୍ଞାନୀ ଓ ଦୟାଳୁ ! ଏ ବିବାହ ହୋଇ ନଥିଲେ ମୁଁ ଆତ୍ମହତ୍ୟା କରିଥାନ୍ତି କିମ୍ବା କେଉଁ ଅପଦାର୍ଥର ହାତ ଧରି ଥାଆନ୍ତି ।"

ଦୁହେଁ ଆପ୍ରାଣ ଚେଷ୍ଟା କରନ୍ତି ହୃଦୟରେ ସେଇ ପୁଲକ ଜାତ କରାଇବାକୁ ଯାହାର ପ୍ରଭାବରେ ସମସ୍ତ ଦୁଃଖକଷ୍ଟ ତୁଚ୍ଛ ମନେ ହୁଏ । କିନ୍ତୁ ଦୁହିଁଙ୍କର ସେ ଉତ୍ସ ବନ୍ଦ ହୋଇଯାଇଛି । ହୃଦୟରେ ଗୋଟାଏ ଯନ୍ତ୍ରଣା ପାଇବା ଛଡ଼ା ଆଉ କିଛି ଲାଭ ହୁଏ ନାହିଁ । ମନର ଏହି ଅସହ୍ୟ ଅଚଳ ଅବସ୍ଥା ପାଇଁ ଦୁର୍ଗାପଦ ମଝିରେ ମଝିରେ ନିଜ ଉପରେ ଭାରି ରାଗି ଭାବେ, "ଏହି ସାମାନ୍ୟ ପ୍ରେମର ଭାବ ଟିକକ ମୁଁ ଆଣି ପାରୁନାହିଁ !! କେବେ ମୋର ପ୍ରତିମା ପ୍ରତି ନିର୍ମଳ ପ୍ରେମ ଆସିବ ।  ଏହି ଛତିଶ ବର୍ଷ ବୟସରେ ଏହି ବାର୍ଦ୍ଧକ୍ୟକୁ ଧିକ୍ । ନାଃ-ପିଲାପିଲି ହେଲେ ସବୁପାଇବି ?"

ପ୍ରତିମା ମଧ୍ୟ ଭାବେ "ଏଇ ତ ଜୀବନ । ଏହାତ ସମସ୍ତଙ୍କ ଭାଗ୍ୟରେ ହୁଏ । ଆଉ କିଛି ନ ମିଳୁ ଦୁଃଖ କଷ୍ଟ ତ ନାହିଁ । ପିଲାଛୁଆ ହେଲେ ସବୁ ପାଇବି ।"

ମନ ଭିତରେ ଯାହା ଥାଉ ବାହାରେ ଏମାନେ ଆଦର୍ଶ ଦମ୍ପତି । ଦୁହିଁଙ୍କ ଭିତରେ ସାମାନ୍ୟ ମନାନ୍ତର କେହି କେବେହେଁ ଦେଖି ନାହାଁନ୍ତି । ଏ ସୁଖ୍ୟାତି ତଳେ ଅଛି ଅଭିନୟ ଏବଂ ଏହି ଅଭିନୟ ତଳେ ଅଛି ପୁଣି ନିଜ ସହିତ ଅବିରତ ଯୁଦ୍ଧ ।

ଦୁର୍ଗାପଦର ଜନ୍ମଠାରୁ ଆଜିପର୍ଯ୍ୟନ୍ତ ଦୁଇଟି ମହାଯୁଦ୍ଧ ଶେଷ ହୋଇ ତୃତୀୟଟି ସୂତ୍ରପାତ ହୋଇ ସାରିଛି । ବିଭିନ୍ନ ଦେଶର ଓ ଲୋକର ଶାନ୍ତି ଚେଷ୍ଟା ପୁଣି ଯୁଦ୍ଧର ନୂଆ କାରଣ ରୂପେ ଦେଖା ଦେଉଛି । କିନ୍ତୁ ବ୍ୟକ୍ତିର ଜୀବନରେ ଏହି ମହାଯୁଦ୍ଧ, ବାହ୍ୟ ସଫଳତା ସତ୍ତ୍ୱେ ବ୍ୟକ୍ତିର ଏହି ବୀଭତ୍ସ ବିକୃତି, ପୃଥିବୀ ମହାଯୁଦ୍ଧର କାରଣ ନୁହେଁ ବୋଲି କିଏ କହିପାରିବ !!!

ଦୁର୍ଗାପଦ ବର୍ତ୍ତମାନ ଛଅଟି ପିଲାର ପିତା । ପ୍ରତିମାର ଏଥିରେ ଆପତ୍ତି ନାହିଁ କିମ୍ବା ଦୁର୍ଗାପଦର ସ୍ତ୍ରୀର ସ୍ୱାସ୍ଥ୍ୟ ପ୍ରତି ଲକ୍ଷ୍ୟ ନାହିଁ । ଦୁହେଁ ହିଁ ମଝିରେ ମଝିରେ ଆତ୍ମହତ୍ୟାର ଇଚ୍ଛା ଦମନ କରି ଚାହିଁଥିଲେ । ସନ୍ତାନ । ଦୁହିଁଙ୍କର ସୁଖର କଳ୍ପନା ସନ୍ତାନକୁ କେନ୍ଦ୍ର କରି ।

ପ୍ରତିମା ସବୁବେଳେ ବ୍ୟସ୍ତ ଥାଏ ସନ୍ତାନ ଓ ସ୍ୱାମୀର ସେବାରେ । ଦୁର୍ଗାପଦର ଲକ୍ଷ୍ୟ ଅର୍ଥ, ସମ୍ମାନ ଓ ପ୍ରତିପତ୍ତି । ବହୁ ପରିଶ୍ରମ କରି ଅଳ୍ପକାଳ ମଧ୍ୟରେ ତାର ଚାକିରିର ଅନେକ ଉନ୍ନତି ହୋଇଚି । ଆହୁରି ଉନ୍ନତି ତାର ଉଦ୍ଦେଶ୍ୟ । ଦେଶର ଅବସ୍ଥା ସୁଧାରିବା ପାଇଁ ସେ ନାନା ଉପାୟର ପ୍ରସ୍ତାବ ଦେଇ ଚାକିରିରେ ଉନ୍ନତି ଓ ପ୍ରଶଂସା ପାଇଛି । ଦେଶର ଅବସ୍ଥା ସୁଧାରିବା ବା ସମାଜରେ ଉନ୍ନତି ଆଣିବା ତାର ଲକ୍ଷ୍ୟ ନୁହେ । ତେଣୁ ତାର କର୍ମତତ୍ପରତାରେ ମାନବିକତା ନାହିଁ । ସେ ଯାହା ହେଉ, ସୁଲେଖକ, ସଂସ୍କାରକ, କର୍ତ୍ତବ୍ୟନିଷ୍ଠ ବୋଲି ସେ ସମ୍ମାନ ସହିତ ଅର୍ଥ ଓ ପ୍ରତିପତ୍ତି ମଧ୍ୟ ପାଇଛି । କିନ୍ତୁ ଏହା ମାଦକ ଦ୍ରବ୍ୟ ଭଳି ସେ ଅଧିକରୁ ଅଧିକ ପାନ କରିବାକୁ ଚାହେଁ । ତାର ତୃପ୍ତି ନାହିଁ, ପ୍ରତିମା ମଧ୍ୟ ଶଶୁର ଘରେ ପାଇଛି ସମ୍ମାନ ତାର ସରଳତା ଓ ନିରାଡ଼ମ୍ବରତା ପାଇଁ, ସେ ମଧ୍ୟ ଅଧିକ ଆଶାରେ ନିଜର ସୁଖ, ଶାନ୍ତି, ସ୍ୱାସ୍ଥ୍ୟ ବିସର୍ଜନ ଦେଇ ଲାଗିଚି ସମସ୍ତଙ୍କୁ ତୃଷ୍ଟି କରିବାରେ । ତଥାପି ଦୁହିଁଙ୍କର ମନ ଦିନେ ଦିନେ ହାହାକାର କରି ଉଠେ ସେହି ସୁଖ ପାଇଁ, ଯାହାକି ସେ ଆଉ ପାଇବେ ନାହିଁ ।

# ଗୋଟିଏ ଇନ୍‌କୁଆରୀ

ଗୋଟିଏ ଇନ୍‌କୁଆରୀ କରିବାକୁ ବାହାରିଛୁ ହରିହରପୁରକୁ । ହରିହରପୁର ହେଉଛି ପର୍ବତ କ୍ରୋଡ଼ରେ ଥିବା ଗୋଟିଏ ଗାଁ । ଗାଁର ପୂର୍ବ ସୀମାକୁ ଲାଗି ରହିଛି ପର୍ବତମାଳା ନାରଣପୁର, ହବିଷ, ମହମ୍ମଦପୁର, କଳଦା, ମଙ୍ଗଳପୁର ଇତ୍ୟାଦି । ଗାଁମାନଙ୍କ ସୀମାଦେଇ ପର୍ବତର ପ୍ରାଚୀର ଲମ୍ବିଯାଇ ମିଶିଛି ଗୋରୁଖିଆ ପର୍ବତ ସହିତ । ଉଚ୍ଚ ପର୍ବତ ନୁହେଁ । ହେଲେ ଘୋର ଜଙ୍ଗଲ ।

ହରିପୁର ଗାଁ ସୀମାରେ ଦୁଇଟି ପର୍ବତ ପାଖାପାଖି ହୋଇ ଛିଡ଼ା ହୋଇଛନ୍ତି, କେତେ ଯୁଗଧରି ! କେତେ ଯୁଗର ଲୋକେ ତା ଉପରକୁ ଚଢ଼ିଛନ୍ତି କାଠ କାଟିବାକୁ, ସେମାନଙ୍କର ପାଦଚିହ୍ନ ନାହିଁ; କିନ୍ତୁ ଅନେକଙ୍କର ଇତିହାସ ରହିଯାଇଛି ସେହି ପର୍ବତ ଦୁଇଟିର ଦେହରେ । ଅକ୍ଷଣାର ଗୋସିବାପା ଯାଇଥିଲା କାଠ କାଟିବାକୁ, କାଠ ଖୋଜୁଖୋଜୁ ସେ ଦିଅଁଙ୍କ ଅଧିଷ୍ଠାନ ଆଡ଼କୁ ଚାଲି ଯାଇଥିଲା । ଦିଅଁ ତାକୁ ବାଘ ରୂପରେ ଦେଖା ଦେଇଥିଲେ, ବାସ୍ ସେଇଠି ଶେଷ, ଗୋଟିଏ ଝାଡ଼ା ପରେ । ପ୍ରାୟ ଚାରିପୁରୁଷ ଆଗେ ସପନି ବି ଯାଇଥିଲା ସେ ଜାଗାକୁ । ସେ ଥିଲା ଅମାନିଆ, ନାସ୍ତିକ, ଠାକୁର ଠାକୁରାଣୀ ମାନୁ ନ ଥିଲା । ଯେମିତି ଯାଇଛି ସେ ଜାଗାକୁ ଠାକୁରାଣୀ ତାକୁ ନଟାରେ ବାନ୍ଧିଦେଲେ, ନଟାରେ ଗୁଡ଼େଇ ତୁଡ଼େଇ ହୋଇ ସେ ମଲା । ତା ବଂଶରେ ମଧ୍ୟ କେହି ଦୀପ ଦେବାକୁ ରହିଲେ ନାହିଁ । ଏ ପର୍ଯ୍ୟନ୍ତ ତା' ଡିହଟି ରହିଛି, ସପନ ଡିହ; ଗାଁ ମୁଣ୍ଡରେ । ଖାଲି ଗୋଟାଏ ଅଧାକାନ୍ଥି ରହିଛି । ଆଉ ରହିଛି କେତେଗୁଡ଼ିଏ ଖପରା; ସେ ଡିହ କେହି ମାଡନ୍ତି ନାହିଁ ।

ରାତି ଅଧରେ ଅନେକେ ପର୍ବତ ଆଡୁ ଗୋଟା କୁହାଟ ଶୁଣିଛନ୍ତି, ହେ-ଏ-ଏ-ଏ-ଏ ହେଃ, ହାଃ, ହାଃ । ଗାଁରେ କେହି ଅନ୍ୟାୟ ଅବିଚାର କଲେ ଏପରି କୁହାଟ ଶୁଭେ । କୁହାଟ ଶୁଣିଲେ ଗାଁରେ ଲୋକେ ବୁଝିପାରନ୍ତି କେହି ଅନ୍ୟାୟ କରିଛନ୍ତି । ବାଜା ବାଜେ, ଠାକୁରାଣୀଙ୍କ ପୂଜା ହୁଏ, ଭୋଗ ଲାଗେ, ବଳି ପଡ଼େ, କାଳିଶି ଲାଗେ । ତା'

ପରେ ବସେ ସଭା, ଯିଏ ଅନ୍ୟାୟ କରିଥାଏ, ସେ ନିଜେ ନିଜେ ଦୋଷ ସ୍ୱୀକାର କରେ । ଯାହା ଉଚିତ ଦଣ୍ଡ ବୋଲି ସଭା ସ୍ଥିର କରେ, ସେ ଦଣ୍ଡ ସେ ପାଏ ।

ସେ ଯୁଗ ଗଲାଣି, ସେତେବେଳେ ଗାଁରେ ଗୋଟିଏ ପାଠଶାଳା ବି ନଥିଲା । ଗାଁ ଅବଧାନେ ପିଲାମାନଙ୍କୁ ବେତମାରି ପୋଥି ପଢ଼ିବା ଶିଖାଇ ପାରିଲେ, ହେଲେ "ନମଇ ନୃସିଂହ ଚରଣ, ଅନାଦି ପରମ କାରଣ" ବୋଲିବା ପର୍ଯ୍ୟନ୍ତ ଶିକ୍ଷା ହୋଇଗଲେ ଢେର୍ ହେଲା, ତା ପରେ କାନ୍ଧରେ ଜୁଆଳି ପକାଇ ବଳଦ ଲାଙ୍ଗୁଡ଼ ମୋଡ଼ି "ହେଟ୍ ହେଟ୍ ଶଳା ଖଲାଉଛି" କହି କହିକା ମୁଢ଼ିକି ଚୁଡ଼ା ଚୋବାଇ ଚୋବାଇ ପୁଅ ଚାଲିଲେ ବିଲକୁ ।

ସେ ଯୁଗ ଗଲାଣି, ବର୍ତ୍ତମାନ ଗାଁରେ ଗୋଟିଏ ମାଇନର ସ୍କୁଲ ସେ ପୁଣି ଉଚ୍ଚ ସ୍କୁଲ ହେବାକୁ ଯାଉଚି । ଗାଁର ଗୋଟିଏ ପାଣପୁଅ ବି.ଏ.ପାସ୍ କରି ବଡ଼ ଚାକିରି କଲାଣି । ଗାଁରେ ଆଉ ସେ ନୁଆଣିଆ ଚାଳ ଘର ନାହିଁ । ଦି' ଚାରିଟା ପକା ଘର ବି ହେଲାଣି । ପଞ୍ଚବାର୍ଷିକ ଯୋଜନାଦ୍ୱାରା ଗାଁରେ ଅନେକ ଉନ୍ନତି ହେଲାଣି ।

ଗୋଟିଏ ପ୍ରଧାନ ଯୋଜନା ହେଉଛି, ଦୁଇଟି ପର୍ବତ ମଝିରେ ବନ୍ଧ ପକାଇ ଜଳଭଣ୍ଡାର ତିଆରି କରିବା ୨୫ ହଜାର ଟଙ୍କାର ଯୋଜନା । ଜଳଭଣ୍ଡାରଟି ସୃଷ୍ଟି ହେଲେ ଆଠ ହଜାର ଏକର ଜମି ଆବାଦ ହୋଇ ପାରିବ ବୋଲି ବିଶେଷଜ୍ଞମାନେ ମତ ଦେଇଛନ୍ତି ।

କାମ ଆରମ୍ଭ ହେଲାଣି ଆଜିକୁ ତିନିବର୍ଷ ହେବ; କିନ୍ତୁ ସେ ଆରମ୍ଭରେ ହିଁ ରହିଯାଇଛି । ଆଗେଇ ପାରୁନି । ଯୋଜନାକାର୍ଯ୍ୟ ଆରମ୍ଭ ହେବା ଦିନରୁ ଗାଁରେ ତିନିଦଳ ସୃଷ୍ଟି ହୋଇଛି । ପ୍ରତ୍ୟେକ ଦଳ ଚାହୁଁଛି କାମଟି ସିଏ ହାତକୁ ନେବ । ଟଙ୍କା ଖର୍ଚ୍ଚ ହେବ ଅନେକଗୁଡ଼ାଏ । ପ୍ରତ୍ୟେକ ଦଳ ଅନ୍ୟ ଦଳର ଗୁଇ ଖୋଳି, ଦୋଷ ଦର୍ଶାଇ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ଏସ୍.ଡ଼ି.ଓ. ପର୍ଯ୍ୟନ୍ତ କେତେ ବେନାମୀ ସ୍ୱନାମୀ ଦରଖାସ୍ତ କଲେଣି ତାହାର ଇୟତ୍ତା ନାହିଁ । କେହି ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଦରଖାସ୍ତ, ତାରବାର୍ତ୍ତା ପଠାଇଛନ୍ତି । ପ୍ରତ୍ୟେକଙ୍କ ଦପ୍ତରରେ ବିଡ଼ା ବିଡ଼ା ଦରଖାସ୍ତ ବନ୍ଧା ହୋଇ ରହିଲାଣି । ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି କମିଶନର, କଲେକ୍ଟର ଏସ୍.ଡି.ଓ. ଜିଲ୍ଲା ଇଞ୍ଜିନିୟର୍ କେତେ ଆସି ଇନ୍‌କୁଆରୀ କରି ଗଲେଣି ! କିଛି ଫଳ ନାହିଁ । କାମ ଯେଉଁଠି ସେଇଠି । କଥାଟା ସେତିକିରେ ରହିନାହିଁ, ମୁଣ୍ଡ ଫଟାଫଟି ପର୍ଯ୍ୟନ୍ତ ଯାଇଛି । ପର୍ବତ ଦେହରୁ ରକ୍ତନଦୀ ବୋହିଯାଇ ସେ ଜଳଭଣ୍ଡାରରେ ପଡ଼ିଛି ।

ଗୋଟିଏ ଦଳର ନେତା ନାନା ଉପାୟ କରି ପୁଣି ଇନ୍‌କୁଆରୀ ଆରମ୍ଭ କରାଇଛନ୍ତି । ମୁଁ ବାହାରିଚି ଇନ୍‌କୁଆରୀ କରି । ସାଙ୍ଗରେ ଓଭରସିୟର୍ ବି.ଡ଼ି.ଓ. ଚପରାଶି ଆଦି ନେଇ । ଏଥରର ଅଭିଯୋଗ ହେଉଚି, ବନ୍ଧରେ ମୋଟେ ମାଟି ପଡ଼ିନାହିଁ । ଯେଉଁ

ଗାଡ ସବୁ କେତେ ଆଗରୁ ମାପ ହୋଇ ସରିଚି ଓ ତା'ର ଟଙ୍କା ପାଇ ଯାଇଛନ୍ତି, ପୁଣି ସେହି ଗାଡ଼ଗୁଡ଼ିକୁ ଟିକିଏ ଟିକିଏ ଛେଲି ଦେଇ ନୂଆ କରି ମାପ କରାଇ ପ୍ରାୟ ଚାରି ହଜାର ଟଙ୍କା ଆତ୍ମସାତ୍ କରିଛନ୍ତି ଅନ୍ୟ ଦଳର ଲୋକେ। ସେ ଟଙ୍କାରେ ଅମୁକର ଝୁଅର ବାହାଘର ହୋଇଛି, ତମୁକର ପିଣ୍ଡା ପକା ହୋଇଛି ଇତ୍ୟାଦି।

ସଜବାଜ ହୋଇ ବାହାରୁ ବାହାରୁ ବାଜିଲା ପ୍ରାୟ ତିନିଟା। ୧୭ ମାଇଲ୍ ରାସ୍ତା ଯିବାକୁ ହେବ ମଟରରେ। ତା'ପରେ ବିଲ ମଝି ଦେଇ ଚାଲିବାକୁ ହେବ ୪ ମାଇଲ୍। ମଟରରୁ ଓହ୍ଲାଇ ଆମେ ବାହାରିଲା ବେଳକୁ ସୂର୍ଯ୍ୟ ଗୋରୁଖିଆ ପର୍ବତଚୂଡ଼ା ଉପରୁ ଗଡ଼ିବାକୁ ଆରମ୍ଭ କଲେଣି।

ଯେଉଁଠି ଆମ ମଟର ରହିବା କଥା ସେଠି ଅପେକ୍ଷା କରି ରହିଥିଲେ ଛନ୍ଦ ମହାନ୍ତି, ଯିଏ କି ଏ ଇନ୍‌କ୍ୱାରୀ କରାଇଛନ୍ତି। ତାଙ୍କ ସହିତ ଥିଲେ ପ୍ରାୟ ପଚାଶ ସରିକି ଲୋକ। ଆମେ ପହଞ୍ଚିବା ମାତ୍ରକେ ଆଭୂମି ନମସ୍କାର କରି ହାତ ଯୋଡ଼ି ସମସ୍ତେ ଛିଡ଼ା ହେଲେ।

ବାହାରିଲୁ, ଶ୍ରୀ ଛନ୍ଦ ମହାନ୍ତି ଓ ତାଙ୍କର ଲୋକେ ଆଗେ ଆଗେ ଚାଲିଲେ ବାଟ ଦେଖାଇ। ବିଲ ହିଡ଼େ ହିଡ଼େ ଆମେ ଚାଲିଚୁ। ଦୁଇ କଡ଼ରେ ଧାନବିଲ। ଧାନଗଛ ସବୁ ଅଣ୍ଟାଏ ଉଚ୍ଚର ହେଲେଣି। ଫୁଲ ଧରିଚି। ଚାରିଆଡ଼େ ଖାଲି ସବୁଜ। ସେ ସବୁଜିମା ମିଶିଯାଇଛି ଦୂର ଚକ୍ରବାଳର ନୀଳିମାରେ। ମଝିରେ ମଝିରେ ଗୋଟାଏ ଗୋଟାଏ ଝାମ୍ପି ଦିଶୁଛି। ସେ ଝାମ୍ପି ମଝିରେ ମଝିରେ ଅଳ୍ପ ସମୟ ପାଇଁ ଉଠି ପୁଣି ପଡ଼ି ଯାଉଛି। ତା' ତଳେ ଯେଉଁ ଜୀବ ଅଛନ୍ତି, ସେ ନିର୍ବିକାର ଭାବରେ କଅଣ କରି ଚାଲିଛନ୍ତି। ଆମ ପ୍ରତି ଭ୍ରୂକ୍ଷେପ ନାହିଁ। ବିଲରୁ ଗୋଟାଏ ଅଦ୍ଭୁତ ସୁଗନ୍ଧ ଆସୁଛି। ସେ ସୁଗନ୍ଧର ତୁଳନା ଦେବା ଅସମ୍ଭବ।

ପଚାରିଲି, ଇଯେ କି ବାସନା ହୋ।

କିଏ ଜଣେ ଉତ୍ତର ଦେଲା, ଆଜ୍ଞା ଧାନଫୁଲର।

ଧାନଫୁଲର ଏମିତି ବାସନା ! ପଚାରିଲି।

ଛନ୍ଦ ମହାନ୍ତି କଥାର ଖିଅ ଧରି କହି ଚାଲିଲେ, ଆଜ୍ଞା, ଏ ବର୍ଷ ଧାନସବୁ ମରିଯିବ; 'ହେଟା' ଜମି ଏଗୁଡ଼ାକ। ବନ୍ଧଟା ହୋଇ ଥିଲେ ମୁନ୍ଦାଏ ମୁନ୍ଦାଏ ପାଣି ପାଇଥାନ୍ତେ ବିଲଗୁଡ଼ାକ। ଦେଖନ୍ତୁ ଆଜ୍ଞା ଟିକିଏ ଦୃଷ୍ଟି ପକାନ୍ତୁ, ଧାନ ମୂଳ ଶୁଖି ଗଲାଣି। ହୁଗୁଳା ମାଟି ଆଜ୍ଞା, ପାଣି ଧରି ରଖିବ କାହୁଁ! ଏତେବେଳେ ସିନା ପାଣି ଦରକାର ।...

ଆଜିକୁ ୪୫ବର୍ଷ ହେବ ଭାତ ଖାଇ ମୁଁ ମଣିଷ; କିନ୍ତୁ ଏ ପର୍ଯ୍ୟନ୍ତ ବୁଝି ପାରିଲି ନାହିଁ କେତେବେଳେ ଧାନ ଲୋଡ଼େ ପାଣି, କେତେବେଳେ ବା ପବନ, କେମିତି ବଢ଼େ ସେ ! କଅଣ ତା'ର ନିୟମ। କେତେ କଥା ଅଛି ଧାନଚାଷ ବିଷୟରେ ତା'ର ଆଦି ଅନ୍ତ ନାହିଁ।

ଛନ୍ଦ ମହାନ୍ତି କହି ଚାଲିଛନ୍ତି; ଆଜ୍ଞା, ମୁଁ ଏ ସବୁ ଜଞ୍ଜାଳକୁ ପଶେ ନାହିଁ। ମୁଁ ଭଲ କି ମୋ ଘର ଭଲ। ପିଣ୍ଡା ବାହାରକୁ ଗୋଡ଼ କାଢ଼େ ନାହିଁ ଆଜ୍ଞା। ହେଲେ ବନ୍ଧ ଟଙ୍କା ଏମିତି ବରବାଦ ହେଉଛି ଦେଖି ମୋ ଛାତି ଫାଟି ଯାଉଛି, ଏତେ ଅନ୍ୟାୟ! ଓହୋ! ଆଁ ଏଁ!!

ଦେଖ ହୋ...

ସେ ଖାଲି ପାଟିରେ କଥା କହୁ ନଥାଆନ୍ତି। ତାଙ୍କ ଆଖି, ମୁଣ୍ଡ ସବୁ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ କଥା କହୁଥାଆନ୍ତି।

ହରିହରପୁର ଗାଁରେ ପହଞ୍ଚିବାବେଳକୁ ବେଳ ବୁଡ଼ ସମୟ। ଗାଁ ଭିତରେ ଦେଇ ଯିବାବେଳେ ଛନ୍ଦ ମହାନ୍ତି ଘର ଘର ଗୋଟାଏ ଡାକ ଦେଇ ଯାଉଥାଆନ୍ତି, ଏ ଗଙ୍ଗା, ଏ ବାଉରି, ଏ ସପନା, ଆସ ଆସ ସବୁ ଅତି ଶୀଘ୍ର ବନ୍ଧ ଉପରକୁ। ସାହେବ ବିଜେ କଲେଣି।

ବନ୍ଧ ଉପରକୁ ଗଲାବେଳକୁ, ସେଠି ମଧ୍ୟ ଲୋକେ ଦୁଇଦଳ ଛିଡ଼ା ହୋଇଛନ୍ତି। ଆମକୁ ଦେଖି ସମସ୍ତେ ଆଭୂମ ନମସ୍କାର କଲେ ଓ ଛନ୍ଦ ମହାନ୍ତି ଆଡ଼କୁ ତରାଟି ଚାହିଁଲେ।

ତା'ପରେ ଆଖି ପିଛୁଳାକେ ଗୋଟାଏ କାଣ୍ଡ ଘଟିଗଲା। କିଛି କୁଆଡୁ ନାହିଁ, ଦୁଇଟା ଢେଲା ଆସି ପଡ଼ିଲା ଛନ୍ଦ ମହାନ୍ତି ଉପରେ। ତା' ପରେ ମୋତେ ଘେରି ତିନିଦଳ ପେଲାପେଲି ହେଲେ। ତା ସହିତ ଗୁଇ ଖୋଳାଖୋଳି, କାହା ଭାର୍ଯ୍ୟାର କାହା ସହିତ ପାପ ପ୍ରଣୟ ଅଛି, କାହାର ଭଉଣୀ ବିବାହ ପୂର୍ବରୁ ପୁଅ ଜନ୍ମ କରିଛି, କିଏ ଇସ୍କୁଲ ଟଙ୍କା ଖାଇଯାଇଛି, କିଏ ପଞ୍ଚାୟତ ଧାନଗୋଲାରୁ ଧାନ ବୋହିନେଇ ଯାଇଛି, କିଏ ପଞ୍ଚାୟତ ଟିକସ ଖାଇ ଯାଇଛି, କିଏ କେଉଁ ମକଦ୍ଦମାରେ ଗୋଟାଏ ପକ୍ଷଠାରୁ ଶହେଟଙ୍କା ଘୁଷ୍ ନେଇଛି, କିଏ ବନ୍ଧ କାମରେ ଟଙ୍କା ତ୍ଲୁ କରି ଦେଇଛି, କିଏ ଗୋଟାଏ ଧୋବଣୀକୁ ରକ୍ଷିତା କରି ରଖିଛି, ଯାବତୀୟ କଥା। ଠେଙ୍ଗା ସବୁ ମୁଣ୍ଡ ଉପରେ ବୁଲୁଚି।

ମୁଁ ଉପାୟ ନ ପାଇ ପ୍ରାଣଭୟରେ ସମସ୍ତଙ୍କୁ ବୁଝାଇବାକୁ ଚେଷ୍ଟା କରୁଥାଏ। ଜଣେ ଡ଼େପୁଟି ଏମିତି ଏକ ଘଟଣାରେ ପ୍ରାଣ ଦେଇଛନ୍ତି, ଲୋକେ ତାଙ୍କୁ ମାରି ହିଡ଼ରେ ପୋତି ଦେଇଛନ୍ତି। କଥାଟା ମନେ ପଡ଼ି ଯିବାରୁ ଛାତିରୁ ଅତଡ଼ା ଖସିପଡ଼ିଲା, ଝାଳ ବୋହିଗଲା ସାରା ଦେହରୁ।

କୌଣସିମତେ ବାହାରିଆସିଲି। କହି ଆସିଲି ହାତ ଯୋଡ଼ି, ଆପଣମାନେ ଶାନ୍ତ ନ ହେଲେ ମୁଁ ଇନ୍‌କୁଆରୀ କରିବି ନା....ହିଁ...।

ମୋ କଥା କେହି ଶୁଣିଲେ କି ନା ଜାଣେନା। ମୁଁ କିନ୍ତୁ ଛାଟିପିଟି ହୋଇ ବାହାରି ଆସିଲି। ସେମାନେ ପେଲାପଲି ହେଉ ଥାଆନ୍ତି।

ମୁଁ ଚାଲି ଆସିଲି ଗାଁ ମୁଣ୍ଡକୁ। ପର୍ବତର ପାଦ ଦେଶରେ ଗୋଟିଏ ଘଞ୍ଚ କୁଞ୍ଜ। ତା'ରି ଭିତରେ ପଶିଗଲି ଆତ୍ମଗୋପନ କରିବାକୁ।

ଚାରିଆଡ଼େ ତେନ୍ତୁଳି, ସାହାଡ଼ା, ବକୁଳ ଆମ୍ବ ଆଦି ଗଛ ସବୁ ଲଗାଲଗି ଛନ୍ଦାଛନ୍ଦି ହୋଇ ଛିଡ଼ା ହୋଇଛନ୍ତି। ଭେଦ ଜ୍ଞାନ ନାହିଁ, ପରସ୍ପର ପରସ୍ପରକୁ ଆଲିଙ୍ଗନ କରି ନୀରବ ଭାଷାରେ ଯେପରି କଥାବାର୍ତ୍ତା କହୁଛନ୍ତି, ଆଉ ମୁରୁକି ହସୁଛନ୍ତି। ମଝିରେ ଗୋଟିଏ ପଥର ଚଟାଣର ଗୋଟିଏ ପାଖରେ କେତେଗୁଡ଼ିଏ ଖାବଡ଼ା ଦେଢ଼ା ମେଢ଼ା ପଥର ସିନ୍ଦୂର ଚନ୍ଦନ ଲାଗି ଡେରା ହୋଇ ରହିଛନ୍ତି। ଏହିପରି ଦଶଟି ବେଦୀ। ପ୍ରତ୍ୟେକ ବେଦୀ ପାଖରେ ମାଟି ତିଆରି କେତେ ହାତୀ, କେତେ ଘୋଡ଼ା, ହାତୀମାନଙ୍କ ଉପରେ ହାଉଦା ପଡ଼ିଛି, ସେ ହାଉଦାରେ ପୁଣି କେତେ କୁଟିକମ ହୋଇଛି, ହାଉଦା ଉପରେ ସିଂହାସନ। ଘୋଡ଼ାମାନଙ୍କ ମୁହଁ ଗୋଲ ଓ ଫମ୍ପା, ଗୋଡ଼ ଗୁଡ଼ିକ ମଧ୍ୟ ଗୋଲ ଓ ଫମ୍ପା; କିନ୍ତୁ ପ୍ରତ୍ୟେକଙ୍କ ଗୋଡ଼ରେ ଗହଣା ତ ପ୍ରତ୍ୟେକଙ୍କ ମୁଣ୍ଡରେ ସିନ୍ଦୂର ଚନ୍ଦନ।

ଗୋଟିଏ ବୁଢ଼ା ଗୋଟିଏ ପହଁରାରେ ଜାଗାଟି ଖରକୁଥିଲା, ମୋତେ ଦେଖି ଓଳିକି ହୋଇ ଦାନ୍ତ ନିକୁଟି ଛିଡ଼ା ହେଲା। ଅତି ବୁଢ଼ା; କିନ୍ତୁ ଦି' ପାଟି ଦାନ୍ତ ଅଛି। ଦାନ୍ତଗୁଡ଼ିକ ହଳଦିଆ, ଆଖିରେ ନେଞ୍ଚରା, ପିନ୍ଧିଛି ଗୋଟିଏ ତେଲଚିକିଟା ଗାମୁଛା। ଗାମୁଛାର ଦୁଇ ପାଖରେ ଧଡ଼ି ଓ ଧଡ଼ିକୁ ଲାଗି ୨/୩ ଇଞ୍ଚ କନା ଗାମୁଛାର ବାକୀ ଅଂଶ ନାହିଁ କହିଲେ ଚଳେ।

ପଚାରିଲେ, ଇୟେ କି ଠାକୁରାଣୀ ହୋ।

ବୁଢ଼ାଟି ଆକାଶକୁ ଚାହିଁଲା, ତା' ପରେ ଠାକୁରାଣୀମାନଙ୍କ ଆଡ଼େ ମୁହଁ କରି ଜୁହାର ହୋଇ କହିଲା, ଆଜ୍ଞା ଦଶ ଭଉଣୀ ଏମାନେ...

ନାଁ କଅଣ ଏମାନଙ୍କର ?

ଆଜ୍ଞା, ଇୟେ ହେଉଛନ୍ତି ବଡ଼ ବ୍ରାହ୍ମଣୀ, ତାଙ୍କ କଡ଼ରେ ତାଙ୍କ ପୁଅ...

ଏମାନଙ୍କୁ ଏପରି ଅଲଗା ହୋଇ ରଖା ହୋଇଛି କାହିଁକି ?

ଆଜ୍ଞା, ଏ ପରା ବ୍ରାହ୍ମଣୀ, ଏଙ୍କ ପାଖରେ ଛେଦା ଲାଗିବ ନାହିଁ, ତେଲ ଲାଗିବ ନାହିଁ। ଭାରୀ ଅଡୁଆ ପୂଜା ଏଙ୍କର। ସେଇଥିପାଇଁ ତାଙ୍କ ଆସ୍ଥାନ ଅଲଗା...

ବାହ୍ମଣୀ ଦେବୀ ବୋଲି ଯାହାକୁ କୁହାଗଲା, ସେ ଆଉ କିଛି ନୁହେଁ ଗୋଟିଏ ପଥର ଛେଲା, ତଳକୁ ଓସାରିଆ, ଉପରକୁ ଗୋଜିଆ। ମୋଟ ପ୍ରାୟ ଇଞ୍ଚେ ହେବ, ତିନିକୋଣିଆ।

ପଚାରିଲି, କିହେ, ମୂର୍ତ୍ତି କାହିଁ ? ଏ ତ ପଥର ଛେଲ୍‌କାଟାଏ ।

ବୁଢ଼ାଟି ଜିଭ କାମୁଡ଼ି ବ୍ୟଥିତ ଭାବରେ ମୋତେ ଚାହିଁ ରହିଲା କିଛିକ୍ଷଣ ।

ଆଜ୍ଞା, ଦେଖନ୍ତୁ, ଏଇ ତାଙ୍କ ହାତ, ଏଇ ଦେଖୁନାହାନ୍ତି ତାଙ୍କ କେଶ ମୁକୁଳା ହୋଇ ଉଡୁଛି ।

ସେ ସବୁ କିଛି ଦେଖି ପାରିଲି ନାହିଁ । କଅଣ ଗୋଟାଏ ଗାର ଅବଶ୍ୟ ଦିଶିଲା; କିନ୍ତୁ ତାକୁ ହାତ ନ କହି ଗୋଡ଼ ବା ଗୋଡ଼ କହି ପାଟି କହିଲେ କିଛି କ୍ଷତି ହେବ ନାହିଁ; କିନ୍ତୁ ବୁଢ଼ା ପକ୍ଷରେ ସେ ହାତ ଛଡ଼ା ଆଉ କିଛି ନୁହେଁ । ସେ ଯାହାକୁ ହାତ ବୋଲି କହୁଛି, ତାକୁ ଖାଲି ଆଖିରେ ଦେଖିଲେ ଚିହ୍ନିବା ଅସମ୍ଭବ । କେତେ କଳ୍ପନା କଲେ ବା ଜାଣିହେବ । ଅସମ୍ଭବ କଳ୍ପନାଶକ୍ତି ଏମାନଙ୍କର ! !..

ତା' ପରେ, ବୁଢ଼ା କହିଚାଲିଲା, ଏ ହେଉଛନ୍ତି ମଙ୍ଗଳା, ତାଙ୍କ ପାଖକୁ ଘଣ୍ଟିଆ ମଙ୍ଗଳା । ରାତିରେ ଘଣ୍ଟିଘାଗୁଡ଼ି ପିନ୍ଧି ବୁଲି ବାହାରନ୍ତି । ଏଙ୍କ ହାବୁଡ଼ରେ ପଡ଼ିଗଲେ ରକ୍ଷା ନାହିଁ । ତା'ରେ ଅଛନ୍ତି ମା' ବୁଗାଳି ଓ ତାଙ୍କ ପାଖକୁ ହରିହର ବୁଗାଳି । ଏ ଦି ଭଉଣୀ ଭାରୀ ସାଙ୍ଗ, ଏକା ସାଙ୍ଗରେ ବୁଲି ବାହାରନ୍ତି, ଏକା ସାଙ୍ଗରେ ଖାଆନ୍ତି । ଏ ଦି' ଭଉଣୀଙ୍କ ନାଁ ଧରି କାଠ କାଟି ଗଲେ ବାଘ ବି ବାଟ ଛାଡ଼ିଦେବ, ଖାଲି ଦେଖାଦେବ ସିନା କତିକି ଆସିବ ନାହିଁ । ତା'ପରେ, ଦେଖନ୍ତୁ, ପାଟମୁଣ୍ଡେଇ, ସୁନ୍ଦର ଓଗୋରା । ଏମାନଙ୍କ ବୟସ ହେଲାଣି, ଏମାନେ ଆଉ ବୁଲି ବାହାରନ୍ତି ନାହିଁ, ଖାଲି ଗାଁ'ର ଦୃଭାଗ୍ୟ (ଦୁର୍ଭାଗ୍ୟ) ପଡ଼ିଲେ କୁହାଟ ଛାଡ଼ନ୍ତି ।

ଯେତେ ଠାକୁରାଣୀଙ୍କ ନାଁ କହିଲା ସବୁ ଗୋଟିଏ ଗୋଟିଏ ପଥର ଛେଲା, କେଉଁଟି ବା ଚାରିକୋଣିଆ, କାହାର ବା ଆକାର ନିର୍ଣ୍ଣୟ କରିବା ଅସମ୍ଭବ । ସେମାନଙ୍କ ଭିତରୁ ପୁଣି ଏ ବୁଢ଼ା ଜାଣେ, କାହାର ବୟସ ହେଲାଣି, କାହାର ବାଳ ମୁକୁଳା, କିଏ ଏକାଠି ଶୁଅନ୍ତି ! ! !

ଆଉ ଆଜ୍ଞା, ଇଆଡ଼େ ଦେଖନ୍ତୁ, ଏ ହେଉଛନ୍ତି ପଶ୍ଚିମା ମା । ଇୟେ ଏଠି ନଥିଲେ । ପଶ୍ଚିମ ଆଡୁ ଆସିଲେ ।

କେବେ ? ପଚାରିଲି ।

କେବେ କେଜାଣି ? ଆଜିକୁ ଶହେ କି ପାଞ୍ଚଶହ ବର୍ଷ ହେବ କିଏ କଳନା କରି ପାରିବ । ଗାଁରେ ଭଲା ମଡ଼କ ପଡ଼ିଥିଲା । ମା' ବାହୁଣୀ ସମ୍ଭାଳି ପାରିଲେ ନାହିଁ; ଏଙ୍କୁ ଡ଼ାକି ଆଣିଥିଲେ । ଲୋକେ ଦେଖିଛନ୍ତି ଆଜ୍ଞା, ରାତି ଅଧରେ, ଗୋଟିଏ ବଡ଼ ଆଲୁଅ ପଶ୍ଚିମ ଆଡୁ ମାଡ଼ି ଆସୁଥାଏ, ଆଉ ଝୁଣାଗନ୍ଧ ଭାସି ଆସୁଥାଏ । ସେଇ ଦିନୁ ସେ ଏଠି ରହି ଯାଇଛନ୍ତି । ଆଉ ଯାଇ ନାହାନ୍ତି ।

ବନ୍ଧ ଉପରୁ କୋଳାହଳ ଭାସି ଆସୁଥାଏ। ମଝିରେ ମଝିରେ ଗୋଟାଏ ଦଳ ପେଲି ନେଉଥାଏ ଆଉ ଗୋଟାଏ ଦଳକୁ ଥୋଡ଼ାଏ ବାଟ ଓ ପୁଣି ସେ ଦଳ ଆର ଦଳକୁ ଘଉଡ଼ାଇ ଦେଉଥାଏ।

ଆଉ ଦେଖନ୍ତୁ ଆଜ୍ଞା; ଏ ହେଉଛନ୍ତି ତଡ଼ରେଇ। ଏଙ୍କର ମାଛ ନହେଲେ ଭାତ ଚଳେ ନାହିଁ; କିଛି ନହେଲେ ଶୁଖୁଆ ଟିକିଏ ଦରକାର। ଇଏ ଗାଁ ଗାଁ ବୁଲନ୍ତି ନିଇତି ରାତିରେ, ଆଉ ହୁରି କରନ୍ତି। ଇଏ ହେଉଛନ୍ତି, ଦର୍ଶନ ଦେଇ ବୁଢ଼ୀ ମା'। ସବା ବଡ଼ ଭଉଣୀ ଏ। ତାଙ୍କ ଆସ୍ଥାନ ଦେଖନ୍ତୁ ସବା ଶେଷରେ। ଏ ଆସ୍ଥାନ ସେ ଜଗି ରହିଥାଆନ୍ତି। ତାଙ୍କ ପାଖରେ ଦେଖନ୍ତୁ ଖୁଣ୍ଟ ପୋତା ହୋଇ ରହିଛି। ଏ ଅନ୍ୟ ଦେବୀ କେହି ଆସିଲେ ବୁଢ଼ୀମା ସେ ଖୁଣ୍ଟ ପାରି କରି ଦିଅନ୍ତି ନାହିଁ। ବାଟ ଓଗାଳନ୍ତି। "କିଏ ତୁମେ ? କାହିଁକି ଆସିଛ ?" ପଚାରି ତାଙ୍କ ହାଲ୍‌ଚାଲ୍ ବୁଝି ବିଦା କରି ଦିଅନ୍ତି।

କାହିଁକି ? ପଚାରିଲି।

ଆଜ୍ଞା, କେତେ ରକମର ଦେବଦେବୀ ବୁଲୁଛନ୍ତି ଚାରିଆଡ଼େ। କିଏ ତା' ଭିତରେ ଭଲ; କିଏ ବା ଓଲାଉଠା, ଝାଡ଼ାବାନ୍ତି କରାନ୍ତି, କିଏ ବା ଗାଁରେ ପଶି କଳି ଲଗାଇ ଦିଅନ୍ତି। ବୁଢ଼ୀମା ସେ ସଭିଙ୍କି ଛାଡନ୍ତି ନାହିଁ ଗାଁ ଭିତରକୁ। ଯଦି ବଳୁଆ କେହି ଆସନ୍ତି ତେବେ ବୁଢ଼ୀମା ତାଙ୍କୁ ଭୋଗରାଗ ଦେଇ ବୁଝାଇ ଶୁଝାଇ ବିଦା କରି ଦିଅନ୍ତି। କୌଣସି ବିପଦ ଗାଁକୁ ଆସିବାର ୮/୧୦ ଦିନ ଆଗରୁ ଏ ଗାଁ ଗାଁ ବୁଲି କୁହାଟନ୍ତି। "ଏ ଘରବାଲା ହୁସିୟାର ରହ।" ଖାଲି ଏତିକି କହନ୍ତି।

ତୁମେ ଶୁଣିଛ ? ପଚାରିଲି।

ହଁ ଆଜ୍ଞା, ତେବେ ଆଜିକାଲି ଅନେକ ସେ ଡାକ ଶୁଣିପାରୁ ନାହାନ୍ତି। ଲୋକମାନଙ୍କ ଭିତରେ ହିଂସା, ଲୋଭ ବଢ଼ି ଚାଲିଛି ନା, ଆଉ ସେ ଡାକ ଶୁଣିପାରୁ ନାହାନ୍ତି।

ତୁମ ବୟସ କେତେ ? ପଚାରିଲି।

ପାଞ୍ଚକୋଡ଼ି।

ତୁମେ ଏଠି କଅଣ କର ?

ମୋ ଘର ଏଇଠି ଆଜ୍ଞା, ମୁଁ ମା'ମାନଙ୍କର ଆସ୍ଥାନ ମାର୍ଜନା କରେ।

ଚାରିଆଡ଼େ ସେତେବେଳକୁ ଅନ୍ଧାର ହୋଇଗଲାଣି। ଶୀତଦିନ; କୁହୁଡ଼ି, ଧୂଆଁ ଗଛ ଉପରେ ଜମିଗଲାଣି। ବନ୍ଧ ଉପରେ କୋଳାହଳ ଥମିନାହିଁ। ସେମାନେ ସମସ୍ତେ ମୋ ଆଡ଼କୁ ଆସୁଛନ୍ତି।

ମୁଁ ସେମାନଙ୍କୁ କହିଲି, ଆଜି କିଛି ହେବ ନାହିଁ। କାଲି ସକାଳୁ ଦେଖାଯିବ। ସମସ୍ତେ ଚାଲିଗଲେ। ମୋର ରହିବା ବନ୍ଦୋବସ୍ତ ସେଇ ବୁଢ଼ାଘରେ ହେଲା।

ଖାଇସାରି ମୁଁ ଶୋଇବାକୁ ଗଲି। ରାତି ପ୍ରାୟ ଅଧ ହେଲାଣି। ନିଦ ମାଡୁ ନଥାଏ। ଭାବୁଥାଏ, କି ଅଦ୍ଭୁତ ଏମାନଙ୍କ ବିଶ୍ୱାସ।

ବୁଢ଼ା ପିଣ୍ଡାରେ ଶୋଇଥାଏ।

ଡାକି ପଚାରିଲି, ହଇହୋ, ବର୍ତ୍ତମାନ ତ ଦେଖୁଛି ଗାଁ ଭିତରେ ଏତେ କଳି, ଏତେ ଅନ୍ୟାୟ ଚାଲିଛି। କାହିଁ ତୁମ ଦର୍ଶନଦେଇ ବୁଢ଼ୀ ବା ଅନ୍ୟ କେହି ତ କୁହାଟ ଛାଡୁ ନାହାନ୍ତି।

କିଏ କହିଲା ଆଜ୍ଞା, ସେ କଥା। ମା'ମାନେ ଡାକୁଛନ୍ତି, କେହି ଶୁଣିପାରୁ ନାହାଁନ୍ତି। ସତରେ ସମୁଦ୍ର ଫଳେ। (କଥାଟାର ଅର୍ଥ ମୁଁ ଏ ପର୍ଯ୍ୟନ୍ତ ବୁଝିପାରି ନାହିଁ) ଦିନେ ଯେତେବେଳେ ଅନ୍ୟାୟ ଏକଦମ୍ ବଢ଼ିଯିବ ସେତେବେଳେ ସବୁ ଶେଷ। ପୁଣି ଆରମ୍ଭ।

ତା'ପରେ ବୁଢ଼ା ହଠାତ୍ ଚମକି ପଡ଼ି ମୁହଁରେ ଆଙ୍ଗୁଳି ଦେଇ କହିଲା, ଚୁପ୍, ଚୁପ୍ ହେଇ ଶୁଣନ୍ତୁ, ମା' ପଶ୍ଚିମା କୁହାଟୁଛନ୍ତି। ବୁଢ଼ା ସାଷ୍ଟାଙ୍ଗ ପ୍ରଣିପାତ କରି ପଡ଼ି ରହିଲା। କହିଲା, ରକ୍ଷା କର ମା ଏ ଗାଁକୁ ...ରକ୍ଷା କର ମା।

ମୁଁ କିନ୍ତୁ କିଛି ଶୁଣି ପାରିଲି ନାହିଁ।

ଛନ୍ଦ ମହାନ୍ତି ପିଣ୍ଡା ଆରପଟେ ଶୋଇଥିଲେ, ପାଟି କରିଲେ, କାହିଁକି ଗୋଟେ ମିଛରେ ବଜର ବଜର ହେଉଚୁ ? ସାହାବଙ୍କୁ ଶୋଇଦେଉ ନାହୁଁ। ଠାକୁରାଣୀଙ୍କ କୁହାଟ ଶୁଣିଛି ଇୟେ...ହ୍ୟାପ୍।

ମୁଁ କିନ୍ତୁ ଭାବୁଥାଏ, "The fear of God is the beginning of knowledge" କଥାର ତାତ୍ପର୍ଯ୍ୟ।

# ମହାପୁରୁଷ ବାଗ

ଗଣତନ୍ତ୍ର ଗୋଟାଏ ଶାସନ ପଦ୍ଧତି ନୁହେଁ, ଆଧ୍ୟାତ୍ମିକ ସାଧନା । କଚ୍ଛଦେଶ ପରାଧୀନତାରୁ ମୁକ୍ତି ପାଇବାର କିଛି ବର୍ଷ ପରର ଘଟଣା-

ଘଟଣାଟି ଘଟିଥିଲା ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେବାର କିଛିଦିନ ପରେ । ଉଦ୍‌ଘାଟନ ବେଳେ ନେତା ମହାଶୟ ଆବେଗଭରା କଣ୍ଠରେ ବକ୍ତୃତା ଦେଇଥିଲେ, ଏ ଉଦ୍ୟାନ ଜାତି-ଧର୍ମ-ଆୟ-ପଦବୀ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଏଠି ଉଚ୍ଚ-ନୀଚ ଭେଦାଭେଦ ନାହିଁ । ଯେ ଏ ଆଦର୍ଶରେ ବିଶ୍ୱାସୀ ନୁହଁ ଏ କଥା ସ୍ପଷ୍ଟ ଜଣାଇ ରଖୁଛି । ଅପିଚ ଏଠି ମେହନ୍ତରର ମଧ୍ୟ ଏକା ବେଞ୍ଚରେ ଉଚ୍ଚପଦସ୍ଥ କର୍ମଚାରୀ ସହିତ ବସିବାର ଅଧିକାର ଅଛି-ଇତ୍ୟାଦି, ଇତ୍ୟାଦି । ବକ୍ତୃତାଟାକୁ ହାତୁଡ଼ି ମାରି ସମସ୍ତଙ୍କ ମୁଣ୍ଡରେ ଢୁକାଇ ଦେବା ପାଇଁ ସେ ବହୁବାର ବଜ୍ରମୁଷ୍ଟିରେ ଟେବୁଲ୍ ବାଡ଼େଇଥିଲେ ।

କିନ୍ତୁ କଥା, କଥା; ବକ୍ତୃତା ବକ୍ତୃତା; ଆଦର୍ଶ, ଆଦର୍ଶ; ଯେମିତି ଅଦାଲତରେ ସାକ୍ଷୀ ସଂପୂର୍ଣ୍ଣ ସତକଥା କହିବ ବୋଲି ଶପଥ ନେଇ ମଧ୍ୟ ମିଛ ଅନର୍ଗଳ କହିଯାଏ ଏବଂ ପଚାରିଲେ କୁହେ, ଆଜ୍ଞା, ସତ କହିଲେ କଅଣ ଦୁନିଆ ଚଳିବ, ନା କେହି ବଞ୍ଚି ପାରିବେ, କିମ୍ବା, ଗୋଟାଏ ପ୍ରକାର ନିୟମ ତିଆରି ହେଲେ ମଧ୍ୟ କୁହାଯାଏ, ନିୟମ ଅକ୍ଷରେ ଅକ୍ଷରେ ପାଳିଲେ କାମ ଅଚଳ ହୋଇଯିବ; ସେମିତି ମହାପୁରୁଷ ବାଗର ଆଦର୍ଶ, ଆଦର୍ଶରେ ହିଁ ରହିଗଲା ।

କାର୍ଯ୍ୟତଃ ଏଠାରେ କେବଳ ସେଇମାନେ ପ୍ରବେଶ କରିବାର ଅଧିକାର ପାଇଲେ, ଯେଉଁମାନଙ୍କର ମାସିକ ଆୟ ଚାରିଅଙ୍କ ବିଶିଷ୍ଟ ରାଶିରୁ ଊଣା ନୁହେଁ, କିମ୍ବା ଯେଉଁମାନେ ଖୁବ୍ ଉଚ୍ଚପଦସ୍ଥ କର୍ମଚାରୀ, କିମ୍ବା ବିଧାନସଭା ଆଦିର ସଭ୍ୟମାନେ । ସେମାନଙ୍କର ପାଖାପାଖି ଲୋକେ ଯିବାକୁ ଭୟ କଲେ, ଅନ୍ୟେ ପରେ କା କଥା ! ତା' ଛଡ଼ା ଉଦ୍ୟାନର ମହାର୍ଘ ପରିବେଶ, ଉଦ୍ୟାନ ଭିତରେ ଥିବା ନୃତ୍ୟଶାଳା, ନୃତ୍ୟଶାଳାରେ ମହାର୍ଘ ପରିଚ୍ଛଦଧାରୀ ପାନରତ ନରନାରୀ, ପାନ ପରେ ଉଲଗ୍ନ ଉତ୍‌ଶୃଙ୍ଖଳତା, ମଖମଲ

ଭଳି ଘାସ, ନାନା ବର୍ଣ୍ଣର ଝରଣା ଇତ୍ୟାଦି ପାଇଁ ସାଧାରଣ ଲୋକେ କେବଳ ଆର୍ଥିକ ଦୃଷ୍ଟିରୁ ନୁହେଁ, ନୈତିକ ଦୃଷ୍ଟିରୁ ମଧ୍ୟ ଭୟ କଲେ ମହାପୁରୁଷ ବାଗ ଭିତରକୁ ଯିବାପାଇଁ ।

କିନ୍ତୁ ଭୟଟା ବାହାରର । ତଥାକଥିତ ସମ୍ମାନିତ ବ୍ୟକ୍ତିମାନେ ମହାପୁରୁଷ ବାଗକୁ ଯାଆନ୍ତି । ତେଣୁ ସାଧାରଣ ଲୋକଙ୍କର ଧାରଣା ଜାତ ହେଲା, ମହାପୁରୁଷ ବାଗକୁ ପ୍ରବେଶ କରି ପାରିଲେ ସେମାନେ ସମ୍ମାନିତ ହେବେ । ମୁନିନାଞ୍ଚ ମତିଭ୍ରମ, ଅତଏବ ଯାହାର ମତିଭ୍ରମ ହୁଏ ସେ ମୁନି – ଏହା ଅଯୌକ୍ତିକ ହେଲେ ମଧ୍ୟ, ଅନେକ କ୍ଷେତ୍ରରେ ଓଲଟାଟା, ସର୍ପରେ ରଜ୍ଜୁଭ୍ରମ ଭଳି, ସତ୍ୟ ବୋଲି ଧାରଣା ଜନ୍ମେ । ସେଇ ଭ୍ରମରେ ପଡ଼ି ଅନେକେ ମହାପୁରୁଷ ବାଗରେ ପ୍ରବେଶ କରିବାର ଯୋଗ୍ୟତା ହାସଲ କରିବା ପାଇଁ ସସ୍ତ୍ରୀକ ମଦ୍ୟପାନ କରିବା, ଅବାଧ ପ୍ରେମ କରିବା, "ଜୀବନ ଗୋଟାଏ ଜୁଆଖେଳ" ଦର୍ଶନ ବିଷୟରେ ପଢ଼ିବା, ତଥାକଥିତ ବଡ଼ ବଡ଼ ଲୋକମାନଙ୍କୁ ନିମନ୍ତ୍ରିତ କରି ଖୁଆଇବା, ଅପେକ୍ଷାକୃତ ଦରିଦ୍ର ବନ୍ଧୁବାନ୍ଧବମାନଙ୍କ ସଂସର୍ଗ ତ୍ୟାଗ କରିବା ଇତ୍ୟାଦି ଅଭ୍ୟାସ କରିବାକୁ ଲାଗିଲେଣି । ମହାପରୁଷ ବାଗରେ ପ୍ରବେଶଟାଇ ହେଲା କାମ୍ୟ । ସେ ଯେ କୌଣସି ପ୍ରକାରରେ ହେଉ । ମାସିକ ଆୟବୃଦ୍ଧି ସାଧୁ ଉପାୟରେ ହେଉ ବା ଅସାଧୁ ଉପାୟରେ ହେଉ; ବରଞ୍ଚ ଅସାଧୁ ଉପାୟରେ ହେଲେ ଭଲ, କାରଣ ସେଥିରେ ଖୁବ୍ ଶୀଘ୍ର ଆୟ ବୃଦ୍ଧିର ସମ୍ଭାବନା ଅଛି । ତା' ସାଙ୍ଗକୁ କିଛି କିଛି ବଡ଼ ବଡ଼ କଥା ଓ ସେ କଥା କହିଲାବେଳେ ଆବେଗ ପ୍ରକାଶ କରିବାର କାଇଦା ହାସଲ କରି ପାରିଲେ ତ ମଣିକାଞ୍ଚନ ସଂଯୋଗ ! ସବୁ ଅସାଧୁତା ସଫଳତାର ସହ ଘୋଡ଼େଇ ହୋଇଯିବ । ଖାଲି ଏତିକି କଷ୍ଟ କରିବାକୁ ପଡ଼ିବ ଯେ, ବକ୍ତୃତା ଦେଲା ପରେ ଜଣେ ଅତି ମଳିମୁଣ୍ଡିଆ ଦେଖି ତା କାନ୍ଧରେ ହାତ ପକାଇ ଦେବାକୁ ପଡ଼ିବ । କିନ୍ତୁ ସେ କଷ୍ଟ କେତେ କ୍ଷଣ ! ଫଟୋ ଉଠାଇବାକୁ ଯେତେ ସମୟ ଲାଗେ । ଫଟୋଗ୍ରାଫର ତ ପ୍ରସ୍ତୁତ ଥିବେ ।

କିନ୍ତୁ ଆମ ରାମା ରାଓ ସେପରି କୌଣସି ଭ୍ରମରେ ପଡ଼ି ନ ଥିଲେ । ତାଙ୍କ ଭ୍ରମ ଜାତ ହେଲା ନିଛକ ବୋକାମିରୁ । ମହାପରୁଷ ବାଗ ଉଦ୍‌ଘାଟନ ବେଳେ ନେତା ମହାଶୟ ଯେଉଁ ବକ୍ତୃତା ଦେଇଥିଲେ, ସେ ତାକୁ ଓଲଟା ବୁଝିଲେ । ଠିକ୍ ବୁଝିଥିଲେ ଧନୀ କିମ୍ବା ପାଦବୀ (ଯେଉଁମାନଙ୍କର ପଦବୀ ଅଛି) ମାନେ । ରାମା ରାଓଙ୍କର ଦୁର୍ଭାଗ୍ୟକୁ (ସେତେବେଳେ ସେ ଅବଶ୍ୟ ସୌଭାଗ୍ୟ ମଣିଥିଲେ) ବକ୍ତୃତା ପରେ ନେତା ମହାଶୟ ତାଙ୍କ କାନ୍ଧରେ ହାତ ରଖି ହସି କଥା କହିଥିଲେ ଏବଂ ସେ ଫଟୋ ସବୁ ଖବରକାଗଜରେ ବାହାରି ଯାଇଥିଲା, ତଥାପି ରାମା ରାଓ ସେ ସବୁକୁ ସତ୍ୟ ବୁଝିବା ଉଚିତ ନଥିଲା । ପ୍ରାୟତଃ ଦେଖାଯାଏ ବାହାରକୁ ଯା ସତ୍ୟ ବା ମିଥ୍ୟା ବୋଲି ଦିଶେ, ପ୍ରକୃତରେ କଥାଟା ଠିକ୍ ତା'ର ଓଲଟା । କିନ୍ତୁ ରାମା ରାଓ ସରଳ ଲୋକ, ତାହାହିଁ ତାଙ୍କର ଦୋଷ । ତାଙ୍କର

ସହକର୍ମୀ ବନ୍ଧୁମାନେ ତାଙ୍କୁ ନେତାଙ୍କ ବକ୍ତୃତାର ନିହାତି ଜଟିଳ ସତ୍ୟଟା ବୁଝାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ, ସେ ବାହାରର ସରଳ ସତ୍ୟଟାକୁ ହିଁ ଗ୍ରହଣ କଲେ ।

ରାମା ରାଓ ଦେଖିବାକୁ ସୁନ୍ଦର । ସେ କବି ପ୍ରକୃତିର । କାମ କରୁ କରୁ ନିଜର ତିଆରି ଗୀତ ସବୁ ଗାଇବା ତାଙ୍କର ଅଭ୍ୟାସ । ସୁନ୍ଦର ଗାଇ ପାରନ୍ତି ସେ । କାମରୁ ଫୁରସତ ପାଇବା ମାତ୍ରେ ସେ ଗୀତ ରଚନା କରିବାକୁ ବସି ଯାଆନ୍ତି ଓ ଦଦରା ହାରମୋନିଅମ୍‌ରେ ସୁର ସଂଯୋଗ କରନ୍ତି । ଗୀତଗୁଡ଼ିକ ତେଲୁଗୁରେ । ତା'ର ଅର୍ଥ କିନ୍ତୁ ବୁଝି ନପାରିଲେ ମଧ୍ୟ ମୁଗ୍ଧ ହୋଇ ଯିବାଭଳି ସୁର ସେସବୁ ଗୀତର । ଜଣକୁ ସେ ଗୋଟିଏ ଗୀତର ଅର୍ଥ ବୁଝାଉଥିବାର ମୁଁ ଶୁଣିଛି; "ମୁଁ ସମସ୍ତଙ୍କ ଗୋଡ଼ ସେବା କରିବାର, ହେ ଜଗନ୍ନାଥ, ତୁମର ଗୋଡ଼ ନଥିବାର ସତ୍‌ତ କି ?" ରାମା ରାଓଙ୍କ ସ୍ତ୍ରୀ ସୁନ୍ଦରୀ । ସେ ମଧ୍ୟ ରାମା ରାଓଙ୍କ ସହିତ ତନ୍ମୟ ହୋଇ ଗୀତ ଗାଆନ୍ତି ଚାରୁ ପାଣି ରାନ୍ଧୁ ରାନ୍ଧୁ ।

ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେଲା ପରେ ରାମା ରାଓ ଓ ତାଙ୍କ ସ୍ତ୍ରୀ ଦୁହିଁଙ୍କ ଇଚ୍ଛା ହେଲା, ସେ ପ୍ରମଦୋଦ୍ୟାନକୁ ଯିବାପାଇଁ । ସମ୍ମାନିତ ହେବାପାଇଁ ନୁହଁ, ନେତା ମହାଶୟଙ୍କ କଥାରେ ଅନୁପ୍ରାଣିତ ହୋଇ । ଦିନେ ଶନିବାର ଉପରଓଳି ସେମାନେ ବାହାରିଲେ । ରାମା ରାଓ ପିନ୍ଧିଲେ ପରିଷ୍କାର ଧୋତି ଓ ପଞ୍ଜାବି, କାନ୍ଧରେ ଚାଦର । ତାଙ୍କ ସ୍ତ୍ରୀ ପିନ୍ଧିଲେ ନାଲି ରଂଗର ଖଣ୍ଡେ ଶାଢ଼ି । ତାଙ୍କର ପଡ଼ୋଶୀ ଓ ବନ୍ଧୁ ରିକ୍‌ସାବାହକ ଗଙ୍ଗାୟା ତାଙ୍କୁ ନେଇଗଲେ ।

ଉଦ୍ୟାନ ଫାଟକ ପାଖରେ ସେତେବେଳେ ଖାଲି ମଟର ଭିଡ଼ । ମଟରରୁ ବାହାରୁଥାଆନ୍ତି ମହାର୍ଘ ପେଣ୍ଟକୋଟ-ପରିହିତ ଓ ମହାର୍ଘ ଝିନବାସ-ପରିହିତ ନରନାରୀମାନେ । ବାହାରିବା ପରେ ସମସ୍ତେ ଗୋଳେଇ ମିଶେଇ ହେଇ ଯାଉଥାଆନ୍ତି । ପୁରୁଷମାନଙ୍କର ଯୁବକସୁଲଭ ପରିପାଟୀ ଓ ନାରୀମାନଙ୍କ ପୀନକୃତ ଅଙ୍ଗ ପ୍ରସ୍ତୁତିରୁ ସେମାନଙ୍କର ବୟସ କଳନା କରିବା ଭୁଲ ହେବ । ଅନେକ ନାରୀ ପୁଣି ଟାଣୁଥାଆନ୍ତି ସିଗାରେଟ୍ । ସେମାନଙ୍କୁ ଦେଖିଲେ ଡାରଉଇନ୍‌ଙ୍କ ମତ ପ୍ରତି ସ୍ୱତଃ ସମ୍ମାନ ଆସିଯାଏ । "ହ୍ୟାଲ୍ଲୋ ମିସେସ୍ ପ୍ରକାଶ, ହ୍ୟାଲ୍ଲୋ, ହ୍ୟାଲ୍ଲୋ ମିଷ୍ଟର ଚକ୍ରବର୍ତ୍ତୀ, ହା' ଡୁଡୁ"ରେ ବାୟୁମଣ୍ଡଳ ମୁଖରିତ ହୋଇ ଉଠିଥାଏ । ଦୂରରୁ ଖାଲି ଶୁଭୁଥାଏ, ହାଉ ହାଉ । ଗାଁ ହାଟ ଗୋଳମାଳ ଭଳି । ଆଉ ଧୂଆଁ, କିଏ ଯେମିତି ଧୂଆଁ ବାଣ ମାରି ଦେଇଛି । ସମସ୍ତେ ଦଳ ଦଳ ହୋଇ ପ୍ରବେଶ କରୁଥାଆନ୍ତି, ଉଦ୍ୟାନ ଭିତରକୁ । ଦରଓ୍ୱାନ ସଲାମ କରି କରି ହଇରାଣ, ହାତ ତା'ର ବଥେଇ ଯିବଣି ନିଶ୍ଚୟ ।

ଏଇ ସମୟରେ ରାମା ରାଓ ଓ ତାଙ୍କ ସ୍ତ୍ରୀଙ୍କୁ ନେଇ ଗଙ୍ଗାୟାର ରିକ୍‌ସା ଫାଟକ ପାଖରେ ଛିଡ଼ା ହେଲା । ରାମା ରାଓ ମଧ୍ୟ ଅନ୍ୟମାନଙ୍କୁ ଅନୁକରଣ କରି ସ୍ତ୍ରୀଙ୍କ ହାତ

ଧରି ରିକ୍‌ସାରୁ ଓହ୍ଲାଇ ଦେଇ ଫାଟକ ପାଖରେ ଛିଡ଼ା ହେଲେ। ଦରଓ୍ୱାନର ହାତ ସଲାମ କରୁ କରୁ ଅଧାରେ ସନ୍ଦିଗ୍ଧ ଭାବରେ ଅଟକିଗଲା ଓ ହଠାତ୍ ପ୍ରସାରିତ ହେଲା, ବାଧା ଦେବାର ଭଙ୍ଗୀରେ। ଯିଏ ପେଣ୍ଟକୋଟ ପିନ୍ଧି ନାହିଁ, ସିଏ କେମିତି ଯିବ ଭିତରକୁ !

କିନ୍ତୁ ସୌଭାଗ୍ୟବଶତଃ ଠିକ୍ ସେଇ ସମୟରେ ମହାପୁରୁଷ ବାଗ୍ ଉଦ୍‌ଘାଟକ ନେତା ମହାଶୟଙ୍କ ମଟର ଗାଡ଼ି ଥମକି ଛିଡ଼ା ହେଲା। ବହୁମୂଲ୍ୟ ମଟର ଆନନ୍ଦରେ ନାଚି ଉଠିଲା। ଓହ୍ଲାଇଲେ  ନେତା ଓ ନେତ୍ରୀ। ସମସ୍ତ ପେଣ୍ଟକୋଟାଧାରୀ ପାଦବୀ ଓ ଧନୀମାନେ ସାଙ୍ଗରେ ଗୋଡ଼େଇ ଗୋଡ଼େଇ ନେଇଗଲେ ମନ୍ତ୍ରୀଙ୍କୁ ଉଦ୍ୟାନ ଭିତରକୁ। ସେ ସୁଅରେ ଦରଓ୍ୱାନର କ୍ଷୀଣ ବାଧା ଭାସିଗଲା। ରାମା ରାଓ ଓ ତାଙ୍କ ସ୍ତ୍ରୀ ମଧ୍ୟ ଭାସିଗଲେ ଭିତରକୁ ସେ ସୁଅରେ ପଡ଼ି। ଭୟରେ ରାମା ରାଓ ଥରେ ମନ୍ତ୍ରୀଙ୍କ ସାମନାକୁ ଲାଗିଯାଇ ହସି ନମସ୍କାର କଲେ। ଇତି ମଧ୍ୟରେ ସେ ଦେଖିଲେ ତାଙ୍କ ସ୍ତ୍ରୀଙ୍କୁ ଭିଡ଼ି ନେଇ ଧରି ଚାଲିଛନ୍ତି ପୁଲିସ୍ ସାହେବ ମିଷ୍ଟର ପ୍ରକାଶ୍। ରାମା ରାଓ ତାହା ଦେଖି ମନେ ମନେ ଗର୍ବ ଅନୁଭବ କଲେ ହେଁ ଭୀତ ଯେ ନ ହେଲେ, ତା ନୁହେଁ।

ସନ୍ଧ୍ୟା ହୋଇଗଲାଣି। ହଠାତ୍ ଜଳି ଉଠିଲା ମହାପୁରୁଷ ବାଗରେ ନାନା ବର୍ଣ୍ଣର ବିଜୁଳି ଆଲୁଅ ସବୁ। ଉଦ୍ୟାନର ଫୁଆରା ସବୁ ହଠାତ୍ ଆନନ୍ଦରେ ଶରଧା ହୋଇ ଲମ୍ଫ ଦେଲେ ଆକାଶକୁ। ବୃକ୍ଷମାନଙ୍କରେ ଜଳି ଉଠିଲା ନାଲି ନେଳି ରଂଗର ଫୁଲସବୁ। ସେ ବୃକ୍ଷଗୁଡ଼ିକ ମଧ୍ୟ ଅଦ୍ଭୁତ। କିଏ ତିନି କୋଣିଆ, କିଏ ଚାରି କୋଣିଆ, କିଏ ପୁଣି ବାଘ ପରି କିଏ ହାତୀ ପରି ! ମୁହୂର୍ତ୍ତକେ ବିଦ୍ୟୁତ୍ ଶକ୍ତିର କୁହୁକରେ ମହାପୁରୁଷ ବାଗ, ମହିଷାସୁର ବାଗରେ ପରିଣତ ହୋଇଗଲା।

ଅଳ୍ପ ସମୟ ପରେ ମହାପୁରୁଷ ବାଗରୁ ନୃତ୍ୟ ଓ ପାନଶାଳାରୁ ରକ୍ ଏଣ୍ଡ୍ ରୋଲ ବାଦ୍ୟ ବାଜି ଉଠିଲା। ସମସ୍ତେ ପାଗଳ ଭଳି ଦୌଡ଼ିଲେ ନୃତ୍ୟଶାଳାକୁ। ନେତା ଓ ନେତ୍ରୀ ମଧ୍ୟ। ରାମା ରାଓ ଙ୍କ ସ୍ତ୍ରୀଙ୍କୁ ଟାଣି ନେଉଥାଆନ୍ତି ମିଷ୍ଟର ପ୍ରକାଶ୍। ରାମା ରାଓ ଙ୍କ ସ୍ତ୍ରୀ ବ୍ୟାକୁଳ ଭାବରେ ଖୋଜୁଥାଆନ୍ତି ତାଙ୍କ ସ୍ୱାମୀଙ୍କୁ। ଏଣେ ରାମା ରାଓ ଙ୍କୁ ଆକ୍ରମଣ କରିଥାଆନ୍ତି ମିସେସ୍ ସାବିତ୍ରୀ ଧନପତି, ପ୍ରସିଦ୍ଧ ବ୍ୟବସାୟୀ କୋଟିପତି ମିଷ୍ଟର ଧନପତିଙ୍କ ସ୍ତ୍ରୀ। ମିସେସ୍ ଧନପତି ଭାବିଥାଆନ୍ତି ରାମା ରାଓ ଜଣେ ବିଧାନସଭାର ସଭ୍ୟ, ଆଉ ମିଷ୍ଟର ପ୍ରକାଶ୍ ଭାବିଥାଆନ୍ତି ରାମା ରାଓଙ୍କ ସ୍ତ୍ରୀ ଜଣେ ନାରୀ ନେତ୍ରୀ।

ମହାପୁରୁଷ ବାଗର ଫାଟକ ବନ୍ଦ ହୋଇଗଲାଣି ସେତେବେଳକୁ। ନୃତ୍ୟଶାଳାରେ ଆରମ୍ଭ ହୋଇ ଗଲାଣି ମଦ୍ୟପାନ। ସମବେତ ନର-ନାରୀ ସମସ୍ତେ ମାଛ ଭଳି ପାନ କରୁଥାଆନ୍ତି ସୁରା। ଆଜି ନେତା-ଇନ୍ଦ୍ର ନିଜେ ନୃତ୍ୟଶାଳାରେ ବିରାଜମାନ ଶଚୀ ଦେବୀଙ୍କ ସହିତ। ସେମାନଙ୍କର ଉପସ୍ଥିତିର ଉପଯୁକ୍ତ ସମ୍ମାନ ଦେବାପାଇଁ ଆଜି

ସମସ୍ତେ ବହୁତ ବହୁତ ପାନ କରିବାକୁ ବାଧ୍ୟ । ଇନ୍ଦ୍ର ଓ ଶଚୀ ଦେବୀ ମଧ୍ୟ ବହୁତ ବହୁତ ପାନ କଲେ । ରାମା ରାଓ ମଧ୍ୟ ମିସେସ୍ ଧନପତିଙ୍କ ବାଧ୍ୟ-ବାଧକତାରେ ପଡ଼ି ପାନ କଲେ । ତେଣେ ତାଙ୍କ ସ୍ତ୍ରୀ ମୁଖରେ ମିଷ୍ଟର ପ୍ରକାଶ୍ ମଧ୍ୟ ପେଗ୍ ପରେ ପେଗ୍ ଢାଳୁ ଥାଆନ୍ତି । ସେ ଖାଲି ହାଁ'ଟାକରି ଛିଡ଼ା ହୋଇଥାଆନ୍ତି, ଆଉ ତାଙ୍କର ଆଖି ବ୍ୟାକୁଳ ଭାବରେ ଖୋଜୁଥାଏ ସ୍ୱାମୀଙ୍କୁ ।

ରକ୍ ଏଣ୍ଡ ରୋଲ୍ ଉଦ୍ଦାମ ଭାବରେ ବାଜି ଉଠିଲା ଏକ ଉଲଗ୍ନ ନୃତ୍ୟର ସାଙ୍କେତିକ ତାଳରେ । ସେ ତାଳରେ ମୁଗ୍ଧ ହୋଇ ସମସ୍ତେ ବେତାଳୁଆ ନାଚିଲେ । କିଛି ସମୟ ପରେ ବାଦ୍ୟର ଶବ୍ଦକୁ ଟପିଗଲା ଚୁ ଚୁ ଶବ୍ଦ । ମିଷ୍ଟର ପ୍ରକାଶ୍ ଆଉ ସେ ଶବ୍ଦ ମଧ୍ୟ ପ୍ରକାଶ କରି ପାରିଲେ ନାହିଁ । ତାଙ୍କର ମାତାଲ ଓଷ୍ଠ ଯୁଗଳ ମିସେସ୍ ରାମା ରାଓଙ୍କ ଗଣ୍ଡଦେଶରେ ଲାଖି ରହିଲା । ନେତା ମହାଶୟ ଟଳି ଟଳି ଆସି, ହସି ହସି ମିଷ୍ଟର ପ୍ରକାଶଙ୍କୁ ଠେଲି ଦେଇ ରାମା ରାଓ ଙ୍କ ସ୍ତ୍ରୀଙ୍କୁ ନେଇ ନାଚିବାକୁ ଲାଗିଲେ ଉଦ୍ଦାମ ଭାବରେ ।

ସେତେବେଳେ ରାମା ରାଓ ଥାଆନ୍ତି ମିସେସ୍ ଧନପତିଙ୍କ ବଜ୍ର ଆଲିଙ୍ଗନରେ । ମିସେସ୍ ଧନପତି କହୁଥାଆନ୍ତି, ଡାର୍ଲିଂ ତୁମେ କିଏ ? ଯିଏ ହୁଅ, ଗୋଟିଏ ମତୁଆଲା ଗୀତ ଗାଅ ।

ରାମା ରାଓ ଙ୍କୁ ନିଶା ଘାରିଥିଲେ ମଧ୍ୟ ଯଥେଷ୍ଟ ଜ୍ଞାନ ଥାଏ । ଗୀତ ଗାଇବାକୁ ସେ କୁଣ୍ଠାବୋଧ କରୁଥାଆନ୍ତି । କିନ୍ତୁ ଯେତେବେଳେ ମିସେସ୍ ଧନପତି ତାଙ୍କ ଉପରେ ଚଢ଼ି ଯାଇ କାଖ ହୋଇ ପଡ଼ି ବାରମ୍ବାର ଅନୁରୋଧ କଲେ, ସେତେବେଳେ ରାମା ରାଓ ଆଉ ସମ୍ଭାଳି ନ ପାରି ଖୁବ୍ ଉଚ୍ଚ ସ୍ୱରରେ ଗାଇବାକୁ ଲଗିଲେ ସେଇ ଗୀତ, ଯାହାର ଅର୍ଥ, "ମୁଁ ସମସ୍ତଙ୍କ ଗୋଡ଼୍‌ଡ଼ ସେବା କରିବାର, ହେ ଜଗନ୍ନାଥ, ତୁମ ଗୋଡ଼୍‌ଡ଼ ନଥିବାର ସତ୍ତ କି ?" ନା, ନା, ନା, ନା ରାମା ରାଓଙ୍କ ମତରେ ଏ ଗୀତ ତାଙ୍କର ଶ୍ରେଷ୍ଠ ରଚନା, ସମସ୍ତେ ଶୁଣି ମୁଗ୍ଧ ହୋଇଯିବେ ।

କିନ୍ତୁ ହାୟ ! ହଠାତ୍ ଏପରି ବେଖାପ୍ପା ଅଭ୍ୟାସ ଗୀତ ଶୁଣି ରକ୍ ଏଣ୍ଡ ରୋଲ୍ ବାଦ୍ୟ ବନ୍ଦ ହୋଇଗଲା । ସମସ୍ତେ କ୍ରୁଦ୍ଧ ଭାବରେ ଅନାଇ ରହିଲେ ରାମା ରାଓ ଆଡ଼େ । ନେତା ଗର୍ଜିଉଠିଲେ, ହୁଏ ଇଜ୍ ଦ୍ୟାଟ୍ ଫୁଉଲ୍ ? ସମସ୍ତ ନରନାରୀ ଗର୍ଜି ଉଠିଲେ ଶତ ଫଣିନୀ ଭଳି, ହୁ ହୁ, ହୁ, ହୁ, ....। ନୃତ୍ୟଶାଳା ଭିତରେ ହୁ ହୁ ଝଡ଼ ବୋହିଗଲା । ସମସ୍ତେ ନାଚ ବନ୍ଦକରି କ୍ରୁଦ୍ଧ ନୟନରେ ଛିଡ଼ା ହୋଇ ଥାଆନ୍ତି ।

ରାମା ରାଓଙ୍କ ନିଶା ନିମିଷକେ ଉଭେଇ ଗଲା । ସେ ନେତାଙ୍କ ଆଡ଼େ ହସି ଚାହିଁ ରହିଲେ, ଆଜ୍ଞା ମୋତେ ଚିହ୍ନପାରୁ ନାହାଁନ୍ତି ? ମୁଁ ପରା ମୋଚି ରାମା ରାଓ,

ଆପଣଙ୍କ ଜୋତା କେତେ ଥର ମରାମତି କରି ଆପଣଙ୍କ ଘରକୁ ନେଇଯାଇଛି । ଆପଣଙ୍କ ସହିତ ମୋର ଫଟୋ ବାହାରିଛି ଖବର କାଗଜରେ ।

"ହୁଁ ହୁଁ ?" ଝଡ଼ ଆହୁରି ଜୋରରେ ବୋହିବାକୁ ଲାଗିଲା । ଗଳା ଧକ୍କା ଖାଇ ରାମା ରାଓ ଓ ତାଙ୍କ ସ୍ତ୍ରୀ ନୃତ୍ୟଶାଳାରୁ ବିତାଡ଼ିତ ହେଲେ ।

ତାହାର କିଛିଦିନ ପରେ ଦିନେ ଦେଖିଲି ରାମା ରାଓଙ୍କ ଘର ପାଖରେ ପୁଲିସ୍ । ପଚାରି ବୁଝିଲି, ରାମା ରାଓ ପୁଲିସ୍ ସାହେବଙ୍କ ଘରୁ ଜୋତା ଚୋରି କରିଥିବାରୁ ପୁଲିସ୍ ତାକୁ ଧରିବାକୁ ଆସିଛି । ରାମା ରାଓ କୁ ହାତକଡା ପକାଇ ପୁଲିସ୍ ନେଇଗଲେ । ରାମା ରାଓ ଙ୍କ ସ୍ତ୍ରୀ କାନ୍ଦି ଉଠି କହିଲେ, କାହିଁକି ତୁମେ ମନ୍ତ୍ରୀଙ୍କ କଥାରେ ଭୁଲି ସେ ପୋଡ଼ାବଗିଚାକୁ ଯାଇଥିଲ ଗୋ....କାହିଁକି !

ରାମା ରାଓଙ୍କୁ ପଚାରିଲି, କଥାଟା କଅଣ ରାମା ରାଓ ? ତୁମେ ଜୋତା ଚୋରି କରିଚ ସତେ ?

ରାମା ରାଓଙ୍କ ଆଖିରୁ ପାଣି ଝରି ପଡ଼ିଲା । ସେ ମ୍ଳାନ ଭାବରେ ହସି କହିଲେ, ଏକଦମ୍ ମିଛ କଥା ଆଜ୍ଞା ।

ମୋର ମହାପୁରୁଷ ବାଗ୍ ଭିତରକୁ ଯିବାର ଫଳ ଇଏ । ବିଶ୍ୱାସ ନ କରି ପଚାରିଲି, କିନ୍ତୁ ତୁମ ଘରୁ ତ ପୁଲିସ୍ ସାହେବଙ୍କ ଜୋତା ବାହାରିଲା ?

ସେ ସେମିତି ହସି କହିଲେ, ମୁଁ ବି ତ ବୁଝି ପାରୁନାହିଁ ସେ କଥା ।

ରାମା ରାଓ ଜେଲ୍ ହାଜତରେ ରହିଲେ । ତାକୁ ଜାମିନ୍‌ରେ ମଧ୍ୟ କେହି ନେଲେ ନାହିଁ । ଛ' ମାସ ପରେ ବିଚାର ଶେଷ ହେଲା । ରାୟ ହେଲା ଚୋରି ପ୍ରମାଣିତ ହୋଇ ଥିବାରୁ ରାମା ରାଓକୁ ଛ' ମାସ ଜେଲ । ରାମା ରାଓ ଓକିଲ ଦେବାକୁ ନାରାଜ ହେଲା ଏବଂ ଦୋଷ ସ୍ୱୀକାର କଲା । ବିଚାରକଙ୍କୁ ବିଶେଷ କଷ୍ଟ ପଡ଼ିଲା ନାହିଁ ବିଚାର କରିବାକୁ ।

ଛ' ମାସ ଜେଲ ମିଆଦି ପରେ ରାମା ରାଓ ଜେଲ୍‌ରୁ ଖଲାସ ହୋଇ ବାହାରିଲେ ଉପରଓଳି । ସେଦିନ ଥାଏ ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେବାର ବାର୍ଷିକ ଉତ୍ସବ । ରାମାରାଓ ସେଇବାଟେ ଘରକୁ ଫେରୁଥାନ୍ତି । ଫାଟକ ପାଖରେ ଛିଡ଼ା ହୋଇ ସେ ମାଇକ୍ ବାହିତ ନେତାଙ୍କ ଗୁରୁଗମ୍ଭୀର ବକ୍ତୃତା ଶୁଣିଲେ, "ମହାପୁରୁଷ ବାଗ ତା'ର ଆଦର୍ଶରେ ଆଗେଇ ଚାଲିଛି, ଜାତି-ଧର୍ମ-ଆୟ-ପଦବୀ ନିର୍ବିଶେଷରେ ଏଠି ସମସ୍ତଙ୍କର ପ୍ରବେଶ ଅଧିକାର ଅଛି, ମୁଁ ଆଜି ପୁଣି ଥରେ ଜଣାଇ ରଖୁଛି, ଏ ଦେଶରେ ଆଜି ଗଣତନ୍ତ୍ର ଶାସନ ଥିବାରୁ ଦେଶ ଆଗେଇ ଚାଲିଚି ହୁ ହୁ କରି..."

ରାମା ରାଓ ଶୁଣି ମ୍ଳାନ ଭାବରେ ହସିଲେ । ହଠାତ୍ ଦୁମ୍ ଦୁମ୍ ଶବ୍ଦ ଶୁଣି ଚମକି ପଡ଼ି ରାମା ରାଓ ଦେଖିଲେ ନେତା ଟେବୁଲ୍ ଉପରେ ବିଧା ମାରୁଛନ୍ତି ।

ରାମା ରାଓ ଏଥର ଠୋ ଠୋ କରି ହସି ଉଠିଲେ । ଦରଓ୍ୟାନ୍ ତାଙ୍କୁ ସେଠାରୁ ତଡ଼ି ଦେଲା । ଘରକୁ ଆସି  ରାମା ରାଓ ଦେଖିଲେ ସ୍ତ୍ରୀ ନାହିଁ । ଶୁଣିଲେ ପୁଲିସ୍ ତାଙ୍କୁ କେବେଠୁଁ ଧରି ନେଇ ଯାଇଥିଲା ପୁଲିସ୍ ସାହେବ ଘରକୁ । ତା'ପରେ ସେ ହଠାତ୍ କୁଆଡ଼େ ଚାଲିଯାଇଛି ।

ଘରର ଏକ କୋଣରେ ତାଙ୍କର ଦଦରା ହାରମୋନିୟମ୍, କବିତାଖାତା ଓ ଜୋତା ମରାମତି ସାଜସରଞ୍ଜାମଗୁଡ଼ିକ ସାଇତା ହୋଇ ଥୁଆ ହୋଇଛି । ଗଲାବେଳେ ତାଙ୍କ ସ୍ତ୍ରୀ ସେ ସବୁ ସଜାଡ଼ି ସାଇତି ରଖିଦେଇ ଯାଇଛନ୍ତି । ରାମା ରାଓ କବିତାଖାତା ଆଣି କବିତା ଲେଖି ବସିଲେ ।

କି କବିତା ଲେଖିଲେ କେଜାଣି ?

*(ଗଳ୍ପଟି ସଂପୂର୍ଣ୍ଣ କାଳ୍ପନିକ, ଏବଂ ସାହିତ୍ୟ ଆଳାପନୀ, କେନ୍ଦ୍ରାପଡ଼ା ଆନୁକୂଲ୍ୟରୁ ପ୍ରାପ୍ତ)*

# ହୋଲି

ଋତୁରାଜ ବସନ୍ତ ସମାଗତ। ଶୀତର ଜଡ଼ତା ଛାଡ଼ି ପୃଥିବୀ କ୍ରମେ ପ୍ରଖର ସୂର୍ଯ୍ୟ ଆଡ଼କୁ ଅଣେଇ ପଡୁଛି। ମଝିରେ ଏଇ ରସମୟ ସ୍ଥିତି। ଗଛ ସବୁ କଅଁଳିଆ ପତ୍ରରେ କମନୀୟ ଦିଶୁଛି। ପଲାଶବନରେ ନିଆଁ ଲାଗିଛି। ଆମ୍ରତୋଟାରେ କୋଇଲି ତୁହାଇ ତୁହାଇ ଅଧୀର ଭାବରେ ଡାକି ଚାଲିଛି। ମଧୁମଦଲୋଭୀ ଭ୍ରମରମାନେ ଚୂତମଞ୍ଜରୀ ସୁବାସରେ ଉନ୍ମତ୍ତ ହୋଇ ଏ ଗଛରୁ ସେ ଗଛ ଧାଉଁଛନ୍ତି। ଚାରିଆଡ଼େ ଅପୂର୍ବ କମନୀୟ ଶୋଭା। ଜଳେସ୍ଥଳେ ମରୁତ୍‌ବ୍ୟୋମେ ବସନ୍ତର ବୈଜୟନ୍ତୀ। ଦେହରେ ମନରେ ଅପୂର୍ବ ସମ୍ବେଦନର ଶିହରଣ।

ନବୀନ ବର୍ଷାର ମେଘ ଭଳି ଯାହାଙ୍କର କାନ୍ତି, କିରୀଟରେ ଯାହାଙ୍କର କୋଟି କୋଟି ସୂର୍ଯ୍ୟ ବିରାଜିତ, "ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ଯା ଲୋମକୂପେ ବିରାଜଇ", ଯାହାଙ୍କର ବଂଶୀ ଅହରହ ପ୍ରତ୍ୟେକ ଜୀବକୁ ଡାକୁଚି ଆସ ଆସ ବୋଲି, ସେଇ ବାସନ୍ତୀ ବସନ ପରିହିତ, ଆଜାନୁଲମ୍ବିତ ବନମାଳାଶୋଭିତ, ଅତି କମନୀୟ ସୁଠାମ କିଶୋର ବିଗ୍ରହ ବସନ୍ତୋତ୍ସବରେ ମାତିଛନ୍ତି। ହୋଲି ଖେଳତ ନନ୍ଦକୁମାର। ଆମେ ଆମରି ମନର ମାଧୁରୀ ମିଶାଇ କରିଅଛୁ ତାଙ୍କୁ ରଚନା, ବୈଜ୍ଞାନିକମାନେ ବସନ୍ତର ବା ବସନ୍ତୋନ୍ମାଦନାର ଯେକୌଣସି କାରଣ ବାଢ଼ନ୍ତୁ ନା କାହିଁକି ?

ଆଜି ଦଶମୀ ତିଥି; କିନ୍ତୁ ଏକାଦଶୀ ମଧ୍ୟ ପଡ଼ିଥିବାରୁ ପଞ୍ଚଦୋଳ ଆରମ୍ଭ ଆଜିଠୁଁ। କୁଶଭଦ୍ରାର ଏପାରି କୁଶୁପୁରର ଲୋକ ଆଜିଠୁ ପାଞ୍ଚଦିନ ଶ୍ରୀଶ୍ରୀରାଧାବଲ୍ଲଭ ଜୀଉଙ୍କୁ ନେଇ ମାତନ୍ତି, ଅବିର ଖେଳନ୍ତି। ପ୍ରତିବର୍ଷ ପରି ଆଜି ଶ୍ରୀଶ୍ରୀରାଧାବଲ୍ଲଭ ଦୁଆର ଦୁଆର ବୁଲି ଆନନ୍ଦ ବିତରଣ କରୁଛନ୍ତି। ହୋଲିଆମାନେ ଅବିରଥାଳି ଧରି ମାଦଳ ବଜାଇ ଗାଇ ଗାଇ ଯାଉଛନ୍ତି– ରାଧାବଲ୍ଲଭମୋହନ ଖେଳେ ହୋରି...। ପିଲାଏ କାଲୁରୁ-ବାଲୁରୁ ଆଗେ ଆଗେ ନାଚି ଯାଉଛନ୍ତି। ପ୍ରତ୍ୟେକ ମୁହଁରେ ଅବିର ବୋଳି ହୋଇ ତାଳପତ୍ର ବାନ୍ଧି ମାଙ୍କଡ଼ ସାଜିଛନ୍ତି। କାହାକୁ ଧୋବଧୋବଳିଆ ଦେଖିପକେଇଲେ ତ

ମାଦଳ ଆହୁରି ଜୋର୍‌ରେ ବାଜିଉଠେ। ପିଲାଏ କିଳିକିଳା ନାଚରେ ଗଗନପବନ କମ୍ପାଇ ଦଉଡ଼ନ୍ତି ତା' ପାଖକୁ। ଆଉ ହୋଲିଆମାନେ ଆନନ୍ଦରେ ଗାଆନ୍ତି-

କୋଇ କୋଇ ଗାଓ୍ୱତ          କୋଇ କୋଇ ବଜାଓ୍ୱତ

କୋଇ କୋଇମାରତ ପିଚ୍‌କାରୀ...।

ଦିନ ଦ୍ୱିପ୍ରହର ସରିକି ହେଲାଣି। ଗାଁ ବୁଲା ସାରି ଠାକୁରେ ନଈଆଡ଼କୁ ଢଳି ଢଳି ଆସୁଥାନ୍ତି। କୁଶଭଦ୍ରା ନଦୀରେ ସ୍ନାହାନ ସାରି ବାହୁଡ଼ିବେ। ହୋଲିଆମାନେ ଇତ୍ୟବସରରେ ମଧ୍ୟ ଗାଧୋଇ ନେବେ।

ଆଜି ଇଦୁଜ୍ଜୁହା-କୁରବାନି ଦିନ ମଧ୍ୟ ପଡ଼ିଥାଏ। ରହିମ୍ ଖାଁ ଠିକ୍ ଏଇ ସମୟରେ କୁଶଭଦ୍ରାର ଆରପାରିରୁ, ଅହମ୍ମଦପୁରରୁ (ଯାହାକୁ ଏପାରିର ଲୋକେ ଆଜିକାଲି ଜନାନ୍ତିକେ ପାକିସ୍ତାନପୁର ବୋଲି କହନ୍ତି) ବାହାରି ନଈ ପାରି ହୋଇ ଯାଉଥାନ୍ତି କୁଶୁପୁରରେ ରାମ ପଧାନଙ୍କ ଘରକୁ ମୁବାରକ୍ ଜଣାଇବାକୁ। ହାତରେ ତାଙ୍କର ଗୋଟିଏ ଥାଳି, ଥାଳିରେ ଅଛି ବିରିଆନି, କବାବ, ପଲାଉ ଇତ୍ୟାଦି। ରହିମ୍‌ଙ୍କ ବିବି ଜେବୁନ୍‌ନିସା ଭାରି ଭଲ ରାନ୍ଧି ଜାଣନ୍ତି। ସେ ନିଜେ ତାଙ୍କ ପ୍ରିୟ ଦିଅର ରାମ ପଧାନଙ୍କ ପାଇଁ ଏସବୁ ରାନ୍ଧି ମିଆଁଙ୍କ ହାତରେ ପଠାଇଛନ୍ତି।

ରାମ ପଧାନ ଓ ରହିମ୍ ଖାଁ ଆବାଲ୍ୟ ବନ୍ଧୁ। ରହିମ୍ ଅବଶ୍ୟ ରାମ ପଧାନଙ୍କ ଭାଗଚାଷୀ; କିନ୍ତୁ ତାଙ୍କ ବଂଶବଂଶାନୁକ୍ରମେ ଅହମଦପୁରର ଖଲିଫା। ଖଲିଫା ବଂଶ ଓ ପଧାନ ବଂଶର ବନ୍ଧୁତ୍ୱ ଅର୍ଥନୈତିକ ଓ ସାମାଜିକ ଆଦି ବାଧା ଅତିକ୍ରମ କରି ଅନ୍ୟ ଏକ କ୍ଷେତ୍ରରେ ମିଳିତ ହୋଇଚି ଆଜିକୁ ଚାରିପୁରୁଷ ହେବ। ଖଲିଫାବଂଶ ହେଉଛି ପଧାନ ବଂଶର ସୂର୍ଯ୍ୟମଇତ୍ର ବନ୍ଧୁ। ଗୋଟିଏ ବଂଶର କୌଣସି କ୍ରିୟାକର୍ମ ହେଲେ ଅନ୍ୟ ବଂଶର ସ୍ତ୍ରୀ ପୁରୁଷମାନେ ସେଥିରେ ଯୋଗ ଦିଅନ୍ତି, ବାହାଘର ହେଲେ ତେଲ ହଳଦି ଯାଏ ଓ ବେଭାର ଆସେ। ହୁଏତ କେବେ ସାମାଜିକ ଆପତ୍ତି ଉଠିଥିଲା; କିନ୍ତୁ ବର୍ତ୍ତମାନ ଏ ଦୁଇ ବଂଶ ମଧ୍ୟରେ ବନ୍ଧୁତ୍ୱ ଏକ ଆଦରଣୀୟ ବ୍ୟତିକ୍ରମ ବୋଲି ସ୍ୱୀକୃତ ହୋଇସାରିଚି। ପୁଣି ରହିମ୍ ଖାଁ ଅହମ୍ମଦପୁରର ଖଲିଫା ଓ ରାମ ପଧାନ କୁଶୁପୁରର ଗଣ୍ୟମାନ୍ୟ ଲୋକ। ସ୍ୱାର୍ଥାନ୍ଧ ନେତାମାନେ ଧର୍ମ ଭିତ୍ତିରେ ଭାରତକୁ ଭାଗ ଭାଗ କରିଦେଇଥିବା ପରେ ମଧ୍ୟ ଭିତରେ ଯାହା ଥାଉ ନା କାହିଁକି, ଏ ଦୁଇ ଗାଁ ଭିତରେ ଭିତରେ ବାହାରର ସଦ୍‌ଭାବ ରକ୍ଷା ହୋଇ ଆସିପାରିଚି। ବ୍ୟକ୍ତିଗତ ଭାବରେ ଦେଖିବାକୁ ଗଲେ ଏ ବନ୍ଧୁତ୍ୱ ରହିମ୍ ଖାଁ ଓ ରାମ ପଧାନଙ୍କ ମାନସିକ ବ୍ୟାପ୍ତି ଅନେକ ବଢ଼ାଇ ଦେଇପାରିଚି। ଧର୍ମ ପ୍ରତି ଦୁହିଁଙ୍କର ଆନ୍ତରିକତା ଥିବାରୁ ପ୍ରତିଦିନ ସନ୍ଧ୍ୟାବେଳେ, ରାମ ପଧାନ ଘରେ ହେଉ ବା ରହିମ୍ ଖାଁ ଘରେ ହେଉ, ଦୁହେଁ ମିଶି ଗୀତା, କୋରାନ୍ ଶରିଫ୍ ବିଷୟରେ ଚର୍ଚ୍ଚା କରନ୍ତି, ମୁଗ୍‌ଧ ହୁଅନ୍ତି, ଆନନ୍ଦିତ ହୁଅନ୍ତି।

ରହିମ୍ ନଈବନ୍ଧ ଉପରକୁ ଉଠିଲାବେଳକୁ ଶ୍ରୀଶ୍ରୀରାଧାବଲ୍ଲଭ ଢଳି ଢଳି ଆସୁଥାନ୍ତି। ରାମ ପଧାନଙ୍କ ନାତି ପ୍ରଥମେ ରହିମ୍‌ଙ୍କୁ ଦେଖିପକାଇ ପାଟିକଲା, ଆରେ ହେଇରେ ଅଜା! ବଡ଼ବଡ଼ିଆମାନେ 'ହାଁ ହାଁ' କହୁ କହୁ ନାତି ଯାଇ ଅଜାଙ୍କ ଦାଢ଼ିରେ ଅବିର ବୋଳିଦେଇ ତାଳିମାରି ନାଚିଲାଣି। ରହିମ୍ ପ୍ରଥମେ ଦାନ୍ତ ନିକୁଟି ହସିଦେଲେ; କିନ୍ତୁ ତତ୍‌କ୍ଷଣାତ୍ ଗମ୍ଭୀର ହୋଇଗଲେ। ତାଙ୍କର ମନେ ପଡ଼ିଗଲା ଅଳ୍ପଦିନ ତଳେ ଦୁଇ ଗାଁ ଭିତରେ ଗୋହତ୍ୟା ନିରୋଧ ନେଇ ଯେଉଁ କାଣ୍ଡ ଘଟିଯାଇଛି ସେଥିରେ ଅହମଦପୁରର ସମସ୍ତେ ଉତ୍ୟକ୍ତ ହୋଇ ଅଛନ୍ତି। ସେ ରାଗ କୌଣସିମତେ ଥତାମତା ହୋଇ ରହିଚି। ଗୋରୁମାଂସ ଖାଇଲେ ନାନା ରୋଗ ହୁଏ, ତେଣୁ ତାକୁ ନ ଖାଇବା ଭଲ ଏବଂ ଆମ ହିନ୍ଦୁ ଭାଇମାନେ ଆମରି ଭଲପାଇଁ କହୁଚନ୍ତି, ଏ କଥା ଖଲିଫା ବୁଝାଇବାରୁ ଅହମଦପୁରିଆମାନେ ନ ବୁଝି ମଧ୍ୟ ବୁଝିଲା ପରି ରହିଛନ୍ତି; କିନ୍ତୁ ଏ ଅପମାନ ମନ ଭିତରେ ରାଗକୁ କୁହୁଳାଉଚି ଅନବରତ। ଗୋମାଂସ ତ୍ୟାଗରେ କିଛି କଥା ନାହିଁ ଯେ, ସେ କଥାକୁ ବାଧ୍ୟ କରାଇବା ଦ୍ୱାରା ତାଙ୍କର ଧର୍ମ ଓ ବ୍ୟକ୍ତିତ୍ୱକୁ ଘୃଣା ଭଳି ତାଙ୍କୁ ଲାଗୁଛି। ତେଣୁ ଆଜି ପୁଣି ହଠାତ୍ କି କାଣ୍ଡ ହେବ କିଏ ଜାଣେ। ସେତେବେଳକୁ ଅନ୍ୟ ପିଲାଏ ରହିମ୍‌ଙ୍କୁ ଘେରିଯାଇ ସାରିଲେଣି। ରହିମ୍ ଥାଳିଆ ଟେକି ଧରି ବଡ଼ ପାଟିକରି ଚିତ୍କାର କରୁଥାଏ 'ଆରେ ହମ୍ ମୁସଲମାନ'; କିନ୍ତୁ ପିଲାଏ ସେ କଥା ଶୁଣିବା ଅବସ୍ଥାରେ ନାହାନ୍ତି। ରହିମ୍ ଭୟାର୍ତ୍ତ ଦୃଷ୍ଟିରେ ଅହମଦପୁର ଆଡ଼େ ଚାହିଁଲେ। ଗାଁର ଅନ୍ୟ ମୁସଲମାନ ଭାଇଙ୍କ କଥା ନ ମାନି ସେ ଆଜି ଆସିଛନ୍ତି; ତେଣୁ କଥାଟା ଅଧିକ ଖରାପ ଲାଗୁଚି, ଅଧିକ ଭୟର କାରଣ ମଧ୍ୟ ଅଛି। ହୋଲିଆମାନଙ୍କ ମଧ୍ୟରେ ବଡବଡ଼ିଆମାନେ ମଧ୍ୟ ତାଟକା ହୋଇ ଚାହିଁ ରହିଥାନ୍ତି କିଂକର୍ତ୍ତବ୍ୟବିମୂଢ଼ ଭାବରେ।

ନିମିଷକେ ହଠାତ୍ ସବୁ ଓଲଟପାଲଟ ହେଇଗଲା। ଫୁଲ ଭିତରୁ ହଠାତ୍ ଯେପରି ଗୋଖର ସାପ ବାହାରିପଡ଼ିଲା। ଅହମ୍ମଦପୁରର ଟୋକାଏ ଛପି ସବୁ ଦେଖୁଥିଲେ। ଏଇ ଘଟଣା ଆଳରେ ସେମାନେ ପୂର୍ବ ଅପମାନର ଦାଉ ସାଧିବା ପାଇଁ ଦଳ ଦଳ ହୋଇ ଠେଙ୍ଗା, ବାଡ଼ି, ତେଣ୍ଟା, ଶାବଳ ଆଦି ଧରି 'ମାରେ ଶାଲେ କାଫେର୍‌କୋ' 'ଆଲ୍ଲାହୁ ଆକବର' 'କୁର୍‌ବାନି, କୁର୍‌ବାନି' ଚିତ୍କାର କରି ଡିଆଁ ମାରି ଦୌଡ଼ି ଆସିଲେ। କୁଶୁପୁରର ଜଣେ ଦୌଡ଼ି ଯାଇ ଗାଁରେ ଖବର ଦେବାରୁ ସିଆଡୁ ମଧ୍ୟ ସେମିତି ଦଳ ଦଳ ହୋଇ 'ରାଧାବଲ୍ଲଭକୀ ଜୟ' କହି ଦୌଡ଼ିଲେ ନଈବାଲିକୁ। ନଈବାଲି ଉପରେ ଦୁଇ ଦଳ ମଧ୍ୟରେ ଖଣ୍ଡଯୁଦ୍ଧ ଲାଗିଗଲା।

ରହିମ୍ ପ୍ରଥମେ ଆବାକାବା ହୋଇ ନଈବନ୍ଧ ଉପରେ କିଛିକ୍ଷଣ ଛିଡ଼ାହୋଇ ରହିଲେ। ଦେହ ତାଙ୍କର ଥରୁଥାଏ। ବାଧା ଦେବାର ଶକ୍ତି ତାଙ୍କର ନଥାଏ; କିନ୍ତୁ ସେ

ଯେ ନିଜକୁ ଏସବୁ ପାଇଁ ଦାୟୀ ମନେ କରି କିଛି ଗୋଟାଏ କରିବାକୁ ହିଁ ହେବ ଭାବି ଦୌଡ଼ିଲେ ଦଙ୍ଗା ଭିତରକୁ; କିନ୍ତୁ ମଣିଷ ହୋଇ ଆଉ ସେତେବେଳେ କେହି ନଥାନ୍ତି। ସମସ୍ତେ କ୍ରୋଧର ଏକ ଏକ ବୋଧହୀନ ଯନ୍ତ୍ର। ତାଙ୍କ କଥା କାହାରି କାନରେ ପଡ଼ିଲା ନାହିଁ। ସେ ଧକ୍କା ଖାଇ ଖାଇ ଛିଟିକି ପଡ଼ିଲେ ନଈ ଭିତରକୁ। ଆଖି ଆଗରେ ଦେଖିଲେ ସଙ୍ଗାତ ରାମ ପଧାନଙ୍କ ପୁଅ ନବ ଅବଦୁଲ୍‌ର ମୁଣ୍ଡ ଏକା ଶାବଳ ପାହାରକେ ଦି ଫାଳ କରିଦେଲା। ଅବଦୁଲ୍‌ର ସର୍ବାଙ୍ଗ ରକ୍ତରେ ବୁଡ଼ିଗଲା। ତଥାପି ଅବଦୁଲ୍ ପଡ଼ିବା ଆଗରୁ ନବ ଛାତିରେ ଶାବଳ ଭୁଷି ଦେବାରୁ ନବ ଛାତିରୁ ରକ୍ତ ଫୁଆରା ଭଳି ବାହାରି କୁଶଭଦ୍ରାର ତତଲା ବାଲିରେ ପଡ଼ିବାକୁ ଲାଗିଲା। ଅଳ୍ପ ସମୟ ପରେ ନବ ଓ ଅବଦୁଲ୍ କୁଣ୍ଢାକୁଣ୍ଢି ହୋଇ ତଳେ ପଡ଼ିଗଲେ।

ରହିମ୍ ସମ୍ଭାଳି ହୋଇପାରିଲେ ନାହିଁ। 'ମାରେ ଶାଲେ କାଫେର୍‌କୋ' ବୋଲି ସେ ଚିତ୍କାର କରି ଦୌଡ଼ିଲେ ପୁଣି। ତଥାପି ହଠାତ୍ ତାଙ୍କର ମନେ ପଡ଼ିଗଲା ବର୍ତ୍ତମାନ ସଲାତୁଲ୍ ଉସ୍ତ (ମଧ୍ୟାହ୍ନ ପ୍ରାର୍ଥନା)ର ସମୟ। ଥମ୍ କିନା ଛିଡ଼ା ହୋଇଗଲେ। କଅଣ କରିବେ ଭାବି ପାରିଲେ ନାହିଁ। ଆଜିପର୍ଯ୍ୟନ୍ତ କୌଣସି ଦିନ ସେ ଏହି ପ୍ରାର୍ଥନା ଛାଡ଼ିନାହାନ୍ତି; କାରଣ କୋରାନ୍ ଶରିଫ୍‌ରେ ଆଦେଶ ଅଛି ଏହି ପ୍ରାର୍ଥନାକୁ ବିଶେଷ ଧ୍ୟାନ ଦେବା ପାଇଁ। କ୍ରୋଧରେ ତାଙ୍କର ସର୍ବାଙ୍ଗ କମ୍ପୁଥାଏ। ତଥାପି ସେ କୁଶଭଦ୍ରାର ପାଣିରେ ମୁହଁ ହାତ ଧୋଇ ବାଲିରେ ଗାମୁଛା ପାରି ନମାଜ ପଢ଼ିବାକୁ ଲାଗିଲେ। କୋରାନ୍ ଶରିଫ୍‌ର କଥା ତାଙ୍କ କାନରେ ବାଜୁଥାଏ, ସବୁ ମଣିଷ ଏକ... ଆମର ବିଭେଦ ଭାବ ହିଁ ପାପ... ଆମର ଅହଂ, ସ୍ୱାର୍ଥବୁଦ୍ଧି ଓ ଅଜ୍ଞାନ ଏ ପାପ ବଢ଼ାଏ... ଯିଏ ସଂଯମୀ ଖୁଦା ତାଙ୍କୁହିଁ ସ୍ନେହ କରନ୍ତି... ଯେଉଁମାନେ ଭଗବାନଙ୍କ ନାମରେ କଳି ସୃଷ୍ଟି କରନ୍ତି ସେମାନଙ୍କୁ ପରିହାର କର; କିନ୍ତୁ ଯେତେ ଚେଷ୍ଟା କଲେ ବି ନମାଜରେ ମନ ଦେଇପାରିଲେ ନାହିଁ। ଅବଦୁଲ୍‌ର ଶବ ଉପରେ ନଜର ପଡ଼ିବା ମାତ୍ରେ ହିନ୍ଦୁ ଉପରେ କ୍ରୋଧ, ଘୃଣା, ଈର୍ଷା ପ୍ରବଳ ଭାବରେ ଭିତରୁ ଠେଲିଆସୁଥାଏ। ନମାଜ ସହିତ ଗୋଳେଇ ହୋଇ ଯାଉଥାଏ ନିଜ କଥା... କାଫେର୍ ଏମାନେ... ଏମାନେ ମୁହଁରେ କହନ୍ତି ଏଙ୍କ ଧର୍ମ ଉଦାର, ଇୟାଡ଼େ ସରକାରୀ ପଇସାରେ ହିନ୍ଦୁ ମନ୍ଦିର ବନାନ୍ତି... ଏମାନେ ସଂଖ୍ୟାରେ ଆମଠୁ ବେଶୀ ବୋଲି ଜବରଦସ୍ତି ତାଙ୍କର ହୋଲି ଆମେ ପାଳନ କରିବୁ... ଏଙ୍କୁ ବିଶୋଆସ ନାହିଁ... ପାକିସ୍ତାନ ପଳାଇବି... ଏଙ୍କର 'ଭାଇ ଭାଇ' ଡାକ ଏକ ଫରେବି (ଛଳନା)... ହିନ୍ଦୁ ଧର୍ମ ହିଁ ଫରେବି ଧର୍ମ... ଶାଲେ କାଫେର୍। ନମାଜ ଜାଗାରୁ ଉଠି ଦୌଡ଼ି ଯାଇ ଗୋଟାଏ ହିନ୍ଦୁକୁ ମାରିଦେବାକୁ ଇଚ୍ଛା ହେଉଥାଏ; କିନ୍ତୁ ପୁଣି କୋରାନ୍ ଶରିଫ୍ ମନେ ପଡ଼ିଯାଏ... ଜୀବନ ମରଣ ଖୁଦାଙ୍କ ହାତରେ... ପରର ପାପ ଦୋଷ ପ୍ରତି ଦୃଷ୍ଟି ନ ଦେଇ ତାଙ୍କୁ

ସମବେଦନା ଜଣାଅ... ତାଙ୍କ ମନ ଭିତରେ ଏମିତି ଭିଡ଼ା-ଓଟରା ଲାଗିଥାଏ। ଆଉ ସମ୍ଭାଳି ନ ପାରି ନମାଜ ଛାଡ଼ି ହଠାତ୍ ଉଠି ପଡ଼ି ମୃତ ଅବଦୁଲ୍ ହାତରୁ ଶାବଳଟା ଟାଣିନେଇ 'ଜେହାଦ୍ ଜେହାଦ୍' ପାଟି କରି ଦୌଡ଼ୁ ଦୌଡ଼ୁ ବେହୋସ୍ ହୋଇ ପଡ଼ିଗଲେ, ନମାଜ ଛାଡ଼ି ଉଠିପଡ଼ିଥିବାର ଲଜ୍ଜା କୋହ ସମ୍ଭାଳି ନପାରି। ସୂର୍ଯ୍ୟ ସେତେବେଳେ ଠିକ୍ ମୁଣ୍ଡ ଉପରେ। ଶାଗୁଣାମାନେ ଉପରେ ଚକ୍କର ମାରୁଥାନ୍ତି। କୁଶଭଦ୍ରାର ବନ୍ଧ ଉପର ଆମ୍ବତୋଟାରେ କୋଇଲି କୁହୁକୁହୁ ଡାକୁଥାଏ। ନବ ଆଉ ଅବଦୁଲ୍ କୁଣ୍ଢାକୁଣ୍ଢି ହେଇ ପଡ଼ିଥାନ୍ତି। ଦୁଇ ଦଳ ଭିତରେ ପିଟାପିଟି ସେମିତି ଚାଲିଥାଏ।

ରାମ ପଧାନ ଯେତେବେଳେ ପୁଅର ମରିବା ଖବର ପାଇଲେ ସେତେବେଳେ ସେ ବଳଦମାନଙ୍କୁ ଖୁଆଉଥିଲେ ନିତିଦିନ ପରି। ଶୁଣିବା ମାତ୍ରେ ତାଙ୍କର ଗୋଡ଼ହାତ ଅଚଳ ହୋଇଗଲା। କଅଣ କରିବେ ବା କରିବା ଉଚିତ ସେ ଭାବିପାରିଲେ ନାହିଁ। ଘର ଭିତରୁ ହଠାତ୍ କାନ୍ଦବୋବାଳି ଶୁଣି ସେ ଧକଚକେଇ ଗଲେ। କିଏ ଜଣେ କହିବା ପରି ତାଙ୍କୁ ଜଣାଗଲା ଯେ ନବବୋଉ ମୂର୍ଚ୍ଛା ଯାଉଛନ୍ତି। ତଥାପି ସେ ସ୍ଥାଣୁ ଭଳି ଛିଡ଼ା ହୋଇ ରହିଲେ। ତାଙ୍କର ସମସ୍ତ ଦେହ କ୍ରୋଧରେ ଥରି ଉଠିଲା। ପାଖରେ ପଡ଼ିଥିବା କଟୁରିଟା ଜାବୁଡ଼ି ଧରି ନଇ ଆଡ଼କୁ ଖଣ୍ଡେ ବାଟ ଦୌଡ଼ିଗଲେ ପ୍ରତିଜ୍ଞା କରି ସେ ରହିମ୍‌କୁ ହାଣି ତା'ରି ରକ୍ତରେ ଶ୍ରୀଶ୍ରୀରାଧାବଲ୍ଲଭ ଜୀଉଙ୍କୁ ହୋରି ଖେଳାଇବେ। ମନରେ ତାଙ୍କର ପଡ଼ିଗଲା ଯୁଗେ ଯୁଗେ ହିନ୍ଦୁମାନଙ୍କ ପ୍ରତି ମୁସଲମାନଙ୍କ ଅତ୍ୟାଚାର, ଅଉରଙ୍ଗଜେବ୍‌ଙ୍କ ଅତ୍ୟାଚାର... ଯାଙ୍କ ଧର୍ମହିଁ ନିଷ୍ଠୁରତା ଉପରେ ପ୍ରତିଷ୍ଠିତ... ଏମାନଙ୍କର ଦୟାମାୟ ନାହିଁ... ଏମାନେ ବ୍ୟଭିଚାରୀ, ନରହନ୍ତା, ଅବିଶ୍ୱାସୀ... ଏମାନେ ଯାଆନ୍ତୁ ଶଳେ ପାକିସ୍ତାନ ପଳେଇ; କିନ୍ତୁ ଦୌଡ଼ୁ ଦୌଡ଼ୁ ତାଙ୍କର ମନେ ପଡ଼ିଗଲା– ମହାଭାରତ କଥା। ଶ୍ୟେନରୂପୀ ଇନ୍ଦ୍ର କହିଚନ୍ତି– ଯେଉଁ ଧର୍ମ ଅନ୍ୟ ଧର୍ମକୁ ଘୃଣା କରେ ତା' କୁ'ଧର୍ମ... ରହିମ୍ କହୁଥିଲା କୋରାନ୍‌ରେ ଅଛି, ଧର୍ମ ବିଷୟରେ ଜବରଦସ୍ତି ପାପ। ମନେ ପଡ଼ିଗଲା ତାଙ୍କର ସର୍ବଧର୍ମାନ୍ ପରିତ୍ୟଜ୍ୟ। ରହିମ୍ ଓ ମୁଁ ନିରାସକ୍ତ ହେବା ପାଇଁ କେତେ ପ୍ରାର୍ଥନା କରିଚୁ। ସେ ସବୁ କଅଣ ଏଇ ଚରମ ପରୀକ୍ଷା ବେଳେ ବ୍ୟର୍ଥ ହୋଇଯିବ... ହେ ରାଧାବଲ୍ଲଭ ! ମୋତେ ଶକ୍ତି ଦିଅ... ଶକ୍ତି ଦିଅ। ମନେ ମନେ ସେ ଆବୃତ୍ତି କରିବାକୁ ଲାଗିଲେ...

'ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର'

'କାମ ଏଷ କ୍ରୋଧ ଏଷ ରଜୋଗୁଣ ସମୁଦ୍ଭବଃ...

'ପାପ୍‌ମାନମ୍ ପ୍ରଜହି ହ୍ୟେନମ୍ ଜ୍ଞାନବିଜ୍ଞାନ ନାଶନମ୍'।

ଦୌଡ଼ୁ ଦୌଡ଼ୁ ସେ ଥମ୍‌କିନା ଛିଡ଼ା ହୋଇଗଲେ। ହାତମୁଠା ତାଙ୍କର ଶିଥିଳ ହୋଇଗଲା, କଟୁରିଟା ସଶବ୍ଦେ ତଳେ ପଡ଼ିଗଲା। ମନେହେଲା କଟୁରିଟା ହୋ-ହୋ

କରି ହସି ଉଠି କହୁଚି- ଭୀରୁ, ସବୁ ହିନ୍ଦୁ ଭୀରୁ, ଭଗବାନ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯେତେ ବୁଝାଇଲେ କଅଣ ହେବ, ସବୁ ଭୀରୁର ଦଳ... ତୁମ ଉଦାରତା ଏଇ ଭୀରୁତାରୁ ଜାତ । ରାମ ପଧାନ କଟୁରିଟାକୁ ପୁଣି ଉଠାଇ ନେଇ ଖଣ୍ଡେ ବାଟ ଦୌଡ଼ିଗଲେ, ପୁଣି ଥମ୍ କିନା ଛିଡ଼ା ହୋଇପଡ଼ିଲେ । ଅସହାୟ ଭାବରେ ସେ ଉପରକୁ ଚାହିଁ ହାତଯୋଡ଼ି କହିଲେ, "ହେ ରାଧାବଲ୍ଲଭ, ମୁଁ ଅର୍ଜୁନ ନୁହେଁ ଯେ ଏ ବିପରୀତ ଭାବକୁ ଏକ କରିପାରିବି । ମୋତେ ରକ୍ଷା କର... ମୋତେ ରକ୍ଷା କର ପ୍ରଭୁ- କହୁ କହୁ ସେ ବେହୋସ୍ ହୋଇ ତଳେ ପଡ଼ିଗଲେ ।

ସେତେବେଳକୁ ପୁଲିସ ଆସି ନଈବାଲିରେ ଦୁଇଟି ଶବକୁ ଜଗି ଛିଡ଼ା ହୋଇ ସାରିଲେଣି, ଦୁଇ ଦଳରୁ ଅନେକ ଧରାହୋଇ ଚାଲାଣ ହୋଇସାରିଲେଣି । ଚୌକିଦାରମାନେ ଶାଗୁଣାମାନଙ୍କୁ ଖେଦୁଥାଆନ୍ତି । କୋଇଲିର ଅଧୀର ଡାକ ଥମି ନାହିଁ । ସୂର୍ଯ୍ୟ ପଶ୍ଚିମ ଆଡ଼କୁ ଢଳିଲେଣି । ପଶୁପକ୍ଷୀମାନେ ଘରମୁହାଁ ହୋଇ ଦୌଡୁଛନ୍ତି । କୁଶଭଦ୍ରାର ସ୍ରୋତ ସେମିତି କୁଳୁକୁଳୁ ନାଦରେ ବୋହିଯାଉଚି ସମୁଦ୍ରକୁ । ପୃଥିବୀ ସେମିତି ବୁଲୁଚି କାଳହୀନ ମହାକାଳ ମଧରେ କାଳ ସୃଷ୍ଟି କରି । ଏତେ ଯେ କାଣ୍ଡ ଘଟିଗଲା, କାହାରି ଯେମିତି ସେଥିରେ କିଛି ଯାଏ ଆସେ ନାହିଁ । ଶ୍ରୀଶ୍ରୀରାଧାବଲ୍ଲଭ ମଧ ହୋରି ଖେଳିସାରି ଶୋଇଗଲେଣି ।

ରାତି ପ୍ରାୟ ତିନିଟା । ପ୍ରତିଦିନର ଅଭ୍ୟାସବଶତଃ ରାମ ପଧାନ ହୁ-ଦସ୍ତେ ବିଛଣା ଛାଡ଼ି ଉଠିଲେ ନଈ ଆରପାରିରେ କୁକୁଡ଼ା ଡାକ 'ଚକ୍ରଧର ରକ୍ଷା କର' ଶୁଣି । ରାଧାବଲ୍ଲଭଙ୍କୁ ପ୍ରଣାମ କରି ସେ କାନେଇ ରହିଲେ ରହିମ୍‌ର 'ଆଲ୍ଲାହୁ ଆକବର୍' ଡାକକୁ । ଏହା ସେମାନଙ୍କର ନିତିଦିନର ଅଭ୍ୟାସ ।

ବାହାରେ ନିସ୍ତବ୍ଧ ମୌନ ରାତ୍ରି, ସୁନ୍ଦର ଅଥଚ ଉଦାର, ମୌନ, ନିର୍ଲିପ୍ତ । ସମସ୍ତ ପୃଥିବୀ ଯେପରି ଧାନମଗ୍ନ । ଗଛବୃଛ ବି ଧାନସ୍ଥ । କୁଶଭଦ୍ରାର ନଈବାଲିରେ ନିଆଁ ଜଳୁଥିବାର ଦେଖି ରାମ ପଧାନଙ୍କ ମନେ ପଡ଼ିଗଲା ସବୁ କଥା । ସବୁ ଘଟଣା ପୁଣି ଥରେ ଯେପରି ତାଙ୍କ ଆଖି ଆଗରେ ଘଟିଗଲା; କିନ୍ତୁ ବର୍ତ୍ତମାନ ସେ ଖାଲି ନିର୍ଲିପ୍ତ ଦର୍ଶକ, ମନରେ କୌଣସି ଭାବାନ୍ତର ନାହିଁ । କେବଳ ଯେତେବେଳେ ମନେ ପଡ଼ିଗଲା ରହିମ୍‌କୁ ଏ ଘଟଣା ଶଯ୍ୟାଶାୟୀ କରିପକାଇଥିବ, ସେ ମନରେ ବେଦନା ଅନୁଭବ କଲେ । ଧୀରେ ଧୀରେ ସେ ଚାଲିଲେ ନଈଆଡ଼କୁ ।

ରହିମ୍‌ଙ୍କ ମଧ ନିଦ ଭାଙ୍ଗିଯାଇଥାଏ ସେତିକି ବେଳକୁ । ସେ ମଧ କାନେଇଥାନ୍ତି 'ରାଧାବଲ୍ଲଭ ହେ' ଡାକକୁ । ରହିମ୍ ମା' ବୁଢ଼ୀ ଆର ବଖରାରେ ଲହରେଇ ଲହରେଇ କାଶି ପଚାରିଲେ, 'ଏ ରହିମ୍, ଆରେ ରାମଚନ୍ଦର ଉଠିସ୍ ନେହିଁ କ୍ୟା ? ଯା'ରେ ନିଆଁ

ନଗା ନିକମ୍ମା, ଆରେ ଯା କେ ଦେଖୋ କ୍ୟା ହୁଆ ଉସ୍‌କାଁ। ବୁଢ଼ୀ ଆଉ କହିପାରିଲେ ନାହିଁ, କାଶି କାଶି ବେଦମ୍ ହୋଇଗଲେ। ନିତିଦିନର ଅଭ୍ୟାସ ଭଳି ସେ ଏତିକିବେଳେ ଉଠି ରହିମ୍‌କୁ ଉଠାଇ ଦିଅନ୍ତି। ରହିମ୍ ଉଠି ନମାଜ ପଢ଼ି ଚାଲିଥାନ୍ତି ସଙ୍ଗାତ ସହିତ ଗାଧୋଇବାକୁ। ରହିମ୍ ପାଟିକରି କହିଲେ, "ଯାତାହୁଁ ଅମ୍ମିଜାନ୍, ତୁମ୍ ମତ୍ ଫିକର୍ କରୋ, ଖାସି (କାଶ) ବଢ୍ ଯାଏଗା।" ରହିମ୍ ମଧ ଧୀରେ ଧୀରେ ଚାଲିଲେ ନଈଆଡ଼େ।

ନଈବାଲିରେ ନିଆଁ ଜଳୁଥିବାର ଦେଖି ତାଙ୍କ ଛାତି ଛନ୍ କରି ହେଲା। ତେବେ କଅଣ ସଙ୍ଗାତ ମୋତେ ନ ଡାକି ଶବ ପୋଡ଼ାଇଦେଲେ ? ଅଭିମାନରେ ତାଙ୍କ ଆଖି ଛଳ ଛଳ ହୋଇଗଲା; କିନ୍ତୁ ନିଆଁ ପାଖକୁ ଯାଇ ଦେଖିଲେ କିଏ ତିନି ଜଣ ବିଦେଶୀ ଧୁନି ଜାଳି ହୋଲି ଗୀତ ଗାଉଛନ୍ତି। ପଚାରି ବୁଝିଲେ ସେମାନେ ବିହାରୀ, ପୁରୀକୁ ଚାଲି ଚାଲି ଯାଉ ଯାଉ ବାଟବଣା ହୋଇ ରାତିକ ନଈବାଲିରେ କଟାଇ ଦେଉଛନ୍ତି। ସେମାନେ ଗାଉଥାନ୍ତି-

"ଲଳିନୀ ଲାଲନ ଲାଲ ଅଭିରନ ସଖିଗଣ ଲାଲହି ଲାଲ୍,
ଲାଲ ତରୁ ସଞ୍ଚାରି ଲାଲ୍ ଦିନ ଯାମିନୀ ଲାଲହି ପିୟର୍ କି ସାଲ।"

ରହିମ୍ ବିଭୋର ହୋଇ ଛିଡ଼ା ହୋଇ ରହିଲେ ସେଠି। ଅନାଇ ଦେଖିଲେ ଅବଦୁଲ୍ ଓ ନବ ଅଦୂରେ କୁଣ୍ଢାକୁଣ୍ଢି ହୋଇ ପଡ଼ିଛନ୍ତି ସେମିତି। ପୁଲିସ୍ ଏପର୍ଯ୍ୟନ୍ତ ଶବ ଦୁଇଟିକୁ ଡାକ୍ତରଖାନା ନେଇନାହିଁ, ଜଗିବସିଛନ୍ତି ଚୌକିଦାରମାନେ। ଜଣେ ବିହାରୀ ପୁଲିସ୍ ମଧ ବିଦେଶୀମାନଙ୍କ ସହିତ ଯୋଗଦେଇ ଗାଉଚି। ଅଦୂରେ ଶାଗୁଣାମାନଙ୍କ ଡେଣା ଫଡ୍ ଫଡ୍ ଓ ବିଲୁଆ ଡାକ ଶୁଭୁଛି; କିନ୍ତୁ ନିଆଁ ପାଖରେ ଚାଲିଚି ଭିନ୍ନ ପ୍ରକାର କଥା କାହାରି ସହିତ କାହାରି ଯେପରି ସମ୍ବନ୍ଧ ନାହିଁ; କିମ୍ବା ସତେ ଯେମିତି ଏସବୁ ବିପରୀତ ଭିତରେ କୋଉଠି ଗୋଟେ ସମ୍ବନ୍ଧ ଲୁଚି ରହିଚି। ଆଶ୍ଚର୍ଯ୍ୟ କଥା- ସେହି ବିଦେଶୀମାନଙ୍କ ଭିତରୁ ଜଣେ ହଠାତ୍ ରହିମ୍‌କୁ ଅନୁରୋଧ କଲା-

ଏକ୍ ହୋଲି ଶୁନାଇଏ ଭାୟା !

ରହିମ୍‌ଙ୍କ ମନ ଭିତରୁ ହଠାତ୍ ଗୋଟିଏ କୋହ ଉଠିଲା। ସେ କୋହ ଦୁଃଖର ନୁହଁ କି ଆନନ୍ଦର ନୁହେଁ। ଏକ ଅଜଣା ଅପୂର୍ବ ବେଦନା ତାଙ୍କ ମନକୁ ଘାରିଦେଲା। ମନରୁ ତାଙ୍କର ସ୍ୱତଃ କାଫି ସିନ୍ଧୁ ରାଗର ଗାନ ବାହାରି ଆସିଲା- "ବଲ୍‌ମା ରେ, ଚୁନରିୟା ମୈକୋ ଲାଲ୍ ରଙ୍ଗାଦେ"- ହେ ମୋର ପ୍ରିୟ ! ମୋର ଏ ଆବରଣ ତୁମରି ରଙ୍ଗରେ ରଞ୍ଜିତ କରିଦିଅ। ଗମ୍ ଗମ୍ ହୋଇ ତାଙ୍କର କଣ୍ଠରୁ ସ୍ୱର ବାହାରୁଥାଏ, ଝର ଝର ହୋଇ ଆଖିରୁ ଲୁହ ଝରୁଥାଏ। ଗୀତ ସରିବା ପରେ ସମସ୍ତେ ନିଶ୍ଚଳ ହୋଇ ବସିରହିଲେ କିଛିକ୍ଷଣ; କାହାରି ତୁଣ୍ଡରୁ କଥା ବାହାରୁ ନଥାଏ। ପ୍ରଶଂସା ଜଣାଇବାକୁ ମଧ ଇଚ୍ଛା ହେଉ ନଥାଏ।

ହଠାତ୍ 'ଶୋଭାନ୍‌ଆଲ୍ଲାହ୍' ଶୁଣି ଚମକି ପଡ଼ି ରହିମ୍ ଦେଖିଲେ ଛିଡ଼ା ହୋଇଛନ୍ତି ସଙ୍ଗାତ । ଆଖିରୁ ତାଙ୍କର ଲୁହ ଝରିଯାଉଚି । ସେ ହଠାତ୍ ଗାଇବାକୁ ଲାଗିଲେ-

ଆସ୍‌ହାଦୋ ଆଲ୍ଲା ଇଲାହା ଇଲ୍ ଆଲ୍ଲାହ୍,

ଆସ୍‌ହାଦୋ ଆନ୍‌ନା ମୁହମ୍ମଦର୍ ରସୁଲାଲ୍ଲା... ।

ରାମ ପଧାନଙ୍କ ସ୍ୱର ବିସ୍ତାର ସମସ୍ତଙ୍କୁ ଅଭିଭୂତ କରିଦେଲା । ଧୀର ମନ୍ଥର ଗତିରେ ପରିଷ୍କାର ଭାବରେ କରୁଣ ସ୍ୱରରେ ପ୍ରତ୍ୟେକ ଶବ୍ଦ ତାଙ୍କ କଣ୍ଠରୁ ନିର୍ଗତ ହେଉଥାଏ । ବିଦେଶୀମାନଙ୍କ ଭିତରୁ ଜଣେ ଆନନ୍ଦରେ କହିଲା, ଅବ ଭଗବାନ ଜରୁର୍ ହିଆଁ ହୋଙ୍ଗେ । କୋରାନ ଶରିଫ୍ କହତେହେଁ ଭଗବାନ୍ କା ନାମ୍ ଶୁନ୍‌କର ଜିସ୍ କା ହିୟା ଉଛଲ୍‌ତା ଓ ହି ଭକ୍ତ ହୈ, ଚାହେ ଓ୍ୱ ହିନ୍ଦୁ ୟା ମୁସଲମାନ । ଭଗବାନ ଶ୍ରୀକିଷନ୍ କହେ ହେଁ ହାମାରା ଭକ୍ତ ଯହାଁ ହୈ ହାମ୍ ଓ୍ୱହାଁ ରହୁଙ୍ଗା । ଧନ୍ ହେୟ ଆପ୍ ଲୋଗ୍ ।

ସକାଳୁଆ ହେମାଳ ପବନ ସେତେବେଳକୁ ବୋହିବାକୁ ଲାଗିଲାଣି । ପୂର୍ବ ଦିଗର ପ୍ରଭାତୀ ତାରା ଦପ୍‌ଦପ୍ ହୋଇ ଜଳୁଥାଏ । ଅହମଦ୍‌ପୁରରୁ ଭାସିଆସୁଥାଏ ପ୍ରଭାତୀ ପ୍ରାର୍ଥନା ଓ କୁଶୁପୁରରୁ ପ୍ରଭାତୀ ବନ୍ଦନା ।

ବିଦେଶୀମାନେ ବାଟ ପଚାରି ଚାଲିଗଲେ । ରହିମ୍ ରାମ ପଧାନଙ୍କୁ ଛାତିରେ ଚାପି ଧରି ପଚାରିଲେ- ସଙ୍ଗାତ, ଆମରି ପୁଅ ପରସ୍ପର ହାତରେ ମଲେ, ତେବେ କଅଣ ଖୁଦା ଚାହାନ୍ତି ଆମେ ଚିରଶତ୍ରୁ ହୋଇ ରହିବାକୁ ?

ରାମ ପଧାନ ହସି କହିଲେ- ଭାଇ, ଦେଖ ନବ ଆଉ ଅବଦୁଲ୍ କେମିତି କୁଣ୍ଢାକୁଣ୍ଢି ହୋଇ ଶୋଇଛନ୍ତି । ଭଗବାନଙ୍କ ସଙ୍କେତ- ଆମେ ନୂଆକରି ପରସ୍ପରକୁ ଚିହ୍ନିବା, ଛଳନାରେ ନୁହଁ, ସ୍ୱାର୍ଥରେ ନୁହଁ, ରାଜନୀତିରେ ନୁହଁ, ଆପଣାକୁ ବଳି ଦେଇ... ।

ଦୁହେଁ ହାତ ଧରାଧରି ହୋଇ ଚାଲିଲେ ନଈର ଉପର ମୁଣ୍ଡକୁ ଗାଧୋଇବା ପାଇଁ, ନିତିଦିନର ଅଭ୍ୟାସ ଅନୁସାରେ ।

# ଲୀଳା-ବିଧୃତ କଳେବର

ନାରାୟଣ ବାଡ଼ିଧରି ଧୀରେ ଧୀରେ ପାଦ ପକାଇ ଛୋଟେଇ ଛୋଟେଇ ଆସି ଘର ଦୁଆର ମୁହଁରେ ପହଞ୍ଚୁ ନ ପହଞ୍ଚୁଣୁ ଚନ୍ଦ୍ର ତିନିଦିନ ପୂର୍ବର ଆଲୋଚନାର ସୂତ୍ର ଧରି ପଚାରିଲେ: ଆଚ୍ଛା, ତମେ ଓ ଦିବାକର ବିପଦକୁ ଓ ଧ୍ୱଂସକୁ ଏତେ ସମର୍ଥନ କର କାହିଁକି ଶୁଣେ ? ଏ ସାମାନ୍ୟ କଥାଟା କଅଣ ତମମାନଙ୍କ ମୁଣ୍ଡରେ ପଶେନାହିଁ ଯେ ନଦୀ ଯେମିତି ସାଗରରେ ମିଶିବା ପାଇଁ ନିଜ ବନ୍ଧ ନିଜେ ସୃଷ୍ଟି କରେ, ମଣିଷ ସେମିତି, ବ୍ୟକ୍ତିଗତ ଭାବେ ହେଉ ବା ସାମାଜିକ ଭାବେ ହେଉ, ସୁଖ ପାଇଁ ଶୃଙ୍ଖଳା, ନିୟମ ସୃଷ୍ଟି କରିବାକୁ ବାଧ୍ୟ । ତମେମାନେ...

ଦିବାକର ବାଧା ଦେଇ କହିଲେ, ବୁଝିଲ ଚନ୍ଦ୍ର ! ଉପମାଦ୍ୱାରା ସତ୍ୟ ପ୍ରକାଶ କରିବା ନ୍ୟାୟଶାସ୍ତ୍ର ଅନୁସାରେ ସବୁଠାରୁ ଅଧମ ପନ୍ଥା । ନଦୀ ସଚେତନ ନୁହେଁ କି ତା'ର ବୁଦ୍ଧି ନାହିଁ । ପୁଣି ତମ ଉପମାଟାକୁ ଟିକିଏ ଟାଣିନେଲେ, ଦେଖାଯିବ ନଦୀ ନିଜ ବକ୍ଷକୁ ବି ନିଜେ ଭାଙ୍ଗେ; କିନ୍ତୁ ସେ କଥା ଥାଉ । ଆଗ ବୁଝାଯାଉ ନାରାୟଣ ଏ ତିନି ଦିନ କାଳ କୁଆଡ଼େ ଥିଲେ, ତାଙ୍କ ପାଦ ଏମିତି ଭୟଙ୍କର ଭାବରେ କାହିଁକି ଫୁଲିଚି । ବ୍ୟାପାର କଅଣ କି ହୋ ନାରାୟଣ ?

ନାରାୟଣ ଫୁଲାପାଦଟା ଉପରେ ଯଥାସମ୍ଭବ କମ୍ ଚାପ ଦେଇ ବସିବା ପାଇଁ ସେଟାକୁ ଲମ୍ବାଇ ଧୀରେ ଧୀରେ ଅତି ସନ୍ତର୍ପଣରେ ବସି କହିଲେ, ମୋ ଶରୀର ଅତ୍ୟନ୍ତ ଖରାପ । ସାମାନ୍ୟ ଟିକିଏ ଭଲ ଲାଗିବା ମାତ୍ରେ ମୁଁ ଆସିଛି ତୁମମାନଙ୍କୁ ଏକ ଅତି ଅଦ୍ଭୁତ ଘଟଣା କଥା କହିବାକୁ । ଆଜି ମୁଁ କୌଣସି ତର୍କ କରିବି ନାହିଁ । ଏଇ ଘଟଣାଟି ଶୁଣିଲେ, ତୁମମାନଙ୍କ ପ୍ରଶ୍ନର ଉତ୍ତର ମିଳିଯିବ । ତେବେ ଚନ୍ଦ୍ରକୁ ମୁଁ ଏତିକି କହିରଖେ ଯେ ମୁଁ ଦିବାକର କିବା ଛାର । ସ୍ୱୟଂ ଶ୍ରୀକୃଷ୍ଣ କହିଛନ୍ତି- କୌଣସି କଥା ପରମ୍ପରାରେ ପଡ଼ିଗଲେ ବୁଦ୍ଧି ଓ କର୍ମପ୍ରେରଣା ଲୋପ ପାଇଯାଏ ଏବଂ ଧର୍ମରେ ଗ୍ଲାନି ଦେଖାଦିଏ; ଅର୍ଥାତ୍ ଧର୍ମ, ଆଦର୍ଶ, ଶାସନ, ନିୟମ, କୃଷ୍ଟି, କଳା ଆଦି ନାଁରେ ଭାଣ୍ଡାମି, ମିଥ୍ୟା, ଅତ୍ୟାଚାର,

ଶୋଷଣ, ପୀଡ଼ନ, ବଶୀକରଣ ଚାଲେ। ଲୋଭ ଓ ସ୍ୱାର୍ଥରେ ଲୋକ ମାତନ୍ତି ଏବଂ ଲୋଭ, ସ୍ୱାର୍ଥ, ଭୟଜନିତ ଭାବପ୍ରବଣତାକୁ ହିଁ ଲୋକେ ଭଗବତ୍ ପ୍ରେମ ବୋଲି ଭାବନ୍ତି। ଏତିକିବେଳେ ମୁଁ ବିପ୍ଳବ ଆଣି ସବୁ ଧ୍ୱଂସ କରି ପୁଣି ନୂଆ ସୃଷ୍ଟି କରେ। ଯୀଶୁଖ୍ରୀଷ୍ଟ, ମହମ୍ମଦ ବି ଏପରି ଯୁଗାନ୍ତକାରୀ ବିପ୍ଳବ ଆଣିଥିଲେ। ଶ୍ରୀକୃଷ୍ଣ ଯେତେବେଳେ ଜନ୍ମ ହେଲେ, ସେତେବେଳେ କେତେ ମୁନିଋଷି ଆସି ତାଙ୍କ ନାଁ ଦେଲେ। ପୂତନା ବି ଗୋଟିଏ ନାଁ ଦେଇଗଲା।

ସେ ଯାହା ହେଉ, ଘଟଣାଟି ଯାହା ଯେମିତି ଘଟିଥିଲା, ମୁଁ ଠିକ୍ ସେମିତି କହିଯିବି। ମୋର ପରମ ସୌଭାଗ୍ୟ ଯେ ଏ ଘଟନା ସହିତ ମୁଁ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହୋଇ ପଡ଼ିଥିଲି। ଖବରକାଗଜମାନଙ୍କରେ ଏହା ଅତି ନଗଣ୍ୟ ଘଟନା ଭାବରେ ସାନ ସାନ ଅକ୍ଷରରେ ଗୋଟାଏ କଣରେ ବାହାରିଥିଲା। ଅଥଚ ଗୋଟାଏ ପ୍ରଳୟଙ୍କରୀ କାଣ୍ଡ ଘଟୁ ଘଟୁ ଅତି ଅଦ୍ଭୁତ ଭାବରେ ଶାନ୍ତ ହୋଇଗଲା।

ମାତ୍ର ତିନିଦିନ ଆଗର ଘଟଣା। ସବୁଦିନ ଭଳି ଏ 'ବୁଢ଼ା ବୈଠକ'କୁ ଆସିବା ପୂର୍ବରୁ ଆମ ଛକର ପାନ ଦୋକାନୀକୁ ଚାରି ଖିଲିପାନ ଭାଙ୍ଗିବାକୁ କହିଦେଇ ଛିଡ଼ା ହୋଇ ରହିଥାଏ। ଗରାଖ ଭିଡ଼ ହୋଇଥିବାରୁ ସେ ଡେରି କରୁଥାଏ। ଇତିମଧ୍ୟରେ ମୁଁ ଅନ୍ୟମନସ୍କ ଭାବରେ ଏଣେତେଣେ ଚାହୁଁଥାଏ, ଅତି ନିର୍ଲିପ୍ତ ଭାବରେ। ଶୀତଦିନର ଓଧର ଓଳି ତ। ସୂର୍ଯ୍ୟ ପ୍ରାୟ ଦିଗ୍‌ବଳୟ ଛୁଇଁଲେଣି; କିନ୍ତୁ ପୂର୍ବପଟୁ ଗୋଟାଏ ପତଳା କୁହୁଡ଼ିଆ ଅନ୍ଧାର ଆଗେଇ ଆସୁଥାଏ। ତା' ସହିତ ମନ ଭିତରୁ ଗୋଟାଏ ଉଦାସିଆ ଭାବ ବି ମାଡ଼ି ଆସୁଥାଏ।

ନିକଟରେ ଦେଖିଲି, ବିଶ୍ୱବିଦ୍ୟାଳୟ ହତାର ପୂର୍ବପଟେ ଯେଉଁ ନିଛାଟିଆ ଝଙ୍କାଳିଆ ବରଗଛ ଅଛି, ତା' ତଳେ କେଇଜଣ ଯୁବକ ପାଟି କରି କଅଣ ସବୁ ଇୟାଡୁ ସିଆଡୁ କହୁଛନ୍ତି। ମଝିରେ ମଝିରେ କେହି ଜଣେ ଅର୍ଥହୀନ ଉଦ୍ଭଟ ଶବ୍ଦ କରି ବେତାଳିଆ ଗୀତ ଗାଇଲାଣି ତ ଆଉଜଣେ ହଠାତ୍ ଗଛ ଉପରକୁ ଚଢ଼ି ଡିଆଁ ମାରିଲାଣି। ଆଉ ଜଣେ ହଠାତ୍ ଥୋଡ଼ାବାଟ ଦଉଡ଼ିଯାଇ ଚିତ୍‌ପଟାଂ ହୋଇ ଶୋଇପଡ଼ିଲାଣି। କିଛି ସମୟ ପରେ ସେମିତି ହଠାତ୍ ସମସ୍ତେ ହାତ ଧରାଧରିହୋଇ ନାଚିବାକୁ ଲାଗିଲେ। ଉଦ୍ଭଟ ଉଦ୍ଦଣ୍ଡ ନୃତ୍ୟ। ମଝିରେ ମଝିରେ ହୋ ହୋ ଚିତ୍କାର। ହଠାତ୍ ପୁଣି ସମସ୍ତେ ବସି ପଡ଼ି ପାଟିକରି କାନ୍ଦିବାକୁ ଲାଗିଲେ। ନା ନା, ମିଛ କାନ୍ଦଣା ନୁହେଁ। ସତକୁସତ କାନ୍ଦିଲେ। ମୋତେ...

ଚନ୍ଦ୍ର ଉତ୍‌କ୍ଷିପ୍ତ ହୋଇ କହିଲେ: ଏସବୁ ତୁଚ୍ଛା ଲଫଙ୍ଗାମି। ଏଙ୍କୁ ଖାଲି...

ଦିବାକର ବାଧା ଦେଇ କହିଲେ ଚନ୍ଦ୍ର ତମେ ଖାଲି ଶୁଣିଯାଅ, କୌଣସି ମନ୍ତବ୍ୟ ଦିଅନାହିଁ। ସତ୍ୟ ନିହିତଂ ଗୁହାୟାଂ। ଆଗେ ଶୁଣିଯାଅ।

ନାରାୟଣ କହିଲେ, ମୋତେ ବି କେମିତି କାନ୍ଦ ମାଡ଼ିଲା। ଅବଶ୍ୟ କେଉଁଥିପାଇଁ କହି ପାରିବି ନାହିଁ। ତଳକୁ ମୁହଁ ପୋତି ଆଖିରେ କଅଣ ଗୋଟାଏ ପଡ଼ିଗଲା ବୋଲି ଛଳନା କରି ରୁମାଲରେ ଆଖି ପୋଛୁଚି, ହଠାତ୍ ଶୁଣିଲି ସେମାନଙ୍କ ଚିତ୍କାର 'ଧର ଧର, ମାର ମାର, ହାଣି ପକାଅ ଟିକି ଟିକି କରି।'

ଚମକି ଚାହିଁ ଦେଖିଲି ସେଇ ଟୋକା ଦଳକ ଅଣନିଃଶ୍ୱାସୀ ହୋଇ ରାସ୍ତାରେ ଦୌଡୁଛନ୍ତି ବିଶ୍ୱବିଦ୍ୟାଳୟ ଫାଟକ ପାର ହୋଇ। କ୍ରୋଧରେ ସେମାନଙ୍କ ମୁହଁ ସବୁ ଅସ୍ୱାଭାବିକ ଦିଶୁଛି। ମୋ ପାନ ଦୋକାନ ବାଟେ ଗଲାବେଳେ ସେମାନେ ଦୋକାନ ତାଟିରୁ ଦୁଇଟା ବାଉଁଶ ଟାଣିନେଇ ଓ ମୋତେ ବି ଜବରଦସ୍ତି ଟାଣିନେଇ ବାଉଁଶକୁ ବୁଲାଇ ବୁଲାଇ ଦୌଡ଼ିଲେ ପାଟି କରି। ହଠାତ୍ ଗୋଟାଏ ଚହଳ ପଡ଼ିଗଲା ଚାରିଆଡ଼େ। କୌଣସି ଚୋର ବା ହତ୍ୟାକାରୀକୁ ଏମାନେ ଗୋଡ଼ାଇଛନ୍ତି ଭାବି ହେଉ ବା ନିଛକ କୌତୂହଳ ଯୋଗୁଁ ହେଉ, ମୋ ପାନ ଦୋକାନୀ ଓ ଆଖପାଖର ଲୋକେ ବି ସେମାନଙ୍କ ସହିତ ଦୌଡ଼ିବାକୁ ଲାଗିଲେ, ସେମିତି 'ମାର ମାର' ପାଟି କରୁ କରୁ ସେମାନେ ରାସ୍ତାକଡ଼ରୁ ଢେଲା ଗୋଟେଇ ଚାରିଆଡ଼େ ଫିଙ୍ଗିବାକୁ ଲାଗିଲେ ଓ ଚିତ୍କାର କରି ଡାକିବାକୁ ଲାଗିଲେ, 'ଆସ ଆସ, ମାର ମାର।' ବାଟରେ ଯାଉଥିବା ଲୋକଙ୍କୁ ଟାଣି ସେମାନେ ଦଳରେ ଭରତି କରିବାକୁ ଲାଗିଲେ। ପାଖ ହଷ୍ଟେଲ୍‌ମାନଙ୍କରୁ ପଲ ପଲ ହୋଇ ପିଲାଏ ଠେଙ୍ଗା, ବାଉଁଶ ଆଦି ଧରି 'ମାର ମାର' ପାଟିକରି ଦୌଡ଼ି ଆସି ଦଳରେ ଯୋଗଦେଲେ। ଚାରିଆଡ଼େ ଗୋଟିଏ ମହାଆତଙ୍କ ଖେଳିଗଲା ମୁହୂର୍ତ୍ତକ ଭିତରେ।

କିଛିଦିନ ଆଗରେ ଗାଧୋଇବା ଘରେ ଗୋଡ଼ ଖସି ମୋ ବାଁ ଗୋଡ଼ଟା ମକଚିଯାଇ ଥିଲା। ଚାଲିବାକୁ ଟିକିଏ କଷ୍ଟ ହେଉଥିଲା। ସେକଥା ଭୁଲିଗଲି ଏକଦମ୍। ମୁଁ ବି ଦୌଡ଼ିବାକୁ ଲାଗିଲି ଅଣନିଃଶ୍ୱାସୀ ହୋଇ ସେମାନଙ୍କ ସହିତ। ପ୍ରଥମେ ଯେଉଁ ପିଲାତକ ଦୌଡ଼ିବାକୁ ଆରମ୍ଭ କରିଥିଲେ ମୁଁ ସେମାନଙ୍କ ଭିତରେ ଥାଏ। ଜଣକର କାନ୍ଧରେ ହାତ ରଖି ତାକୁ ପଚାରିଲି: ବାପା, ବ୍ୟାପାର କଅଣ ? କଅଣ ହେଲା ? ମୋତେ ସେ ଠେଲି ଦେଇ କହିଲା: ଚୋପ୍। ଡରି ମୁଁ ଚୁପ୍ ରହିଲି। ଲକ୍ଷ୍ୟ କଲି ସେତେବେଳକୁ କାହାରି ମୁହଁରେ ଆଉ ଆତଙ୍କ ଭାବ ନାହିଁ, ଅଛି ତୀବ୍ର ଘୃଣା ଓ କ୍ରୋଧ। କେଉଁଠି ଯେମିତି କଅଣ ଗୋଟାଏ ଘୋର ଅନ୍ୟାୟ ବା ଅତ୍ୟାଚାର ଚାଲିଛି, ଆଉ ତା'ରି ପ୍ରତିକାର କରିବାକୁ ଏମାନେ ଉତ୍‌କ୍ଷିପ୍ତ ହୋଇ ଦୌଡ଼ିଛନ୍ତି। କ୍ରମେ କ୍ରମେ ମୋ ଭିତରୁ ବି ଯେମିତି ବହୁଦିନରୁ ଜମାଟ ବାନ୍ଧି ରହିଥିବା କ୍ରୋଧ, ଅନିର୍ଦ୍ଦିଷ୍ଟ ଓ ଅସ୍ପଷ୍ଟ ଅଥଚ ତୀବ୍ର କ୍ରୋଧ– ନିଜ ପ୍ରତି କି ଅନ୍ୟ କାହା ପ୍ରତି କେଜାଣି– ଗୋଟାଏ ନିଆଁହୁଳା ପରି ଠେଲି ଆସିଲା। ମନେହେଲା, ସମସ୍ତେ ବଦମାସ, ପାଜି, ଅତ୍ୟାଚାରୀ, ସମସ୍ତଙ୍କୁ ମାରି ଟିକି ଟିକି କରିଦେବି ମୁଁ।

ସେତେବେଳକୁ ଆମେ ଅନେକ ବାଟ ଆଗେଇ ଯାଇ ସାରିଥାଉଁ । ଦଳରେ ସେତେବେଳେ ଦୁଇଶହରୁ ଉପରେ ଲୋକେ । ସମସ୍ତଙ୍କ ମୁହଁରେ 'ମାର ମାର, ହାଣ ହାଣ' ରବ । ସେ ଶବ୍ଦ ତୁମୂଳ; କିନ୍ତୁ କେଉଁ ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ଅନୁଷ୍ଠାନ ବା ସରକାର ବିରୁଦ୍ଧରେ ଏ କ୍ରୋଧ, ଏ ଅଭିମାନ ତଥାପି ବୁଝିପାରୁ ନଥାଏ । କାହାକୁ ପଚାରିବି ? ସମସ୍ତେ ତ କ୍ରୋଧରେ ଉନ୍ମତ୍ତ । ସେଥିରେ ପୁଣି କେଇଜଣ ଗୋଟାଏ ଯାତ୍ରା ପୋଷାକ ଆସବାବ ଦୋକାନ ଭିତରକୁ ପଶିଯାଇ ଶିଙ୍ଗା, ଶଙ୍ଖ, ଭେରି, ତୂରୀ, ଡ୍ରମ୍ ବାଜା ସବୁ ଟାଣି ଆଣି ବଜାଉଥାନ୍ତି । ଏଥିରେ କେଇ କାହାକୁ ବ୍ୟକ୍ତିଗତ ଭାବେ ପଚାରିବା ବା କହିବା କଥା ଉଠୁନାହିଁ । ସେତେବେଳେ ସେ ଦଳଟିର ଗୋଟିଏ ଶବ୍ଦ, ଗୋଟିଏ ଭାଷା ହୋଇଥାଏ । 'ଧର ଧର, ମାର ମାର, ହାଣ ହାଣ, ରକ୍ତ ପିଅ ।' ସେ ଦଳର ଗୋଟାଏ ବିକଟାଳ ରୂପ ବି ଦିଶୁଥାଏ- ନୃସିଂହ ରୂପ । ଆଉ ସେ ତୁମୂଳ ଶବ୍ଦ ଗଗନପବନ ବିଦାରି ଦେଉଥାଏ । କେଜାଣି ଦଶ ମାଇଲକୁ ଶୁଭୁଥିବ ପରା । ମୁଁ ମନେ ମନେ ବୋଲୁଥାଏ, 'ନମଇଁ ନୃସିଂହ ଚରଣ, ଅନାଦି ପରମ କାରଣ ।'

ପ୍ରଥମେ ପ୍ରଥମେ ଦଳର ଲୋକେ ଅନ୍ୟମାନଙ୍କୁ ଜବରଦସ୍ତି ଓଟାରି ଆଣି ଦଳରେ ପୁରାଉଥିଲେ; କିନ୍ତୁ ପରେ ପରେ ଦେଖିଲି ଲୋକେ ଆପଣା ଛାଏଁ ଦଳରେ ଯୋଗଦେଲେ । 'ମାର ମାର' ଶବ୍ଦ ଯେମିତି ସେମାନଙ୍କୁ ଦୁର୍ବାର ବେଗରେ ଆକର୍ଷଣ କରି ଆଣୁଥିଲା । ଦଳରେ ଯୋଗଦେବା ମାତ୍ରେ ସେମାନଙ୍କ ଚେହେରା ବଦଳି ଯାଉଥିଲା । ଠାଏ ରାସ୍ତାକଡ଼ରେ ଜଣେ ଭଦ୍ରଲୋକ ଓ ଜଣେ ରିକ୍ସାବାଲା ଭଡ଼ା ନେଇ ପ୍ରବଳ ଭାବରେ ଗାଳିଗୁଲଜ ଓ ଭିଡ଼ାଓଟରା ହେଉଥିଲେ । ଯେମିତି ଦେଖିଲେ ଏ ଦଳକୁ, ସେମିତି ତା' ଭିତରେ ଦି'ଜଣଯାକ ପଶିଯାଇ ଚିତ୍କାର କରିବାକୁ ଲାଗିଲେ- 'ମାର ଶଳାକୁ' । ଗୋଟାଏ ଛକ କଡ଼ରେ ଗୋଟାଏ ବୁଲା ସର୍କସବାଲା ଖେଳ ଦେଖାଉଥିଲା । ଗୋଟାଏ ଲମ୍ବା ଲୁହାଛଡ଼ ତା' ନିଜ ଆଖିରେ ମାଡ଼ି ଧରିଥିଲା ଓ ତା'ର ଆରପଟଟା ଥିଲା ଗୋଟାଏ ମୋଟୀମାଇକିନିଆ, ତା' ସ୍ତ୍ରୀ ନିଶ୍ଚୟ- ଆଖିରେ । ଦୁହେଁ ଆଖି ଦ୍ୱାରା ଲୁହାଛଡ଼କୁ ବଙ୍କା କରିବାକୁ ଯାଉଥିଲେ । ଗୋଟାଏ ନେଣ୍ଡରି ସାନଝିଅ ଢୋଲକି ବଜାଉ ବଜାଉ କାନ୍ଦଣା ସୁରରେ ପାଟି କରି କହୁଥିଲା: ଏ ଅବ୍‌ବା, ଏ ଅମ୍ମା, ଐସା ମତ୍ କରୋ, ମରଯାଓଗେ, ମୈ କାହାଁ ଯାଉଙ୍ଗି, ଭୁଖୀ ମରୁଙ୍ଗୀ । 'ଭୁଖୀ ମରୁଙ୍ଗୀ' କଥାଟା ଶୁଣି ଆମଦଳ, ମୁଁ ସହିତ, କ୍ରୋଧରେ ଫାଟି ପଡ଼ି କହିଲୁ- 'କବ୍ ଭି ନେହିଁ, ଆଓ ହମାରା ସାଥ୍' । ଦେଖୁ ଦେଖୁ ପୁରୁଷ ଲୋକଟା ଲୁହାଛଡ଼ଟା ବୁଲାଉ ବୁଲାଉ ଓ ମାଇକିନିଆଟା ତା' ଝିଅ ପାଖରୁ ଢୋଲକିଟା ଟାଣିନେଇ ବଜାଉ ବଜାଉ ଦଳ ସହିତ ମିଶିଯାଇ ପାଟି କଲେ । 'ମାରୋ ଶାଲେକୁ, ଖୁନ୍ ପି ଯାଓ' । ଦଳେ ମୁଲିଆଣୀ କାମରୁ ଫେରୁଥିଲେ ।

ତାଙ୍କ ଭିତରୁ କିଏ କହୁଥିଲା, 'ବାଡ଼ିପଣା ମୋର ଆଜି ଦଶ ପଇସା କାଟି ଦେଇଛି, ତା' ବଅଁଶ ବୁଡ଼ିଯାଉ', କିଏ କହୁଥିଲା 'ଝାଡ଼ାବାନ୍ତିଆ ମୋ ଦେହରେ ପରା ଆଜି ହାତ ମାରିଦେଲା, ତା' ମାଇପ ରାଣ୍ଡ ହଉ।' ସେମାନେ ବି ଏ ଦଳ ସହିତ ମିଶି ପାଟି କରିବାକୁ ଲାଗିଲେ! ତୁ ମରି ଯାଆରେ, ତୋ ବଅଁଶ ବୁଡୁରେ, ତୋ ଝିଅ ରାଣ୍ଡ ହଉରେ।' କେଉଁ ଗାଁର ଦଳେ ଚାଷୀ ଯାଉଥିଲେ, ବୋଧହୁଏ କଉ ମନ୍ତ୍ରୀଙ୍କୁ ଗାଳିଗୁଲଜ କରୁ କରୁ ଫେରୁଥାନ୍ତି। ସେମାନେ ବି ମିଶିଗଲେ। ଜଣେ ଉଚ୍ଚପଦସ୍ଥ କର୍ମଚାରୀ ମଟର ଚଳାଇ ଯାଉଥିଲେ। ଦଳର ଲୋକେ ତାଙ୍କ ମଟର ଅଟକାଇ ତାଙ୍କୁ ଭିଡ଼ି ଆଣିଲେ। ପ୍ରଥମେ ସେ ଆପତ୍ତି କରୁଥିଲେ; କିନ୍ତୁ ପରେ ଦେଖିଲି, ତାଙ୍କ ମୁହଁ ବି କ୍ରୋଧରେ ଲାଲ୍ ହୋଇଯାଇଛି, ଆଉ ସେ ବି ପାଟି କରୁଛନ୍ତି।

ଦଳଟି ଅନ୍ଧାଧୁନିଆ ମାଡ଼ି ଚାଲିଥାଏ ଯୁଆଡ଼େ ଇଚ୍ଛା ସିଆଡ଼େ। ଯେତେ ଆଗେଇ ଥାଏ, ସେତେ ତା'ର କଳେବର ଓ ବେଗ ବଢୁଥାଏ, ସେତେ ବଢୁଥାଏ କ୍ରୋଧ ଓ ଉନ୍ମତ୍ତତା। ବାଟରେ କେତେ ଯେ ରିକ୍‌ସା ଭାଙ୍ଗିଲା, କେତେ ଯେ ମଟର ଓଲଟାଇ ଦିଆଗଲା, କେତେ ଦୋକାନ ଯେ ଲୁଟ୍ ହେଲା ତା'ର ଇୟତ୍ତା ନାହିଁ। ଯିଏ ବା ନୂଆକରି ମିଶୁଥାନ୍ତି, ସେମାନେ ଆଉ କାରଣ କଅଣ ଜାଣିବାକୁ ଚାହୁ ନଥାନ୍ତି। ମିଶିବା ସାଙ୍ଗେ ସାଙ୍ଗେ ତାଙ୍କ ମୁହଁଟିମାନ କ୍ରୋଧରେ ଲାଲ୍ ହୋଇଯାଉଥାଏ। ଆଉ ପାଟିରେ ବୁକୁଫଟା ଚିତ୍କାର 'ମାର ମାର, ହାଣି ପକାଅ।' ତେବେ କଅଣ ଏହା ଏକ ପୂର୍ବକଳ୍ପିକ ବିଦ୍ରୋହ? ତେବେ କାହା ବିରୁଦ୍ଧରେ?

କୌତୂହଳ ସମ୍ଭାଳି ନପାରି ସବା ଆଗରେ ଥିବା ଜଣେ ଯୁବକକୁ ପଚାରିଲି। ତା' ସହିତ ମୋର ଟିକିଏ ଚିହ୍ନା ଥିଲା। ପ୍ରଥମେ ଯେ କେଇଜଣ ଦୌଡ଼ିବାକୁ ଆରମ୍ଭ କରିଥିଲେ ଇଏ ସେମାନଙ୍କ ଭିତରୁ ଜଣେ ନୁହେଁ। କିଛି ବାଟ ପରେ ସେ ଦଳରେ ମିଶିଥିଲା। ସେ ପିନ୍ଧିଥାଏ ଅତି ଅଦ୍ଭୁତ ପୋଷାକ- ବ୍ଲାଉସ୍ କନାର ଅଦ୍ଭୁତ ଜାମା, ଗାଢ଼ ସବୁଜ କନାର ଚିପାପେଣ୍ଟ୍। ମୁଣ୍ଡରେ ଗଦାଏ ଢେଉଢେଉକା କେଶ କାନ୍ଧ ଉପରେ ପଡ଼ିଥାଏ। ସେଥିରେ ପୁଣି ଖୋସା ହୋଇଥାଏ ଗୋଟାଏ ପ୍ଲାଷ୍ଟିକ୍‌ର ଗୋଲାପ ଫୁଲ। ଦୁଇ କାନରେ ବି ପ୍ଲାଷ୍ଟିକ୍‌ର ଫୁଲ ଓ ଗଳାରେ ରୁଦ୍ରାକ୍ଷର ମାଳ, ଯେଉଁଥିରୁ ଝୁଲୁଥାଏ ଗୋଟିଏ ବଡ଼ ପଦକ। ବାଁ ହାତରେ ରୂପାବଳା। ବୟସ କୋଡ଼ିଏ ସରିକି। ମୁହଁରେ ତୀବ୍ର କ୍ରୋଧର ଲକ୍ଷଣ ସତ୍ତ୍ୱେ ମନେ ହେଉଥାଏ ଖୁସ୍ ମିଜାଜିଆ ପିଲାଟିଏ ହେବ ପରା। ମନେ ପଡ଼ିଗଲା ପଚାଶ ବର୍ଷ ପୂର୍ବେ ମୋ ଚାକିରି ଆରମ୍ଭ ବେଳେ ଜଣେ ପ୍ରବଳ ପ୍ରତାପୀ ଅଫିସର୍ ଥିଲେ, ନାଁ ତାଙ୍କର ବକ୍ସି। ଅଫିସ୍‌କୁ ଆସିଲେ ସମସ୍ତେ ଥରହର; କିନ୍ତୁ ସେ ଅଫିସ୍‌ରୁ ଘରକୁ ଫେରି ପେଣ୍ଟ କୋର୍ଟ ଛାଡ଼ି ଶାଢ଼ି ଗହଣା ପିନ୍ଧି ଘଣ୍ଟାଏ କାଳ ଚୁପ୍

କରି ଗୋଟାଏ ନିଛାଟିଆ କୋଣରେ ବସି କଅଣ ସବୁ ଗୁଣୁଗୁଣୁ ହେଉଥାନ୍ତି । ସଭ୍ୟତାର ଆରମ୍ଭରେ ପୁରୁଷ ଓ ସ୍ତ୍ରୀ ଏକା ପ୍ରକାର ଗହଣା ଲୁଗା ଆଦି ପିନ୍ଧି ସାଜୁଥିଲେ । ଏମିତି କି ମୁଁ ପିଲାଦିନେ କାନ ଫୋଡ଼େଇ କାନଫୁଲ ପିନ୍ଧୁଥିଲି । ହାତରେ ପିନ୍ଧୁଥିଲି ମୋଟା ବଳା । ଅବଶ୍ୟ ଆମବେଳକୁ ସେଟା ପରମ୍ପରାରେ ପଡ଼ି ଫେସନ୍ ହୋଇଯାଇଥିଲା, କିଛି ଭାବ ନ ଥିଲା ସେ ବେଶରେ । ତେବେ ସଭ୍ୟତାର ଆରମ୍ଭ ବେଳେ ଯେତେବେଳେ ସେଟା ଷ୍ଟାଇଲ୍ ଥିଲା, ପୁରୁଷମାନେ ନାରୀବେଶ ହେବାର କି ଭାବ ଥିଲା, ବା ବର୍ତ୍ତମାନ ପିଲାଏ ନାରୀ ବେଶକୁ ପସନ୍ଦ କରିବାରେ କି  ଭାବ ଅଛି, କହିପାରିବି ନାହିଁ ।

ପିଲାଟି କାନ୍ଧରେ ଧୀରେ ହାତ ରଖିଲି । ତରାଟି ଚାହିଁଲା ସେ ମୋ ଆଡ଼େ । ଏକାଠି ଦଳ ବାନ୍ଧି ଚିତ୍କାର କରି ସ୍ଲୋଗାନ୍ ଦେଇ ଦେଇ  କଅଣ ଗୋଟାଏ ଧ୍ୱଂସ କରିବାକୁ ବା କାହାକୁ ସବୁ ମାରିଦେବାକୁ ଆମେ ଅଣନିଃଶ୍ୱାସୀ ହୋଇ ଦୌଡ଼ୁଛୁ । ସେଇ ଉଦ୍ଦେଶ୍ୟ ଆମକୁ ଏକ କରି ଦେଇଛି; ଅଥଚ କାହାରି ସହିତ କାହାରି ଚିହ୍ନା ନାହିଁ । ପ୍ରତ୍ୟେକେ ପ୍ରତ୍ୟେକଠାରୁ ଅଲଗା ଖାଲି ନୁହଁନ୍ତି, କେହି ଟିକିଏ ନିକଟେଇ ଆସିଲେ ବା ସମବେଦନା ଜଣାଇବାର ଚେଷ୍ଟା କଲେ, କ୍ରୋଧଟା ଯେମିତି ଆହୁରି ବଢ଼ି ଯାଉଛି । ମୋ ଆଡ଼େ ତରାଟି ଚାହିଁ ମୋ ହାତ ଛିଞ୍ଚାଡ଼ି ଦେଇ କହିଲା, ସାବଧାନ ।

ମୁଁ ଡରିଯାଇ କହିଲି, 'ନାହିଁ ବାପା, ବୁଢ଼ା ମଣିଷ ନା, ଦୌଡ଼ିପାରୁନାହିଁ ଯେ ତୁମ କାନ୍ଧରେ ଟିକିଏ ହାତ ପକାଇ ଦେଲି । ଆଚ୍ଛା, ବାପା, କଥାଟା କଅଣ ? କାହାକୁ ମାରିବାକୁ ଆମେ ଦୌଡ଼ୁ ଥାଇଁ ? କିଏ କଅଣ କଲା ଯେ...'

ପିଲାଟି କ୍ରୋଧରେ ଫାଟି ପଡ଼ି କହିଲା, "ବୁଡବକ୍ କାହାଁକା । ଭିଏତାନାମରେ ଏତେ ଲୋକ ମଲେଣି, ତେଣେ ଆରବ୍-ଇସ୍ରାଏଲ୍ ଯୁଦ୍ଧ; ଏଣେ ଭୟଙ୍କର ମାରଣାସ୍ତ୍ରମାନ ତିଆରି ଚାଲିଛି, ଦୁର୍ନୀତି ଏତେ ବ୍ୟାପିଗଲାଣି ଯେ ମଣିଷ ଗଣ୍ଡେ ଖାଇବାକୁ ପାଉନାହିଁ, ଚାକିରି ନାହିଁ, ରୋଜଗାର ନାହିଁ, ଅପମାନ, ଅତ୍ୟାଚାର, ଶୋଷଣ, ଭାଣ୍ଡାମି । ଏଥିରେ ହ୍ୟାପ ବୁଢ଼ା କୁମ୍ଭକର୍ଣ୍ଣ ନିଘୋଡ଼ ନିଦରେ ଉଠି ପଚାରୁଚି କଅଣ ହେଲା ।"

ସେମିତି ଡରି ମରି କହିଲି, 'ସତ କଥା ଯେ, ହେଲେ...'

ପିଲାଟି ମୋତେ ଗୋଟାଏ ଧକ୍କା ଦେଇ କହିଲା, 'ଚୋପ୍ ହ୍ୟାପ ଭଣ୍ଡ । ଖାଲି ତତ୍ତ୍ୱରେ ଜାଣିଛି ଅନ୍ୟାୟ ଦୁର୍ନୀତି କଥା । ଏଇଛୁଣିକା ଗୁଡ଼ାଏ ବକ୍ତୃତା ଦେବ ଦୁଃଖ ଦାରିଦ୍ର୍ୟ ବିଷୟରେ, ଆଉ ସାଙ୍ଗେ ସାଙ୍ଗେ କହିବ, ଶୃଙ୍ଖଳା ରଖ ।'

ତଥାପି ପଚାରିଲି, 'ଆମେ ଯାଉଛେଁ କୁଆଡ଼େ ?'

ପିଲାଟି ସେମିତି ରାଗରେ ତମତମ ହୋଇ କହିଲା, 'ଯୁଆଡ଼େ ପାରେ ସିୟାଡେ । ନର୍କକୁ ! ସ୍ୱର୍ଗକୁ ! ଖେଦି ଯାଅ ଚାରିଆଡ଼େ । ଭାଙ୍ଗ ସବୁ ଦେବମୂର୍ତ୍ତି, ନେଇଯାଅ

ସେମାନଙ୍କ ଅଯଥା ଗଚ୍ଛିତ ଧନରତ୍ନ। ସବୁ ଭାଣ୍ଡାମି। ଶୋଷଣର ପନ୍ଥା। ହ୍ୟାପ, ଯାହାକୁ ଜଗତର ନାଥ ବୋଲି କୁହା ହେଉଛି, ତା' ସହିତ ବି ଭାଣ୍ଡାମି, ପ୍ରତାରଣା, ଖାଲି ଆହୁରି ଶୋଷିବା ପାଇଁ। କାଳେ ରଜା ନ କହିବା ପର୍ଯ୍ୟନ୍ତ ସେ ଇଞ୍ଚେ ବି ଘୁଞ୍ଚିଲେ ନାହିଁ। ଆଉ ଯେତେବେଳେ ମୁସଲମାନମାନେ ଚମଦଉଡ଼ିରେ ବାନ୍ଧି ଦାଣ୍ଡରେ ଘୋଷାଡୁଥିଲେ ସେତେବେଳେ... ଭଣ୍ଡ, ଶୋଷକର ଦଳ।'

ତେବେ ବି ସାହସର ସହିତ ପଚାରିଲି, ଆଚ୍ଛା ବାପା, ତୁମକୁ ମୁଁ ଅନେକ ଥର ହରିରାମ ବାବୁଙ୍କ ଝିଅ ସେବନ୍ତୀ...

ଯେମିତି ଶୁଣିଛି ସେ ନାଁ ତା'ର ଅଦ୍ଭୁତ ପରିବର୍ତ୍ତନ ଘଟିଲା। ମୁହଁରେ ଆଉ ସେ କ୍ରୋଧ ନାହିଁ। ମୋ କାନ୍ଧରେ ହାତ ରଖି କାନ୍ଦ କାନ୍ଦ ହୋଇ କହିଲା, ଓଃ ହୋ କାହିଁକି ତା' ନାଁ ଧରିଲେ ଏଠି ଆପଣ? ସେ ତ ମୋତେ ବାଉଳା କରିଛି। ଖାଲି ତା ସହିତ ମିଶିଯିବା ପାଇଁ ମନ ସଦାବେଳେ ଆଉଟିପାଉଟି ହେଉଛି। 'ମିଶିଯିବା' ମାନେ ବୁଝିପାରୁଛନ୍ତି ତ? 'ନିତମ୍ବ ଧୀରେ ଧୀରେ ଚଳା' ନୁହେଁ, ଏକଦମ୍ ଦେହ ଓ ମନ ମିଶିଯିବା। ସେ ମୋତେ ଆତ୍ମସାତ୍ କରି ନିଅନ୍ତା କି?'

ମୁଁ ତା' କଥା ଶୁଣି ତ କାବା! ଏ କି କଥାରେ ବାବା! ପ୍ରାଣୀ ରାଜ୍ୟରେ କୌଣସି କୌଣସି ପ୍ରାଣୀ ଏପରି କରନ୍ତି। ରତି ପରେ ସ୍ତ୍ରୀ ବୁଢ଼ିଆଣୀଟି ପୁରୁଷ ବୁଢ଼ିଆଣୀକୁ ଗୋଡ଼େଇ ଧରି ଗିଳି ପକାଏ। କେହି କେହି କୁହନ୍ତି ଗିଳେ ନାହିଁ, ତା' ଯୋନି ଭିତରେ ଭରତି କରି ଚାପି ଦେଇ ମାରି ପକାଇ ସେଇଠି ରଖିଦିଏ। ପୁଣି, ଶ୍ରୀରାମଙ୍କ ରୂପ ଓ ଐଶ୍ୱର୍ଯ୍ୟ ଦେଖି ଋଷିମାନେ ନିଜକୁ ନାରୀ ମନେ କଲେ।

ପିଲାଟି ମୋତେ କୁଣ୍ଢାଇ କାନ୍ଦି ପକାଇ କହିଲା, 'ଆଜ୍ଞା, ମନେ ହେଉଚି, ମୁଁ ଫାଟି ଯାଆନ୍ତି କି, ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ସାରା ବିଶ୍ୱରେ ମିଳିଯାଆନ୍ତି କି। ଏ ଦେହ ଶଳା ବାଦ ସାଧୁଛି। ଛାଡ଼୍ ଛାଡ଼୍ ଶଳା ଦେହକୁ। ମାର ମାର, କାଟ କାଟ, ହାଣ ହାଣ।

ପାଟି କରୁ କରୁ ପିଲାଟି ଆଗକୁ ଦୌଡ଼ିଲା। ମୁଁ ଆଉ ଦୌଡ଼ି ପାରୁ ନଥାଏ, ଭାରି କଷ୍ଟ ହେଉଥାଏ। ସେତେବେଳକୁ ମୁଁ ଅନେକଟା ପଛେଇ ଯାଇଥାଏ। ଗୋଟିଏ ଚାଷୀ କାନ୍ଧରେ ଯେମିତି ଟିକିଏ ଭରା ଦେବାକୁ ଯାଇଛି, ସେ ମୋ ହାତ ଛିଞ୍ଚାଡ଼ି ଦେଇ କହିଲା, 'କିଏ ରେ ବଦମାସ, ହ୍ୟାପ ମାଡ଼ ଖାଇବୁ କି?'

କହିଲି: ଆଚ୍ଛା ଭାଇ...

ସେ ରାଗିଯାଇ ମୋତେ ଧକାଏ ମାରି କହିଲା, 'ଫେଣେ କହିଲା 'ଭାଇ', ହ୍ୟାପ ବଦମାସ।'

କହିଲି, 'ଆଚ୍ଛା ମୋତେ ମାରିବ ମାର। ମୋର ତ ମାରନା ମଲିଣି ଅବସ୍ଥା।

ହେଲେ ତମେମାନେ ତ ବାଟେ ବାଟେ ଯାଉଥିଲ, ଏଥିରେ କାହିଁକି ମିଶିଗଲ ? ଏମାନେ କିଏ, କେଉଁଠି କି ଯାଉଛନ୍ତି, କଅଣ କରିବାକୁ ଚାହାଁନ୍ତି ଜାଣ ?'

କହିଲା, 'ଜାଣିବା ଦରକାର ନାହିଁ। ଶଳା ବାପ ଅଜା ଚଉଦ ପୁରୁଷଠୁ ଚାଷ କରୁଛୁ ତ କରୁଛୁ ଗଲା। ଆମକୁ କୁହା ହେଉଚି ଜାତିର ଦେଶର ମେରୁଦଣ୍ଡ। ଏଣେ ମେରୁଦଣ୍ଡ ଅବସ୍ଥା ଦି' ଗଣ୍ଡା ଦି' କଡ଼ା ବାଙ୍କି ଗଲାଣି। ଯେତେ ହାକିମ ହୁକୁମା, ମନ୍ତ୍ରୀ, ନେତା, ଆମକୁ କହୁଛନ୍ତି ଉତ୍ପାଦନ ଆହୁରି ବଢ଼ାଅ, ଆହୁରି ଖଟ; ଆମ ନାଁରେ କେତେ ମନମତାଣିଆ, କଅଁଳିଆ ଗୀତ ସବୁ ବୋଲାଯାଉଛି, କଅଁଳିଆ କାହାଣୀ ଲେଖା ହେଉଛି ଯେ ଆମେ ସବୁ ଭାରି ସରଳ, ସଚ୍ଚୋଟ, ଶାନ୍ତିପ୍ରିୟ। ଉତ୍ପାଦନ ତ ବଢ଼ାଇଲୁ। ଗଲା କୁଆଡ଼େ ସବୁ ? ସବୁ ଧପ୍ପାବାଜି। କାହାରିକୁ ବିଶ୍ୱାସ ନାହିଁ। ଏତେ ଅବିଶ୍ୱାସ, ସନ୍ଦେହ, ଘୃଣା ମନ-ଭିତରେ ରଖି ମଣିଷ ବଞ୍ଚିବ କେମିତି ଶୁଣେ ? ଅବିଶ୍ୱାସ ବିଷ ଘାରି ଦେଲାଣି। ଦିଅଁ ଦେବତାଙ୍କୁ ବି ବିଶ୍ୱାସ ନାହିଁ। ମାର ଶଳାଙ୍କୁ ମାର ମାର।'

ସେ ଉତ୍କ୍ଷିପ୍ତ ହୋଇ ଏମିତି କୁଦାକୁଦି କଲା ଯେ ମୁଁ ଭୟରେ ଆହୁରି ପଛେଇ ଗଲି। ଗୋଡ଼ କଟକଟ ହେଉଥାଏ; ତଥାପି ଦୌଡୁଥାଏ। ମୋ ବାଁ କାନ୍ଧକୁ ଲାଗି ସେତେବେଳେ ଯେ ଦୌଡୁଥିଲେ, ସେ ଜଣେ କିରାଣି। ସେ ମୋତେ ଭଲକରି ଚିହ୍ନନ୍ତି। ବୋଧହୁଏ ସେ ଚାଷୀକଥା ଶୁଣୁଥିଲେ। ମୋତେ ଦେଖି କହିଲେ, ସତରେ ଆଜ୍ଞା, ଅବିଶ୍ୱାସ ଖାଲି ନୁହେଁ, ତା' ସାଙ୍ଗକୁ ଭୟ। ସମସ୍ତଙ୍କୁ ଭୟ। ଦେବତାଙ୍କୁ ବି। ଫଳରେ ସମସ୍ତଙ୍କୁ ଘୃଣା। ଏସବୁରୁ ମୁକ୍ତି ପାଇବାକୁ ମନ ଡହଳବିକଳ ହେଉଚି; କିନ୍ତୁ ବାଟ ମିଳୁନାହିଁ। କିଏ ଯେମିତି ଲୁହା ଶିକୁଳିରେ ବାନ୍ଧି ଦେଇଚି। ନୀରସ ଏକବାଗିଆ କାମ କରୁ କରୁ ଜୀବନଟା କାଠ ପାଲଟିଲାଣି। ଅଥଚ, ନିଜ ସ୍ଥିତି ବଜାୟ ରଖିବାକୁ ସେ କାମକୁ କୃତ୍ରିମ ଉପାୟରେ ଆହୁରି ବଢ଼େଇବାକୁ ପଡୁଚି। ମନେହୁଏ ମୁଁ ମରିଯାଆନ୍ତି କି, ସମସ୍ତ ମାନବ ଜାତିଟା ମରିଯାଆନ୍ତା କି।

କହି 'ମାର ମାର' ପାଟି କରି ସେ ଦୌଡ଼ିଗଲା ଆଗକୁ। ମୋ ଡାହାଣ କାନ୍ଧକୁ ଲାଗି ଯେ ଦୌଡ଼ିଥିଲେ ତାଙ୍କୁ ଦେଖି ମୁଁ ଚମକି ପଡ଼ିଲି। ସେ ଜଣେ ନାମଜାଦା ଅଫିସର୍। ମୋତେ ସେ ଚିହ୍ନନ୍ତି। ମୋତେ ଦେଖି ମୁରୁକି ହସି କହିଲେ, ସତ କଥା ଏକା ଦିନାରାତି ଖଟଣି। ସେଇ ଏକା କାମ, ଯନ୍ତ୍ର ଭଳି। ସେ କାମର ଅଶୀ ଭାଗ କାମ ବାଜେ, ନହେଲେ ଭଲ। ବାକି କୋଡ଼ିଏ ଭାଗ ଭାଣ୍ଡାମି। ଆତ୍ମା କେତେ ଆଉ ସହିବ ? ଜୀବନର ଶ୍ରେଷ୍ଠ ତିରିଶ ବର୍ଷ କଅଣ ଏମିତି ଯିବ ? ଏ କଅଣ ବଦଳିବ ନାହିଁ। ଏ ଜୀବିକା ସହିତ ଜୀବନର ଯେମିତି ଚିରବିଦ୍ରୋହ। ଖୁବ୍ ପ୍ରମୋସନ୍, ଅର୍ଥ ପାଇଲିଣି। ହେଲେ ମନଟା ହାହାକାର କରେ। ମନ କଅଣ ଗୋଟାଏ ସୁନ୍ଦର କାମ କରିବାକୁ ବ୍ୟାକୁଳ, ଅଥଚ ତା'

ପାଇ ଗୁମରି ଗୁମରି କାନ୍ଦୁଛି ସଦାବେଳେ। ମଝିରେ ମଝିରେ ମନ କହେ, ବିଦାରି ପକା ଆଖି ସାମ୍‌ନାରେ, ଯାହାକୁ ପାଉଛୁ। ଆଖି ତାଙ୍କର କ୍ରୋଧରେ ଜଳି ଉଠିଲା। ସେ ବି ପାଟି କରୁ କରୁ ଦୌଡ଼ିଗଲେ।

ହଠାତ୍ ସାମ୍‌ନା ପଟେ କଅଣ ଘଟିଲା କେଜାଣି, ଦଳଟା ପ୍ରଚଣ୍ଡ ଶବ୍ଦ କରି ପ୍ରବଳ ବେଗରେ ଆଗକୁ ଧସେଇ ଗଲା। ମୁଁ ଅନେକଟା ପଛେଇ ଗଲି। ପଡୁ ପଡୁ ବଞ୍ଚିଗଲି। ପଡ଼ି ଯାଇଥାନ୍ତି ଯଦି ତେବେ ଲୋକଙ୍କ ପାଦତଳେ ମୁଁ ପେଷି ହୋଇଯାଇଥାନ୍ତି।

କିଏ ଜଣେ ମୋତେ ପଛରୁ ଭିଡ଼ି ଧରିବାରୁ ବଞ୍ଚିଗଲି। ପଛକୁ ଚାହିଁ ଦେଖିଲି ସେଇ ମୂଲିଆଣୀ ଦଳ। ସେମାନଙ୍କ ଭିତରୁ ଯିଏ ମୋତେ ଭିଡ଼ି ଧରିଥିଲା ସେ ଯୁବତୀ। ସୁନ୍ଦର ଗୋଲ୍ ସ୍ତନ ଦୁଇଟି। ଦୌଡୁଥିବାରୁ ଆହୁରି ସୁନ୍ଦର ଦିଶୁଥାଏ। ପିନ୍ଧିଥାଏ ଖଣ୍ଡେ ଶାଢ଼ି, ନାଲି ରଙ୍ଗର ଶସ୍ତା ଶାଢ଼ି। ଶାଢ଼ିର ଚିରାଜାଗାଟା ମଝିରେ ମଝିରେ ସ୍ତନ ଉପରେ ପଡ଼ି ସ୍ତନଟି ଦିଶି ଯାଉଥାଏ। ସେ ତାକୁ ପୁଣି ଘୋଡ଼ାଇ ଦେଉଥାଏ। ଆଉ ସାଙ୍ଗେ ସାଙ୍ଗେ ତୀବ୍ର କଣ୍ଠରେ ଗାଳି ଦେଉଥାଏ, 'ଅଲପେଇଷା ଲୁଗା ଟାଣି ଦେଉଚି।' କିଏ ଯେମିତି ତା' ଶାଢ଼ି ଟାଣି ଦେଉଚି। ମୁହଁଟି କିନ୍ତୁ ତା'ର କ୍ଳାନ୍ତି ଓ ବିଷାଦରେ ଶୁଖିଯାଇଛି, ଗାଲ ପଶି ଯାଇଛି। ଆଖିରେ ତା'ର ବ୍ୟଥାଭରା କ୍ରୋଧ ହେବ ପରା। ଭଲ ଖାଇବାକୁ ପିନ୍ଧିବାକୁ ପାଉଥିଲେ ସେ ଖୁବ୍ ସୁନ୍ଦରୀ ହୋଇଥାନ୍ତା ନିଶ୍ଚୟ। ପଚାରିଲି, 'ଝିଅ, ତମ ମଣିଷ ଅଛନ୍ତି ଏଥିରେ ?' ସେ ମୋତେ ତା' ବଡ଼ ବଡ଼ ଆଖିରେ ଚାହିଁଲା, ବଲ ବଲ କରି। ପ୍ରଥମ ବର୍ଷଣର ବରକୋଳିଆ ଠୋପା ପରି ଆଖିରୁ ତା'ର ପାଣି ଝରି ପଡୁଥାଏ। ଏକୁଇ ଦେଖି ବୋଧହୁଏ ରବୀନ୍ଦ୍ରନାଥ ତାଙ୍କ 'ଗୁପ୍ତପ୍ରେମ'ରେ ଲେଖିଛନ୍ତି– ମୁହିଁ ଯେ ଆପଣାକୁ ଫୁଟାଇ ପାରୁନାହିଁ, ପରାଣ କାନ୍ଦି ତହୁଁ ମରୁଛି !

ମୂଲିଆଣୀ ଦଳଟି 'ଅଲପେଇଷା, ଝାଡ଼ାବାନ୍ତିଆ, ନଈଶୁଆ' ଆଦି ଗାଳି ଦଉ ଦଉ ଆଗକୁ ମାଡ଼ିଗଲେ। ମୁଁ ଆହୁରି ପଛକୁ ପଡ଼ିଗଲି। ପ୍ରାୟ ଶେଷ ମୁଣ୍ଡରେ। ଅନାଇ ଦେଖିଲି ଦୈତାରିବାବୁ ଦୌଡୁଛନ୍ତି ପାଟି କରି କରି। କିମାଶ୍ଚର୍ଯ୍ୟମ୍ ଅତଃ ପରମ୍ ! ଯିଏ କୋଟିପତି କଣ୍ଟ୍ରାକ୍ଟର, ଭାରତର ପ୍ରାୟ ସବୁ ପ୍ରଦେଶରେ ଯାହାଙ୍କର ବଡ଼ ବଡ଼ ବ୍ୟବସାୟ ଓ ସେଇ ସେଇ ପ୍ରଦେଶରେ ଗୋଟିଏ ଗୋଟିଏ ରକ୍ଷିତା ଅଛନ୍ତି, ସିଏ ପୁଣି ଏ ଦଳରେ ପାଟି କରି ଦୌଡୁଛନ୍ତି ! ଭାରି ମଉଜ ମଜଲିସ୍‌ରେ ଯେ ଚଳନ୍ତି, ପ୍ରାୟ ସବୁ ଧର୍ମାନୁଷ୍ଠାନ ଓ ଇସ୍କୁଲ୍ କଲେଜକୁ ଯାହାଙ୍କ ଅକାତର ଦାନ, ତାଙ୍କର ପୁଣି କି ଅଶାନ୍ତି ! ଆଶ୍ଚର୍ଯ୍ୟ ହୋଇ ଚାହିଁଲି ତାଙ୍କୁ। ସେ ବୁଝିପାରି କହିଲେ, 'ହଁ, ଆଉ ସହି ହେଉନାହିଁ।' ପଚାରିଲି, 'କଅଣ ସହି ହେଉନାହିଁ ଆଜ୍ଞା ?' କାନ୍ଦ କାନ୍ଦ ହୋଇ ସେ କହିଲେ, 'ନିଜ ଦୁର୍ନୀତି। ମନ ବିଦାରି ଦେଉଛି। ସବୁ ଶଳେ ଚୋର। ନ ହେଲେ ମୋର ଏତେ ସମ୍ମାନ ବଢୁଥାନ୍ତା ?

ଇୟାଡେ ଆମ ନିଜ ଦୁର୍ନୀତି ରାକ୍ଷସ ରୂପ ଧରି ଆମକୁ ନିଜକୁ ଗିଳିବାକୁ ମାଡ଼ି ଆସୁଛି, ତା' ଜାଣିପାରୁନାହୁଁ, ଜାଣିଲେ ବି ଛାଡ଼ି ପାରୁନାହିଁ। କିଛି ପାଇଲି ନାହିଁ ଆଜ୍ଞା, କିଛି ନୁହେଁ। ନେଇ ଯାଆନ୍ତୁ ଏମାନେ ସବୁ ଲୁଟି, ମାରି ଦିଅନ୍ତୁ ମୋତେ।' 'ମାର ମାର ହାଣ ହାଣ' ଚିତ୍କାର କରି ସେ ଧାଇଁଗଲେ ଆଗକୁ ପ୍ରବଳ ବେଗରେ।

ଯେଉଁ ବେଗରେ ଦଳଟି ମାଡ଼ିଚାଲିଥାଏ ତା' ସହିତ ଦୌଡ଼ିବା ମୋ ପକ୍ଷରେ ଅସମ୍ଭବ ହୋଇପଡ଼ିଲା। ସବା ପଛକୁ ପଡ଼ିଗଲି। ଚାରିଆଡ଼ ସେତେବେଳେ ଅନ୍ଧାର ଘୋଟି ଗଲାଣି। ଦଳ ଚାଲିଥାଏ ଶ୍ମଶାନ ଆଡ଼େ। ଦେଖିଲି ମୋ ପଛକୁ ଅଛନ୍ତି ନବୀନ ବାବୁ। ବୁଢ଼ା ବାଡ଼ି ଠୁକୁ ଠୁକୁ କରି ସାମାନ୍ୟ ପକ୍ଷାଘାତଗ୍ରସ୍ତ ଡାହାଣ ଗୋଡ଼କୁ ପାରୁପର୍ଯ୍ୟନ୍ତ ଓଟାରି ଓଟାରି ଦୌଡ଼ୁଛନ୍ତି 'ମାର ମାର' ପାଟି କରି। ତିରିଶ ବର୍ଷ ପେନ୍‌ସନ୍‌ଭୋଗୀର ପୁଣି କି ଅସନ୍ତୋଷ ? ମୋତେ ଦେଖି ହସି ପକେଇଲେ। ଆଖିରୁ ତାଙ୍କରି କିନ୍ତୁ ପାଣି ଝରୁଥାଏ। ମୋ କାନ୍ଧରେ ହାତ ରଖି ସେ ଆପଣା ଛାଏଁ କହିଲେ, 'ମୁଁ ବି ବିଦ୍ରୋହୀ ଆଜି ଏମାନଙ୍କ ସହିତ। ଏତେ ବୟସ ହେଲା, ମରିବାକୁ ଆଉ ଦିନେ ଦି'ଦିନ;ତଥାପି ପିଲାଳିଆ ଦିବାସ୍ୱପ୍ନ, ମୁଁ ଏମିତି ହେବି, ପୃଥିବୀପ୍ରସିଦ୍ଧ ହେବି। ହ୍ୟାପ ବେହିୟା ବୁଢ଼ା ଶଳା, ଲାଜ ନାହିଁ ତୋତେ। ଏଇ ବୁଢ଼ା ଶଳେ ସବୁଠାରୁ ବେଶି ପାଜି। ତାଙ୍କରି ବେଶୀ ଲୋଭ, ହିଂସା, କ୍ରୋଧ। ଖାଲି ଅହଂ; ଅଥଚ ବୁଝିପାରୁଚି ଏକୁ ଛାଡ଼ି ପାରିଲେ ଅନନ୍ତ ଆନନ୍ଦ। ସବୁ ବିଫଳ ମୋର ନାରାୟଣ, ସବୁ ବିଫଳ, ସବୁ ବୃଥା, ଖାଲି ଯନ୍ତ୍ରଣା। ଯେମିତି ଅମୁହାଁ ଲୁହା ସିନ୍ଦୁକରେ ପଡ଼ି ଯାଇଛି। ମନେ ଅଛିନା, ଆମ ପିଲାବେଳେ ଖବରକାଗଜରେ ପଢ଼ିଥିଲୁ, ଖରାଦିନ ଦିପହର ବେଳେ ଚାରି ଜଣ ଲୋକ ଗୋଟାଏ ଲୁହା ସିନ୍ଦୁକ ମୁଣ୍ଡାଇ ନଈ ବାଲି ପାରି ହେଉଥିଲେ। ତତଲା ବାଲିରେ ଗୋଡ଼ ପୋଡ଼ିଯିବାରୁ ସେମାନେ ସିନ୍ଦୁକ ବାଲିରେ ଥୋଇ ସିନ୍ଦୁକ ଉପରେ ଛିଡ଼ା ହେଲେ। ସେଠି ବି ଅସହ୍ୟ ହେବାରୁ ଚାରିଜଣଯାକ ସିନ୍ଦୁକ ଭିତରେ ପଶି ଢାଙ୍କୁଣିଟି ଟେକି ତା' କବ୍‌ଜାକୁ ସିନ୍ଦୁକ ଫାନ୍ଦରେ ଠେକାଇ ରଖିଦେଲେ। ଟିକିଏ ହଲ୍‌ଚଲ୍ ହେଲାରୁ କବ୍‌ଜାଟି ଖସିଯାଇ ବାହାର କୁହୁଣ୍ଡା ସହିତ ଖାପ ଖାଇ ଲାଖିଗଲା। ଏମାନେ ଯେମିତି ଢାଙ୍କୁଣି ଟେକିବାକୁ ଚେଷ୍ଟା କଲେ କିଛି ହେଲା ନାହିଁ, ଏତେ ଟାଣୁଆ ସିନ୍ଦୁକ ସେ। ଶେଷରେ ସମସ୍ତେ ଯନ୍ତ୍ରଣାରେ ଛଟପଟ ହୋଇ ନିଜ ନିଜ ଭିତରେ କାମୁଡ଼ାକାମୁଡ଼ି ହୋଇ ମଲେ। ପ୍ରତ୍ୟେକର ଭିତର ଅବସ୍ଥା ସେମିତି, ବାହାର ପୃଥିବୀ ଅବସ୍ଥା ବି ସେମିତି। ଓଃ ଥରେ ଯଦି ଆନନ୍ଦରେ କହିପାରନ୍ତି, 'ସର୍ବେ ସୁଖୀନଃ ଭବନ୍ତୁ...' ଜୀବନ ଧନ୍ୟ ହୋଇଯାଆନ୍ତା।' କହୁ କହୁ ସେ ଅଧୀର ଭାବରେ କାନ୍ଦି ପକେଇଲେ। ତା'ପରେ ପରେ ପୁଣି କ୍ରୋଧରେ ପାଟି କରି ଉଠିଲେ, "ହ୍ୟାପ ସରକାର ସବୁ ସମ୍ପତ୍ତି ନେଇଯାଉନାହିଁ କାହିଁକି ? ମାର ଶଳାଙ୍କୁ। ଧର ଧର,

ମାର ମାର, ହାଣି ପକାଅ ସମସ୍ତଙ୍କୁ।" ତାଙ୍କ ଆଖି ଜଳି ଉଠିଲା ଅସହାୟ କ୍ରୋଧରେ। ଯନ୍ତ୍ରଣାରେ ଚିତ୍କାର କରୁ କରୁ ସେ ବି ଆଗେଇ ଗଲେ।

ମୁଁ ସେତେବେଳେ ପଡ଼ିଗଲି ଏ ଅଦ୍ଭୁତ ଶୋଭାଯାତ୍ରାର ସବା ପଛରେ। ଭାବୁଥାଏ ଅହୋବତ, ଯେଉଁ ସମଷ୍ଟିଗତ ବ୍ୟକ୍ତିତ୍ୱର ରୂପଟି ଏଡ଼େ ଭୟଙ୍କର, ଏଡ଼େ ବିକଟାଳ, ସେଇ ସମଷ୍ଟିର ପ୍ରତ୍ୟେକ ବ୍ୟକ୍ତିଟିର ଅନ୍ତରତମ ରୂପଟି ପୁଣି ଏଡ଼େ କରୁଣ ! ପ୍ରତ୍ୟେକ ବିପ୍ଳବର ଅନ୍ତରାଳରେ ତେବେ ନିଶ୍ଚୟ ଗୋଟାଏ କାରୁଣ୍ୟ ଅଛି ପରା ! ପ୍ରକୃତ ଜନଜାଗରଣ ହେଲେ ବୋଧହୁଏ ତା' ଧରାପଡ଼େ।

ଚନ୍ଦ୍ର ପଚାରିଲେ: ତେବେ କଅଣ କହୁଚ, ଭାରତରେ କେବେ ଜନଜାଗରଣ ହୋଇନାହିଁ, ଏ ଯାହା ହେଲା ସେ ଜନ ଜାଗରଣ ?

ନାରାୟଣ କହିଲେ: ମୁଁ ଏ ବିଷୟରେ କିଛି ଜାଣେନା, ଯାହା ଘଟିଲା ଓ ସେଥିରୁ ଯାହା ଭାବିଲି ତାହା ହିଁ କହିଲି। ଦିବାକର ଏହାର ଉତ୍ତର ଦେଇପାରେ।

ଦିବାକର କହିଲେ: ହୋଇ ହୋ ଚନ୍ଦ୍ର, ୧୦୦୦ ଖ୍ରୀଷ୍ଟାବ୍ଦରେ ମାମୁଦ୍ ଗଜନି ସତର ଥର ଭାରତ ଲୁଟ୍ କଲେ। ୧୭୪୧ରେ ନାଦିର୍ ଶାହା ସେମିତି ଲୁଟ୍‌ତରାଜ କଲେ। ୧୭୬୧ରେ ବି ଅହମ୍ମଦ ଶାହ ଦୁରାନୀ। ତା'ପରେ ଇଂରେଜ। ରାଜା ପୁରୋହିତ ମିଶି ଯାଇ ଲୋକଙ୍କୁ ଠକି ଯେଉଁ ସବୁ ଧନରତ୍ନ ସୁନାରୂପାର ଠାକୁର, ଦିଅଁମାନ ଗଢ଼ିଥିଲେ, ଲୁଟ୍‌ପାଟ କରି ନେଇଗଲେ। ଯେତେ ପ୍ରଶଂସା କରନ୍ତୁ ନା କାହିଁକି- ଏଇ ଭାରତରେ ମହାମାନବର ସାଗର ତୀରେ- ଏମାନଙ୍କୁ ସାମାନ୍ୟ ଟିକିଏ ବାଧା ବି କେହି ଦେଇପାରିଲେ ନାହିଁ। ଯେଉଁମାନଙ୍କ ହାତରେ ସୈନ୍ୟ ଓ ଧନ ଥିଲା, ସେମାନଙ୍କ ନୈତିକ ବଳ ନଥିଲା। ଆଉ ଜନସାଧାରଣ ରହିଲେ ନିର୍ଲିପ୍ତ। କାହିଁକି ନା, ତାଙ୍କର ଯାଏ କେତେ ଆସେ କେତେ। ଦେଶ ପ୍ରତି ତାଙ୍କର କି ମମତା ? ମାଟି ତ ଅଖଣ୍ଡ। ମାନଚିତ୍ରରେ ଗୋଟାଏ ସଦା ପରିବର୍ତ୍ତନଶୀଳ ଗାର ଟାଣି ଦେଇ ତାକୁ ଗୋଟାଏ ନାଁ ଦେଇ ପୃଥିବୀ ମଧ୍ୟରେ ଶ୍ରେଷ୍ଠ ସେ ଯେ ଏଇ ଦେଶଟି ମୋର ଗାଇଲେ ବା 'ଏମିତି ଧାନ କଉଠି ହୁଏନା, ଏମିତି ଚାନ୍ଦ କଉଠି ଉଠେନା' କହିଲେ ବା ଯୁଦ୍ଧରେ ଜିଣି ଦେଶ ଜୟ କଲେ ତ ଆଉ ସେ ଦେଶ ମା' ହୋଇଯିବ ନାହିଁ କି ଦେଶପ୍ରେମ ଜାଗିବ ନାହିଁ। ସେ ତ ସାମୟିକ ଉତ୍ତେଜନା ଆଣିବା ପାଇଁ ସାମୟିକ ଭାବପ୍ରବଣତା। ଯାହାକି ଶୋଷଣ ପାଇଁ ଭାରି ସୁବିଧା ବି ଦିଏ। ଟଲଷ୍ଟୟ ତାଙ୍କ 'ୱାର୍ ଆଣ୍ଡ୍ ପିସ୍'ରେ ଦେଖେଇ ନାହାନ୍ତି, ଯେଉଁ ସ୍ଥାନରେ ନେପୋଲିୟନ୍ ଓ ଜାର୍‌ଙ୍କ ସୈନ୍ୟ ଭିତରେ ଭୀଷଣ ଯୁଦ୍ଧ ଚାଲିଛି, ତା'ରି ଅଳ୍ପ ଦୂରରେ ଗାଁର ଲୋକେ ନିର୍ଲିପ୍ତ ଭାବରେ ଚାଷ କରୁଛନ୍ତି, ଦୁଃଖସୁଖ ହେଉଛନ୍ତି। ଏଇ ତ ଏବେ ଅନେକଙ୍କୁ ଯେତେବେଳେ ପଚରାଗଲା, ସେମାନେ କାହିଁକି ସ୍ୱାଧୀନତା ସଂଗ୍ରାମରେ

ଯୋଗଦେଇଥିଲେ, ସେମାନେ କହିଲେ, ଗାନ୍ଧିଜୀ ଉନ୍ମାଦନା ଆଣିଦେଇଥିବାରୁ। କହିଲେ ନାହିଁ ଯେ ଲୋକଙ୍କ ଦୁଃଖଦାରିଦ୍ର୍ୟ ଦେଖି ସେମାନେ ବ୍ୟଥିତ ହୋଇଥିଲେ। ଫ୍ରାନ୍ସ, ରୁଷିଆ, ଚାଇନାରେ ପ୍ରକୃତ ଗଣବିପ୍ଳବ ହୋଇଥିଲା। ଭାରତର ସନ୍ତ୍ରାସବାଦୀମାନେ ତ ଥିଲେ ରୋମାଣ୍ଟିକ୍ ଦେଶପ୍ରେମୀ। କେବଳ ଗାନ୍ଧିଜୀ ବ୍ୟଥିତ ହୋଇଥିଲେ ଦୁଃଖ ଦାରିଦ୍ର୍ୟ ଦେଖି ଏବଂ ତାଙ୍କ ଜରିଆରେ ଅଳ୍ପ କେଇଜଣ। ସେ ତେଣୁ ବୁଝିଥିଲେ ଯେ ଚାଷୀ, ମୂଲିଆଙ୍କୁ ନ ଜଗାଇଲେ କିଛି ହବନାହିଁ। ଅଧିକାଂଶ ତ ଇଂରେଜ ଠାରୁ ଅପମାନ ପାଇ ବା ଖୁବ୍ ହେଲେ ପରାଧୀନ ଦେଶର ଲୋକ ବୋଲି ନିଜ ଅହଂକୁ ବାଧିବାରୁ ରାଗିଯାଇଥିଲେ। ସେଇଥିପାଇଁ ତ ସ୍ୱାଧୀନତା ପ୍ରାପ୍ତିର ଅଳ୍ପ କେଇଟା ବର୍ଷ ଭିତରେ ପ୍ରବଳ ବେଗରେ ଦୁର୍ନୀତି ପଶିଗଲା, ଯାହାକି ଇଂରେଜ ରାଜତ୍ୱ ବେଳେ ବି ନ ଥିଲା। ଅବଶ୍ୟ ନିଛକ ଭୟରୁ, ସାଧୁତାରୁ ନୁହେଁ। କେବଳ ଗାନ୍ଧିଜୀ ଏ କଥା ଜାଣିପାରିଥିଲେ। ଅବଶ୍ୟ ପ୍ରକୃତ ଗଣବିପ୍ଳବ ପୂର୍ବରୁ ଗୋଟାଏ ବୁର୍ଜୋୟା ବୌଦ୍ଧିକ ବିପ୍ଳବ ହେବାର ଦେଖାଯାଏ। ତେବେ ଫ୍ରାନ୍ସ, ଋଷିଆ, ଚାଇନାରେ ଯେଉଁସବୁ ଲୋମହର୍ଷଣ କାଣ୍ଡ ଘଟିଲା, ଗଣବିପ୍ଳବ ବେଳେ ଭାରତରେ ହୁଏତ ସେତେଟା ହେବନାହିଁ। କାରଣ ଭାରତ ଅବସ୍ଥା ନିଆରା। ସେ ଆଲୋଚନା ଥାଉ। ନାରାୟଣ, ତମେ କହ ତା'ପରେ କଅଣ ହେଲା। ସତେ ଏକା ଭାରି ରୋମାଞ୍ଚକର ଘଟନା। ତମେ ଭାଗ୍ୟବାନ। ଭଗବାନଙ୍କ ନୃସିଂହ ରୂପର ଆଭାସ ମାତ୍ର ଦେଖିପାରିଛ ବୋଲି।

ନାରାୟଣ କହିଲେ; ତା' ପରେ କଅଣ ହେଲା କେଜାଣି ସବା ସାମ୍ନା ପଟେ ଗୋଟାଏ ନାହିଁ ନଥିବା ପ୍ରଳୟଙ୍କରୀ ଶବ୍ଦ ଉଠିଲା। ପ୍ରାଣପଣେ ଦୌଡ଼ିଗଲି ଏକଦମ୍ ସାମ୍ନାକୁ। ସେଠି ଧ୍ୱନି ହେଉଥାଏ 'ମାର ଏକୁ ମାର ଏକୁ'। ସାମ୍ନାକୁ ଅନାଇ ଯାହା ଦେଖିଲି, ସେଥିରେ ମୋର ହୃତ୍‌କମ୍ପ ଜାତ ହେଲା। ଦେଖିଲି ଜଣେ କିଏ ରାସ୍ତା ଉପରେ ଆଣ୍ଠୁ ମାଡ଼ି ବସି ମ୍ୟାଗ୍ନିଫାଇଙ୍ଗ୍ କାଚ ଦ୍ୱାରା ରାସ୍ତା ଉପରେ କାହାକୁ ଅତି ନିବିଷ୍ଟ ମନରେ ଦେଖୁଛନ୍ତି। ଅପୂର୍ବ ପ୍ରଶାନ୍ତ ବଦନ। ଲମ୍ବା ଲମ୍ବା ଅବିନ୍ୟସ୍ତ ପାଚିଲା ବାଳ ସବୁ ଫୁରଫୁରୁ ଉଡୁଚନ୍ତି। ଓଠ ପ୍ରାନ୍ତରେ ଲାଖି ରହିଛି, ଅପୂର୍ବ ମୁଗ୍ଧ ଆନନ୍ଦର ସ୍ମିତହାସ୍ୟ। ଏତେ ବଡ଼ ଗୋଟାଏ ହିଂସ୍ର ଜନତା ଯେ ତାଙ୍କ ଆଗରେ ସେ କଥା ସେ ଜାଣି ବି ପାରିନାହାନ୍ତି। 'ମାର ମାର' ଶବ୍ଦ ଆହୁରି ପ୍ରବଳ ହେବାରୁ ବୋଧହୁଏ ତାଙ୍କ କାନକୁ ଟିକିଏ ଶୁଭିଲା। ରାସ୍ତାରୁ ଦୃଷ୍ଟି ନ ଫେରାଇ ଅନ୍ୟ ହାତଟି ଉଠାଇ ସେ ଆମକୁ ଅପେକ୍ଷା କରିବାକୁ ସଂକେତ ଦେଲେ। ସେଇ ମୁଦ୍ରାରେ ହାତଟି ଥାଏ, ଆଉ ସେ କଅଣ ସେମିତି ଦେଖୁଥାନ୍ତି। କିଛି କ୍ଷଣ ପରେ ମୁଣ୍ଡ ଟେକି ଆମକୁ ଚାହିଁ ସେ ଅବାକ୍। କହିଲେ, ଆପଣାମାନେ କିଏ, କାହିଁକି ଏତେ ଉତ୍‌କ୍ଷିପ୍ତ ଜାଣେନା; କିନ୍ତୁ ବର୍ତ୍ତମାନ ହୁଏତ ଅନେକ

ବେଳ ଯାଏ ଆପଣମାନଙ୍କୁ ଟିକିଏ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ପଡ଼ିବ। କାରଣ ଜଣେ ଭଦ୍ରଲୋକ ଓ ଜଣେ ଭଦ୍ରମହିଳା ପ୍ରକୃତିର ଅପୂର୍ବ ସୃଷ୍ଟିପ୍ରକ୍ରିୟା ପାଇଁ ଏଠାରେ ବର୍ତ୍ତମାନ କାମମୋହିତ ଅବସ୍ଥାରେ ଅଛନ୍ତି। ଅତଏବ 'ନ ଖଲୁ ନ ଖଲୁ ହନ୍ତବ୍ୟ...'

ସମସ୍ତେ ଅଳ୍ପ ସମୟ ପାଇଁ ଅବାକ୍ ଭାବରେ ଏଣେତେଣେ ଚାହିଁ କାହାରିକୁ ଦେଖିବାକୁ ନ ପାଇ ଚିତ୍କାର କଲେ, 'ମାଡ଼ି ଯାଅ, ଭିଡ଼ି ଆଣ, ହାଣି ପକାଅ। କିଏ ବେ ସେ ?' ଆଉ ଜଣେ ଉତ୍ତର ଦେଲା, 'ଶଳା ବୈଜ୍ଞାନିକଟାଏ ହବ ପରା।'

ବୈଜ୍ଞାନିକ ଦୁଇ ହାତ ମେଲାଇ କହିଲେ, ମୋ ଜୀବନ ଥାଉଁ ଥାଉଁ ମୁଁ କାହାରିକୁ ପାଦୁଟିଏ ଆଗେଇବାକୁ ଦେବିନାହିଁ। ମୁହଁରେ ତାଙ୍କର ପଥରର ଦୃଢ଼ତା। ସମସ୍ତେ 'ହଟୋ ହଟୋ' ପାଟି କଲେ ବି, କୌତୂହଳତା ଯୋଗୁଁ ହେଉ ବା ବୈଜ୍ଞାନିକଙ୍କ ସେ ରୂପ ଦେଖି ହେଉ, ସେ ପାଟିରେ ଆଉ ସେମିତି ଜୋର୍ ନଥାଏ।

ବୈଜ୍ଞାନିକ କହିଲେ, ସୁଧୀଜନେ ! ଶ୍ରବଣ କରିବା ହେଉନ୍ତୁ। କୁରୁକ୍ଷେତ୍ର ଯୁଦ୍ଧ ଲାଗିବା ଉପରେ। ଅର୍ଜୁନ ଶ୍ରୀକୃଷ୍ଣଙ୍କଠାରୁ ଗୀତା ଶୁଣି ସାରିବା ପରେ 'ଏଥର ମୁଁ ନିର୍ଲିପ୍ତ ଭାବରେ ପ୍ରବଳ ଯୁଦ୍ଧ କରିବି, ଫଳ ଯାହା ହେଉ, କହି ଗାଣ୍ଡୀବରେ ଶର ଯୋଖି ସାରିଲେଣି। ଏତିକି ବେଳେ କୁଆଡୁ ଗୋଟାଏ ଭରତପକ୍ଷୀ ଉଡ଼ି ଆସି କ୍ରୋଧରେ ଅଣ୍ଟ ହଲାଇ କହିଲା: ଏ କଅଣ, ଏ କଅଣ ? ଏଠି କଅଣ ଯୁଦ୍ଧଫୁଦ୍ଧ ହବ ନା କଅଣ ? ତା'ହେଲେ ମୋତେ କାହିଁକି ଆଗରୁ ନୋଟିସ୍ ଦିଆନଗଲା ଶୁଣେ ? ମୁଁ ତ ଏଠି ଅଣ୍ଡା ଦେଇସାରିଛି। ବର୍ତ୍ତମାନ ତ ମୁଁ ଉଠି ଯାଇପାରିବି ନାହିଁ। ମୋ ଛୁଆ ହୋଇ ଉଡ଼ିବା ପର୍ଯ୍ୟନ୍ତ ଯୁଦ୍ଧ ବନ୍ଦ କର। ସ୍ୱୟଂ ଭଗବାନ ଥାଉ ଥାଉ ଏପରି ଅନ୍ୟାୟ କିପରି ହେବାକୁ ଯାଉଛି ଶୁଣେ ? ମୋ ନାଥ ମୋ ପାଇଁ ଅହାର ଆଣି ଯାଇଛନ୍ତି, ଏଇଛୁଣି ଆସିଯିବେ। ସେ ଭାରି ରାଗୀ ଜାଣି ଥା।

ମହାଭାଳେଣି ପଡ଼ିଗଲା ପାଣ୍ଡବମାନଙ୍କ ମଧ୍ୟରେ। କେହି ଏହାର ସମାଧାନ କରିପାରିଲେ ନାହିଁ। ଦୁର୍ଯ୍ୟୋଧନଙ୍କୁ ଡାକରା ହେଲା। ସେ ଓ ତାଙ୍କ ରଥୀମାନେ ଏ କଥା ଶୁଣି ହସି କହିଲେ, ଭୟ କରୁଛ ଯୁଦ୍ଧ କରିବାକୁ ସେଇୟା କୁହ। ନ ହେଲେ ଛାର ପକ୍ଷୀଟାଏ ପାଇଁ...

ଦୁର୍ଯ୍ୟୋଧନଙ୍କ ମୁହଁରୁ ଏତିକି କଥା ବାହାରିଛି ଯେମିତି ଭରତ ପକ୍ଷୀ ତ ରାଗରେ ତମ ତମ ହୋଇ କହିଲା: କେମନ୍ତ ! ମୁଁ ଛାର। ମୋ ସୃଷ୍ଟି ଛାର। ମୋ ଦାବି ଛାର। ଆଚ୍ଛା ଦେଖି ତ ଭଲା କେମିତି ଯୁଦ୍ଧ ହବ। ହେଲେ ଜାଣିଥାନ୍ତୁ ଭଗବାନ, ଆପଣଙ୍କୁ ଅଭିଶାପ ଦେବି।

ଶ୍ରୀକୃଷ୍ଣ ତ ବଡ଼ ଅକଡ଼ିଆରେ ପଡ଼ିଗଲେ। ଦେଖିଲେ ତ ସତେ ଅନିୟମ

କାମ ହୋଇଚି, ଆଗରୁ ଭରତ ପକ୍ଷୀକୁ ନୋଟିସ୍ ନ ଦେଇ। ସେଥିରେ ପୁଣି ସେ ଅଣ୍ଡା ଉଠାଇ ଦେଇ ଅନ୍ୟ ଜାଗାକୁ ଯାଇ ବି ପାରିବ ନାହିଁ। ତାଙ୍କ ପକ୍ଷରେ ପୁଣି ତ ସବୁ ସୃଷ୍ଟି ମହାନ୍। କରନ୍ତି କଅଣ ? ଶେଷରେ ସେ ସୁଦର୍ଶନ ଚକ୍ରକୁ ଆଦେଶ ଦେଲେ ଯେ ଯୁଦ୍ଧ ଲାଗିଥିବା ଯାଏଁ ସେ ଭରତ ପକ୍ଷୀର ବସାକୁ ଆଢୁଆଳ କରି ରହିବେ। ଯୁଦ୍ଧ ଲାଗିଲା। ଧ୍ୱଂସର ଲୀଳା ଚାଲିଥାଏ, ତା' ମଝିରେ ସୃଷ୍ଟିର ଲୀଳା ବି ଚାଲିଥାଏ। ତେଣୁ ଆପଣମାନେ ଅପେକ୍ଷା କରନ୍ତୁ।

ମୁଁ ଓ ଆଉ ଦୁଇ ଚାରିଜଣ ଇୟା ଭିତରେ ବୈଜ୍ଞାନିକଙ୍କ ହାତରୁ କାଚ ଟାଣି ନେଇ ରାସ୍ତା ଉପରେ ଲଇଁପଡ଼ି ଦେଖୁଥାଉ କଅଣ କଥା। ଦେଖିଲି ଅତି ସାନ ସାନ ଯୋଡ଼ିଏ ପୋକ। ଗୋଟିକ ରଙ୍ଗ ଗାଢ଼ ନାଲି ଓ ଅନ୍ୟଟି ସୁନେଲି। ସେମାନେ ଛିଡ଼ା ହେବା ଭଳି ଭଙ୍ଗିରେ ପ୍ରତ୍ୟେକର ସାମ୍ନା ଦୁଇପାଦ ଦ୍ୱାରା ଧରାଧରି ହୋଇ ନୃତ୍ୟ କରିବା ଭଳି ଘୂରି ବୁଲୁଛନ୍ତି। ମୁଁ ପାଟିକରି କହିଲି, "ଭଦ୍ରଲୋକ ଭଦ୍ରମହିଳା ହେଉଛନ୍ତି ଯୋଡ଼ିଏ ସାନ ସାନ ପୋକ। ଗୋଟିଏ ନାଲି ଗୋଟିଏ ସୁନେଲି।"

ଆମେ କଅଣ ଦେଖୁଚୁ ଜାଣିବା ପାଇଁ ଅନ୍ୟମାନେ ଉତ୍କଣ୍ଠାରେ ଥାନ୍ତି। ଜଣେ ଅତି ଅଧୀର ଭାବରେ କହିଲା, ଆପଣମାନେ ଯାହା ଦେଖୁଛନ୍ତି ତା'ର ଧାରା ବିବରଣୀ ଦିଅନ୍ତୁ। ସେତେବେଳକୁ ଦଳଟିଯାକ ଚକ୍ରାକାରରେ ଘେରିଗଲେଣି ସେ ସ୍ଥାନକୁ।

ବୈଜ୍ଞାନିକ ସେମାନଙ୍କୁ ବସିବାକୁ କହିବାରୁ ସମସ୍ତେ ବସି ପଡ଼ିଲେ। ସମସ୍ତେ ନୀରବ। ବୈଜ୍ଞାନିକ ମୋ ହାତରୁ କାଚ ନେଇ କହିବାକୁ ଲାଗିଲେ ପାଟି କରି-

ଶ୍ରୀମତୀ ରଙ୍ଗିଣୀ ଦେବୀ ବର୍ତ୍ତମାନ ଅଭିମାନ କରି ମୁହଁ ବୁଲାଇ ବସିଛନ୍ତି । ଶ୍ରୀମାନ୍ ସ୍ୱର୍ଣ୍ଣକୁମାର ତାଙ୍କ ଚାରିପଟେ ବୁଲି ମାନ ଭାଙ୍ଗିବାକୁ ଚେଷ୍ଟା କରି ଗାଉଛନ୍ତି, ଆଜି ଏକି ଗୁମାନରେ ମାନିନୀ। ଆହା ହାୟ ରଙ୍ଗିଣୀ ଦେବୀ ଚାଲିଯାଉଛନ୍ତି ଯେ ଦୁର୍ଜ୍ଜୟମାନ। ସ୍ୱର୍ଣ୍ଣକୁମାର ତାଙ୍କ ପଛରେ ଗୋଡ଼ାଇଛନ୍ତି। ହ୍ୱାଟ୍ ଫ୍ଲାଇଟ୍ ଫର୍ ଲଭ୍ ହ୍ୱାଟ୍ ମ୍ୟାଡ୍ ପରସୁଟ୍ ! !

ଅହୋବତ। ହେ ଭଗବାନ ! ଦଳେ ଦସ୍ୟୁ ଧାଡ଼ିବାନ୍ଧି ଆସିଗଲେ କୁଆଡୁ ଭୂଇଁ ତଳୁ। ବାପ୍ରେ କି ଭୟଙ୍କର ଚେହେରା ଏମାନଙ୍କର ! କି ଭୟଙ୍କର ଏମାନଙ୍କ ସାମ୍ନା ଦାନ୍ତ ଦୁଇଟି। ଦେଖିବାକୁ ଘୋର କାଳିଆ। ବଡ଼ ବଡ଼ ମୁଣ୍ଡଟିମାନ ଟେକି ସେମାନେ ପ୍ରବଳ ବେଗରେ ଧାଇଁଛନ୍ତି। ଆହା, ରଙ୍ଗିଣୀ ଦେବୀ ଭୟରେ ଫେରିଲେ ପାଟି କରି, 'ରକ୍ଷା କର ପ୍ରାଣନାଥ'। କିଛି ଭୟ ନାହିଁ। ସ୍ୱର୍ଣ୍ଣକୁମାର ନିର୍ଭୟରେ ଆଗେଇ ଗଲେ। ଦସ୍ୟୁ ସର୍ଦ୍ଦାରଙ୍କ ସହିତ ତାଙ୍କର କଅଣ କଥାବାର୍ତ୍ତା ହେଲା। ଭଗବାନ ଜାଣନ୍ତି କଅଣ ଘଟିବ। ନା ନା, ଆଉ ଭୟ ନାହିଁ। ଦସ୍ୟୁଦଳ ଏଥର ରଙ୍ଗିଣୀ ଦେବୀଙ୍କୁ ଅଭିବାଦନ କରି ବାଟ କାଟି ଆଗେଇ ଗଲେ। ଆପଣମାନେ ସେମାନଙ୍କୁ ବାଟ ଛାଡ଼ି ଦିଅନ୍ତୁ।

ଜନ୍ଦା ଧାଡ଼ିକୁ ବାଟ ଛାଡ଼ିଦେବା ପାଇଁ ସେ ପାଖ ଲୋକେ ବସିଥିବା ଅବସ୍ଥାରେ ଘୁଞ୍ଚିଗଲେ। ଜନ୍ଦାଧାଡ଼ି ଚାଲିଗଲେ। ସମସ୍ତଙ୍କ ମୁହଁ ସେତେବେଳେ ଆନନ୍ଦରେ ଉଦ୍‌ଭାସିତ।

ବୈଜ୍ଞାନିକ ପୁଣି କହି ଚାଲିଲେ - ଦୁହେଁ ପରସ୍ପରକୁ ବର୍ତ୍ତମାନ ଆଲିଙ୍ଗନ କରୁଛନ୍ତି ଓ ମୁହଁକୁ ମୁହଁ ଲଗାଇ ଗାଢ଼ ଚୁମ୍ବନ ଦେଉଛନ୍ତି। ବର୍ତ୍ତମାନ ସେମାନେ... ସେମାନେ...

ବୈଜ୍ଞାନିକ ନୀରବ ହେଲେ। ଲଜ୍ଜାରେ ମୁହଁ ବୁଲାଇ ନେଲେ। ସତରେ ତାଙ୍କ ଗୋରା ତକ୍ ତକ୍ ମୁହଁ ଲଜ୍ଜାରେ ଲାଲ୍ ପଡ଼ିଯାଇଥିଲା। ସମସ୍ତେ ଅଧୀର ଭାବରେ ପାଟି କଲେ, କୁହନ୍ତୁନା ତା'ପରେ...

ବୈଜ୍ଞାନିକ ରୁମାଲ୍‌ରେ ମୁହଁ ଢାଙ୍କି କହିଲେ, ସେମାନେ... ସେମାନେ... ରତିକ୍ରୀଡ଼ା...

ସେ ଆଉ କିଛି କହିପାରିଲେ ନାହିଁ। କବି କାଳିଦାସ କୁମାର ସମ୍ଭବ ଗାନ କରୁଥିବା ବେଳେ ଶିବପାର୍ବତୀ ଆସି ଶୁଣୁଥିଲେ। ଦେବୀଙ୍କ ଓଷ୍ଠ କେବେ ସ୍ମିତହାସ୍ୟରେ କମ୍ପି ଉଠୁଥାଏ, କେବେ ବା ଶିବଙ୍କୁ ପତି ରୂପେ ପାଇବା ପାଇଁ ନିଜର କଠୋର ତପସ୍ୟା କଥା ଶୁଣି ଦୀର୍ଘଶ୍ୱାସ ପଡୁଥାଏ, ପୁଣି କେତେବେଳେ ଆଖି କୋଣରେ ଅଶ୍ରୁଜଳୋଚ୍ଛ୍ୱାସ ଦେଖା ଦେଉଥାଏ। ଅବଶେଷରେ ଯେତେବେଳେ କବି ଦେବୀଙ୍କ ରତିକ୍ରୀଡ଼ା ବର୍ଣ୍ଣନା କରିବାକୁ ଲାଗିଲେ, ସେତେବେଳେ ବ୍ୟାକୁଳ ଶରମରେ ଦେବୀଙ୍କ ନୟନ ମୁଦ୍ରିତ ହେଲା। କବି ଏହା ଦେଖି କାବ୍ୟ ବନ୍ଦ କଲେ। କୁମାର ସମ୍ଭବ କାବ୍ୟ ଅସମାପ୍ତ ରହିଗଲା। ବୈଜ୍ଞାନିକ ତ କବି ବି ।

'ରତିକ୍ରୀଡ଼ା' ଶୁଣିବା ମାତ୍ରେ ସମସ୍ତେ ହାତରେ ମୁହଁ ଢାଙ୍କିଲେ। ସେ ମୂଲିଆଣୀ ପଞ୍ଝାକ ମୁହଁ ପଣତକାନିରେ ଢାଙ୍କିଲେ; କିନ୍ତୁ ଗୋଟାଏ ଚାପାକାନ୍ଦଣାର ସୁଁ ସୁଁ ଶବ୍ଦ ଶୁଭିଲା। ଗଭୀର ବେଦନା-ଆନନ୍ଦର ଉଚ୍ଛ୍ୱାସ।

କିଛିକ୍ଷଣ ପରେ ବୈଜ୍ଞାନିକ ମୁହଁରୁ ରୁମାଲ୍ କାଢ଼ି ପୁଣି କହିବାକୁ ଲାଗିଲେ-

ରତିକ୍ଳାନ୍ତ ଶ୍ରୀମାନ୍ ଓ ଶ୍ରୀମତୀ ବର୍ତ୍ତମାନ ଢଳି ଢଳି ଯାଉଛନ୍ତି। ଆପଣମାନେ ବାଟ ଛାଡ଼ନ୍ତୁ।

ସମସ୍ତେ ଉଠି ପଡ଼ି ଦୁଇ ଭାଗ ହୋଇଗଲେ ଓ ଆନନ୍ଦରେ ପାଟି କଲେ। 'ଜୟ ସୃଷ୍ଟିର ଜୟ'। ମୂଲିଆଣୀମାନେ ଆନନ୍ଦରେ ହୁଳହୁଳି ଦେଲେ। ପୋକଯୋଡ଼ିକ ଧୀରେ ଧୀରେ ରାସ୍ତାକଡ଼ ଘାସ ଭିତରେ କୁଆଡ଼େ ଉଭେଇଗଲେ।

କିଏ ଜଣେ ବାହାରି ପଡ଼ି ଆନନ୍ଦରେ କହିଲା, ଚାଲନ୍ତୁ ଏ ଆନନ୍ଦ ଦିନରେ ଏଠି ଭୋଜି କରିବା। ସାଙ୍ଗେ ସାଙ୍ଗେ ଯାହା ପାଖରେ ଯେତେ ଥିଲା ଅଜାଡ଼ି ଦେଲେ।

ଦୈତାରିବାବୁ କଣ୍ଟ୍ରାକ୍ଟର ତ ପାଞ୍ଚ ହଜାର ଟଙ୍କା ଦେଲେ। ଖାଲି ସେତିକି ନୁହେଁ, ଘରୁ ତାଙ୍କ ଜିପ୍ ମଗାଇ ମହଣ ମହଣ ମିଠେଇ ଆଣି ଗଦା କରିଦେଲେ। ଆମେ ସବୁ ରାସ୍ତା କଡ଼ର ଶ୍ମଶାନରେ ଧାଡ଼ି ବାନ୍ଧି ବସିଲୁ ଶ୍ରୀମାନ୍ ସ୍ୱର୍ଣ୍ଣକୁମାର ଓ ଶ୍ରୀମତୀ ରଙ୍ଗିଣୀ ଦେବୀଙ୍କ ବାହାଘର ଭୋଜି ଖାଇବାକୁ। ସମସ୍ତଙ୍କ ଭିତରେ କଥାବାର୍ତ୍ତା ଚିହ୍ନା ପରିଚୟ ଚାଲିଥାଏ। କଣ୍ଟ୍ରାକ୍ଟର ଓ ଅଫିସର୍ ଆନନ୍ଦରେ ମୂଲିଆଣୀ ଓ ଚାଷୀମାନଙ୍କୁ ପଚାରୁଥାନ୍ତି।

ଏତିକିବେଳେ ଦଳେ ସଶସ୍ତ୍ର ପୁଲିସ୍ ମ୍ୟାଜିଷ୍ଟ୍ରେଟ୍‌ଙ୍କ ସହ ପହଞ୍ଚିଗଲେ। ଆମକୁ ଏ ଅବସ୍ଥାରେ ଦେଖି ଓ ଆମ ସହିତ ବହୁ ଗଣ୍ୟମାନ୍ୟ ଲୋକ ଦେଖି ପ୍ରଥମେ ଘାବଡ଼େଇ ଗଲେ। ସେଇ ଯେ ବଡ଼ ଅଫିସର୍ ସେ ମ୍ୟାଜିଷ୍ଟ୍ରେଟ୍ ଓ ପୁଲିସ୍‌କୁ କଅଣ କହିଲେ କେଜାଣି, ସେମାନେ ବି ହସି ହସି ଆମ ସହିତ ଖାଇଲେ। ତା'ପରେ ଆମେ ଯେ ଯାହା ଘରକୁ ଗଲୁ। ମୋତେ ଆଜି ଏସବୁ ସ୍ୱପ୍ନ ଭଳି ଲାଗୁଛି, କିନ୍ତୁ ଏକଦମ୍ ଖାଣ୍ଟି ବାସ୍ତବ ଘଟନା। ମୁଁ ଆଜି ପର୍ଯ୍ୟନ୍ତ ଏହାର ଆଦି ଅନ୍ତ କିଛି; ପାଇନାହିଁ। ଦିବାକର ହେଲେ କହିବ।

ଦିବାକର ଦୀର୍ଘଶ୍ୱାସ ପକାଇ କହିଲେ, ଘଟନାକୁ ଚେନାଏ ଚେନାଏ କରି ଦେଖିଲେ କିଛି କହିପାରାଯାଏ; କିନ୍ତୁ ଅଖଣ୍ଡ ଭାବରେ ଦେଖିଲେ, ଦେବମାନବେ ଅଗୋଚର !

## ଶ୍ରେଷ୍ଠ ଗଳ୍ପ



ବାମାଚରଣ ମିତ୍ର

**ବାମାଚରଣ ମିତ୍ର** (୧୯୧୫-୧୯୭୫) ଉନବିଂଶ ଶତାବ୍ଦୀର ଅନ୍ୟତମ ପ୍ରଖ୍ୟାତ ଓଡ଼ିଆ କଥାଶିଳ୍ପୀ। ଶିଶୁ ଓ ନାରୀ ମନସ୍ତତ୍ତ୍ୱ, ସାଂପ୍ରଦାୟିକ ଭେଦଭାବ, ଗ୍ରାମ୍ୟ ଓ ସହରୀ ଚଳଣୀର ନିର୍ଭେଜାଲ ପ୍ରକାଶନ ଦ୍ୱାରା ଓଡ଼ିଆ କଥା ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ଗଳ୍ପ ଅନ୍ତରାଳରେ ମାନବୀୟ ଗୁଣରାଜିର ପ୍ରସ୍ଫୁଟନ ଓ ସମାଜଜୀବନର ସୂକ୍ଷ୍ମ ଅନୁରଣନ ପ୍ରତିଫଳିତ। ସକଳ ହେତୁବାଦୀ ଚିନ୍ତନ ପ୍ରତି ଆସ୍ଥା ପ୍ରକଟ କରି ମହତ୍ତର ଜୀବନଭୋଗର ଯାଚଞ୍ଚା କରନ୍ତି ସେ। ବିଜ୍ଞାନସିଦ୍ଧ ଧାର୍ମିକତା, ପାରଂପରିକ ସୃଷ୍ଟିଶୀଳତା, ଆଧୁନିକତାର ଆବାହନ ସହିତ ଉଚ୍ଚତର ଅଭିଳାଷ ଓ ସତ୍ୟଶୀଳତା ତାଙ୍କ ଗଳ୍ପକୁ ସମୃଦ୍ଧ କରିଛି।

**ଗଳ୍ପ ସଂକଳନ:** କୀର୍ତ୍ତୀର୍ଯସ୍ୟ (୧୯୫୦), ନରଛଂଚାଣ (୧୯୫୧), ସ୍ୱପ୍ନସିଦ୍ଧ (୧୯୬୦), ପାଷାଣର ପ୍ରାଣ (୧୯୬୧), ଅସୀମ (୧୯୬୧), ବଟ ମହାପୁରୁଷ (୧୯୬୩), ମହାପୁରୁଷ ବାଗ (୧୯୬୩), ମିତ୍ରଗଳ୍ପ (୧୯୭୯), ମିତ୍ରକଳ୍ପ (୧୯୭୯), ମିତ୍ରସ୍ୱଳ୍ପ (୧୯୮୧), ବାମାଚରଣ ଚୟନିକା (୨୦୧୮), ସୃଜନସଂଭାର ପ୍ରଥମ ପର୍ବ (୧୯୧୮)



a timepass publication
SHORT-STORY
cover design : saroj bal

ISBN 9788193383780



9 788193 383780